# ଶିକ୍ଷା

ଶ୍ରୀଅରବିନ୍ଦ ଓ ଶ୍ରୀମା

ଅନୁବାଦ : ଶ୍ରୀ ରାମକୃଷ୍ଣ ଦାସ, ଶ୍ରୀ ପ୍ରପତ୍ତି,
ଶ୍ରୀ ବିଶ୍ୱମ୍ଭର ସାମନ୍ତ, ଶ୍ରୀପତି ଦାସ

ପ୍ରଥମ ମୁଦ୍ରଣ : ଅଗଷ୍ଟ, ୧୯୫୪; ୨ୟ ସଂଶୋଧିତ ଓ ପରିବର୍ଦ୍ଧିତ ସଂସ୍କରଣ :
ଅକ୍ଟୋବର ୧୯୬୫; ୫ମ ପରିବର୍ଦ୍ଧିତ ସଂସ୍କରଣ : ୨୦୦୨;
ସପ୍ତମ ସଂସ୍କରଣ : ୨୦୧୨



ପ୍ରକାଶକ :
ନବଜ୍ୟୋତି ପ୍ରକାଶନ,
ଶ୍ରୀଅରବିନ୍ଦ ଆଶ୍ରମ ପ୍ରକାଶନ ବିଭାଗ, ପଣ୍ଡିଚେରୀ - ୬୦୫ ୦୦୨

**Shiksha** (Oriya)
by Sri Aurobindo and The Mother
Translated by : Sri Rama Krishna Das, Sri Prapatti,
Sri Biswambhara Samanta, Sripati Das

1st Edition : August, 1954; 2nd Revised Edition : October, 1965;
5th Enlarged Edition (with Sri Aurobindo's writings) : 2002;
7th Impression : 2012

Price Rs. 70/-

ISBN 978-81-7058-692-0



Published by Navajyoti Publication
A unit of Sri Aurobindo Ashram Publication Department
Pondicherry - 605 002

---

Printed at Sri Aurobindo Ashram Press, Pondicherry
PRINTED IN INDIA

# ଭୂମିକା

## ଷଷ୍ଠ ପରିମାର୍ଜିତ ସଂସ୍କରଣ (୨୦୦୫)

ଶ୍ରୀଅରବିନ୍ଦ ଓ ଶ୍ରୀମାଙ୍କର କେତୋଟି କ୍ଷୁଦ୍ର ପୁସ୍ତକର ସମାହାରରେ ପ୍ରକାଶିତ ଏହି 'ଶିକ୍ଷା' ପୁସ୍ତକର ପଞ୍ଚମ ସଂସ୍କରଣ (୨୦୦୨)ର ଏହା ଏକ ପରିମାର୍ଜିତ ସଂସ୍କରଣ । ପ୍ରଥମେ ୧୯୫୪ ଖ୍ରୀଷ୍ଟାବ୍ଦରେ ଶ୍ରୀମା'ଙ୍କ ଲିଖିତ 'ଶିକ୍ଷା' ପୁସ୍ତକ ଓ ୧୯୫୮ରେ ''ତପସ୍ୟା ଚତୁଷ୍ଟୟ ଓ ମୁକ୍ତି ଚତୁଷ୍ଟୟ'' ପୁସ୍ତକ ସ୍ୱତନ୍ତ୍ର ଭାବରେ ପ୍ରକାଶିତ ହୋଇଥିଲା । ୧୯୬୫ ଖ୍ରୀଷ୍ଟାବ୍ଦରେ ଏହି ଦୁଇଟି ପୁସ୍ତକ ସହିତ ଶ୍ରୀମା'ଙ୍କ ଲିଖିତ ''ଏକ ଅନ୍ତରାଷ୍ଟ୍ରୀୟ ଶିକ୍ଷାକେନ୍ଦ୍ର'' ପ୍ରବନ୍ଧଟିକୁ ମିଶାଇ 'ଶିକ୍ଷା' ପୁସ୍ତକର ଦ୍ୱିତୀୟ ପରିବର୍ଦ୍ଧିତ ସଂସ୍କରଣ ପ୍ରକାଶିତ ହୋଇଥିଲା । ୨୦୦୨ ଖ୍ରୀଷ୍ଟାବ୍ଦରେ ଏହାର ୫ମ ସଂସ୍କରଣରେ ଶ୍ରୀମା'ଙ୍କ ଲିଖିତ ''ଆଶ୍ରମର ଛାତ୍ରଛାତ୍ରୀମାନଙ୍କ ପ୍ରତି'' ଏବଂ ''ଆଶ୍ରମ ଶିକ୍ଷାକେନ୍ଦ୍ରର ଶିକ୍ଷାର୍ଥୀମାନଙ୍କୁ ଡିପ୍ଲୋମା ଓ ସାର୍ଟିଫିକେଟ ଦିଆଯାଏ ନାହିଁ କାହିଁକି ?''— ଏହି ଦୁଇଟି ପ୍ରବନ୍ଧ ଯୋଗ କରିବା ସଙ୍ଗେ ସଙ୍ଗେ ପୁସ୍ତକର ଆରମ୍ଭରେ ଶ୍ରୀଅରବିନ୍ଦଙ୍କ ଲିଖିତ ''ଜାତୀୟ ଶିକ୍ଷା ସମ୍ବନ୍ଧେ ଏକ ଭୂମିକା'', ''ଜାତୀୟ ଶିକ୍ଷାର ଏକ ବ୍ୟବସ୍ଥା'', ''ବୁଦ୍ଧିଗତ ଶିକ୍ଷା'', ''ଶରୀରଚର୍ଚ୍ଚା ସମ୍ବନ୍ଧେ ବାଣୀ'' ଓ ''ଶରୀରର ପୂର୍ଣ୍ଣତା'' ନାମକ ବିଷୟଗୁଡ଼ିକୁ ଯୁକ୍ତ କରାଯାଇଛି । ଏହାଦ୍ୱାରା ଶ୍ରୀଅରବିନ୍ଦ ଆଶ୍ରମରୁ ପ୍ରକାଶିତ ''Sri Aurobindo and the Mother on Education'' ପୁସ୍ତକର ସମସ୍ତ ବିଷୟର ଓଡ଼ିଆ ଅନୁବାଦକୁ ଏହି ପୁସ୍ତକରେ ସ୍ଥାନ ଦିଆଯାଇ ଏହାର କଳେବରକୁ ବିଶେଷଭାବେ ପରିବର୍ଦ୍ଧିତ କରାଯାଇଛି । ଏହି ପଞ୍ଚମ ସଂସ୍କରଣରେ ନବସଂଯୋଜିତ ଶ୍ରୀଅରବିନ୍ଦଙ୍କ ଲିଖିତ ବିଷୟଗୁଡ଼ିକରେ କେତେକ ଇଂରାଜି ଶିକ୍ଷାଗତ ଶବ୍ଦର ଓଡ଼ିଆ ଅନୁବାଦରେ ଶିକ୍ଷା-ଅଧ୍ୟାପକ ଶ୍ରୀ ସୁନୀଲ ବିହାରୀ ମହାନ୍ତି କେତେକ

ପରିବର୍ତ୍ତନର ପ୍ରସ୍ତାବ ଦେଇଥିବାରୁ ଆମ୍ଭେମାନେ ତାଙ୍କୁ ଧନ୍ୟବାଦ ଜଣାଉଛୁ । ବର୍ତ୍ତମାନର ଏହି ଷଷ୍ଠ ସଂସ୍କରଣରେ ପୁସ୍ତକଟିର କେତେକ ସ୍ଥାନରେ କିଛି ପରିମାର୍ଜ୍ଜନା କରାଯାଇଛି ।

ଶ୍ରୀଅରବିନ୍ଦ ଓ ଶ୍ରୀମା'ଙ୍କ ପ୍ରବର୍ତ୍ତିତ ପୂର୍ଣ୍ଣାଙ୍ଗ ଶିକ୍ଷା ସମ୍ବନ୍ଧରେ ଆଗ୍ରହୀ ଶିକ୍ଷାବିତ୍, ଅଧ୍ୟାପକ, ପିତାମାତା ଓ ଅଭିଭାବକ ତଥା ଜନସାଧାରଣଙ୍କ ସକାଶେ ଏହି ପୁସ୍ତକଟି ଏକ ସ୍ପଷ୍ଟ ଦିଗ୍‌ଦର୍ଶନ ଦେଇପାରିବ ବୋଲି ଆମ୍ଭେମାନେ ଆଶାକରୁ ।

— ପ୍ରକାଶକ

# ସୂଚୀପତ୍ର

## ଶ୍ରୀଅରବିନ୍ଦ

## ଶ୍ରୀମା

ବିଷୟ | ପୃଷ୍ଠା





## 'ଜାତୀୟ ଶିକ୍ଷା ସମ୍ବନ୍ଧେ ଏକ ଭୂମିକା'

ଶ୍ରୀଅରବିନ୍ଦଙ୍କର ଏହି ପ୍ରବନ୍ଧଟି ତାଙ୍କ ଦ୍ୱାରା ସଂପାଦିତ 'ଆର୍ଯ୍ୟ' (Arya) ନାମକ ଇଂରାଜୀ ପତ୍ରିକାର ଶେଷ ଦୁଇଟି ସଂଖ୍ୟାରେ (ନଭେମ୍ବର-ଡିସେମ୍ବର, ୧୯୨୦ ଏବଂ ଜାନୁଆରି, ୧୯୨୧) ଦୁଇଟି ଭାଗରେ ''A Preface on National Education'' ଶିରୋନାମାରେ ପ୍ରକାଶ ପାଇଥିଲା । କିନ୍ତୁ ଏହାପରେ 'ଆର୍ଯ୍ୟ' ପତ୍ରିକାର ପ୍ରକାଶନ ବନ୍ଦ ହୋଇଯିବାରୁ ପ୍ରବନ୍ଧଟି ଅସଂପୂର୍ଣ୍ଣ ହୋଇ ରହିଯାଇଛି ।

ପ୍ରଥମେ ଏହାର ଓଡ଼ିଆ ଅନୁବାଦ 'ନବଜ୍ୟୋତି' ପତ୍ରିକାର ଏପ୍ରିଲ, ୧୯୮୦ରୁ ଆରମ୍ଭ କରି ନଭେମ୍ବର, ୧୯୮୧ ମଧ୍ୟରେ ପ୍ରକାଶିତ ହୋଇଥିଲା । କେତେକ ପରିବର୍ତ୍ତନ ସହ ତାହା ଏଠାରେ ପ୍ରକାଶିତ ହୋଇଛି ।

# (୧)

# ଜାତୀୟ ଶିକ୍ଷା ସମ୍ବନ୍ଧେ ଏକ ଭୂମିକା

## (୧)

ବିଶ୍ୱଜନୀନ ଶିକ୍ଷାର ଯେଉଁ ଆବଶ୍ୟକତା ଓ ଅବିମିଶ୍ର ଉତ୍କର୍ଷ ରହିଛି ତାହା ଆଧୁନିକ ବିଚାରବୁଦ୍ଧି ପାଇଁ ଏକ ଅପରିବର୍ତ୍ତନୀୟ ଅନ୍ଧ ମତବାଦରେ ପରିଣତ ହୋଇଛି, କୌଣସି ଉଦାର ଚିତ୍ତ ବା ଜାଗ୍ରତ ଜାତୀୟ ବିବେକ ଦ୍ୱାରା ଏହା ଏକ ବିବାଦାତୀତ ବିଷୟଭାବେ ଗ୍ରହଣ କରି ନିଆଯାଇଛି, ଏବଂ ଏହି ମତବାଦଟି କୌଣସି ତ୍ରୁଟି ବା ଆପତ୍ତିର ସଂପୂର୍ଣ୍ଣ ଊର୍ଦ୍ଧ୍ୱରେ କି ନୁହେଁ, ଯାହାବି ହେଉନା କାହିଁକି, ଏହା ଜାତିର ବୌଦ୍ଧିକ ଓ ପ୍ରାଣିକ ପ୍ରୟାସର ସାଂପ୍ରତିକ ତଥା ଜରୁରୀ ଆବଶ୍ୟକତାକୁ ପୂରଣ କରୁଛି ବୋଲି ଧରି ନିଆଯାଇପାରେ । କିନ୍ତୁ ଶିକ୍ଷା କ'ଣ, ଅଥବା ବ୍ୟାବହାରିକ କ୍ଷେତ୍ରରେ ଏବଂ ଆଦର୍ଶଗତ ଭାବେ ଏହା କିପରି ହେବା ଉଚିତ, ଏହା ଉପରେ ଯୁକ୍ତିଯୁକ୍ତ ବା ପ୍ରାଞ୍ଜଳ କୌଣସି ଧାରଣା ଅଥବା ସେପରି କୌଣସି ବିଶ୍ୱଜନୀନ ରାଜିନାମା ବା ସାର୍ବଜନୀନ ଉପଲବ୍ଧି ନାହିଁ । ଏହି ଅନିଶ୍ଚୟତା ସହ ଆଉ ଏକ ଦାବି ଯୋଗ କରାଯାଇଛି – ସେହି ଦାବିଟି ହେଉଛି ଜାତୀୟ ଧରଣର ଶିକ୍ଷା । ଆମ ଦେଶ ଭଳି ଏକ ଦେଶରେ, ଯେଉଁଠି ଏକ ପକ୍ଷରେ ଏସୀୟ ଚେତନା, ଅନ୍ୟ ପକ୍ଷରେ ଇଉରୋପୀୟ ବା ପାଶ୍ଚାତ୍ୟ ଚେତନା ଏବଂ ସେମାନେ ଯେଉଁ ଭିନ୍ନ ଭିନ୍ନ ସଭ୍ୟତା ଗଢ଼ିଥିଲେ, ସେଗୁଡ଼ିକ ମଧ୍ୟରେ ସଂଘର୍ଷ ଫଳରେ ଏବଂ ଇଂରେଜୀ ଓ ଭାରତୀୟ ମନ

ଓ ସଂସ୍କୃତିର ଜୋରଜବରଦସ୍ତି ମିଳନ ପାଇଁ ପ୍ରଚେଷ୍ଟା ଫଳରେ ଏବଂ ତା'ସହିତ ରାଜନୀତିକ ପରାଧୀନତା ଦ୍ୱାରା ଶିକ୍ଷାର ଚୂଡ଼ାନ୍ତ ରୂପରେଖ ନିର୍ଣ୍ଣୟ ଓ ନିୟନ୍ତ୍ରଣ ବିଦେଶୀମାନଙ୍କ ହାତକୁ ଚାଲିଯିବା ହେତୁ ସ୍ୱାଧୀନତା ପାଇଁ ଉନ୍ମାଦନା ଓ ଜାଗରଣ ସହ ସ୍ୱାଭାବିକ ଭାବରେ ଏହା ବାରବାର ଉତ୍ଥାପିତ ଏକ ତୁମୁଳ କୋଳାହଳପୂର୍ଣ୍ଣ ଦାବି ହୋଇଉଠିଛି । ଏବଂ ଏହି ବିଷୟଟି ଉପରେ ଆମର ଏକ ସ୍ପଷ୍ଟ ଧାରଣାର ଅଭାବ ହେତୁ, ଆମେ ବର୍ତ୍ତମାନ ଯେପରି ଏକ ବିରାଟ ଏବଂ ବିପର୍ଯ୍ୟସ୍ତ ବିଭ୍ରାନ୍ତି ଭିତରେ ପ୍ରବେଶ କରି ସାରିଲୁଣି, ସେହିପରି ଆଗକୁ ପୁଣି ଏକ ବିଭ୍ରାନ୍ତି ଭିତରେ ପ୍ରବେଶ କରିପାରୁ ।

କାରଣ, ସାଧାରଣ ଭାବରେ ଶିକ୍ଷା ଯଥାର୍ଥରେ କ'ଣ ବା କ'ଣ ହେବା ଉଚିତ, ଏହା ଯଦି ସ୍ପଷ୍ଟତଃ ଆମେ ଜାଣି ନ ଥାଉଁ, ତେବେ ଜାତୀୟ ଶିକ୍ଷାର ଅର୍ଥ ଆମେ ତଦପେକ୍ଷା କମ୍ ଜାଣିଛୁ ବୋଲି ବୁଝିବାକୁ ହେବ । ଏ ସମ୍ବନ୍ଧେ ଯାହା ସର୍ବସମ୍ମତ ବୋଲି ମନେହୁଏ, ତାହା ହେଲା ବିଦ୍ୟାଳୟ ବା ବିଶ୍ୱବିଦ୍ୟାଳୟମାନଙ୍କରେ ଦିଆଯାଉଥିବା ଶିକ୍ଷା ନିକୃଷ୍ଟ ଧରଣର ଏବଂ ତାହା ସହିତ ଜାତୀୟ ମନ, ଆତ୍ମା ଓ ଚରିତ୍ରକୁ ଏହା ବିଜାତୀୟ, ଅଧଃପତିତ ଓ ଦୁର୍ବଳ କରାଏ କାରଣ ବିଦେଶୀ ଶକ୍ତି ଦ୍ୱାରା ଏହା ଆଶ୍ରିତ ଏବଂ ଲକ୍ଷ୍ୟ, ପଦ୍ଧତି, ତାତ୍ପର୍ଯ୍ୟ ଓ ଚେତନାରେ ମଧ୍ୟ ଏହା ବିଦେଶୀ । କିନ୍ତୁ ଏହି ସଂପୂର୍ଣ୍ଣ ନାସ୍ତିବାଚକ ରାଜିନାମା ଆମକୁ ବେଶୀ ଦୂରକୁ ଅଗ୍ରସର କରାଇପାରେ ନାହିଁ; ଏଥିରୁ ଆମେ ସ୍ପଷ୍ଟତଃ ବୁଝିପାରୁ ନାହିଁ ଯେ ନୀତି ବା ଅଭ୍ୟାସ ଦୃଷ୍ଟିରୁ ଆମେ କ'ଣ ଚାହୁଁ ବା ଏହା ସ୍ଥାନରେ ଆମେ ଅନ୍ୟ କ'ଣ ପ୍ରତିଷ୍ଠା କରିବା ଉଚିତ । କୌଣସି ଏକ ନାମ ବା ପଦରେ ଅଧିକ ବୈଶିଷ୍ଟ୍ୟ ଥାଇପାରେ କିନ୍ତୁ କୌଣସି ବିଦ୍ୟାଳୟ ବା ମହାବିଦ୍ୟାଳୟ ବା ଏପରିକି କୌଣସି ଶିକ୍ଷାପରିଷଦ ବା ବୋର୍ଡ ସହିତ "ଜାତୀୟ" ଶବ୍ଦଟି ଯୋଡ଼ିବା, ବିଶେଷତଃ ଯେଉଁମାନେ କି ଆମ୍ଭେମାନେ ପ୍ରକାଶ୍ୟଭାବେ ନିନ୍ଦା କରୁଥିବା

ପଦ୍ଧତିରେ ତାଲିମପ୍ରାପ୍ତ ହୋଇଛନ୍ତି, ସେପରି ସ୍ୱଦେଶୀ ସଂସ୍ଥା ହାତରେ ସେଗୁଡ଼ିକୁ ଛାଡ଼ିଦେବା, ଟିକିନିଖି ବିଷୟ ଓ ପାଠ୍ୟକ୍ରମର କେତେକ ପାର୍ଥକ୍ୟ, ଯୋଗ, ବିୟୋଗ ଓ ପରିବର୍ତ୍ତନ ସହ ସେହି ଦୋଷାରୋପିତ ପଦ୍ଧତିକୁ ପୁନରାୟ ପ୍ରୟୋଗ କରିବା, ବାହ୍ୟ କର୍ମରେ କିଛି ପରିବର୍ତ୍ତନ ଆଣି ସମସ୍ୟାର ସମାଧାନ ହୋଇଛି ବୋଲି ଭାବିବା – ଏହିସବୁ ଦ୍ୱାରା ବାସ୍ତବରେ କିଛି ପରିବର୍ତ୍ତିତ ହୁଏ ନାହିଁ । ଏହି ପ୍ରକାର କୌଶଳ ପ୍ରୟୋଗ କରି ସନ୍ତୁଷ୍ଟ ହେବାର ଅର୍ଥ ହେଉଛି ଆମର ବୁଦ୍ଧିଗତ ମାଧ୍ୟାକର୍ଷଣ କେନ୍ଦ୍ରର ଚାରିପାଖରେ ଶୂନ୍‌ଚିତ୍ ପ୍ରଦର୍ଶନ କରିବା; ପୂର୍ବରୁ ଆମେ ଯେଉଁଠାରେ ଥିଲୁ ସେହିଠାରେହିଁ ପଡ଼ିରହି ଆମେ ଅନ୍ୟ ଏକ କ୍ଷେତ୍ରରେ ପହଞ୍ଚିଛୁ ବୋଲି ଭାବିବା – ଏହା ସ୍ପଷ୍ଟତଃ ଏକ ବିଶେଷ ଅସନ୍ତୋଷଜନକ କର୍ମଧାରା । ନୂତନ ନାମରେ ପରିଚାଳିତ ଅନୁଷ୍ଠାନଗୁଡ଼ିକ ଅନ୍ୟ ଅନୁଷ୍ଠାନଗୁଡ଼ିକ ଅପେକ୍ଷା ହୁଏତ ଅଧିକ ଉତ୍ତମ ଶିକ୍ଷାପ୍ରଦାନ କରୁଥିବେ ବା ନ କରୁଥିବେ, କିନ୍ତୁ କେଉଁ ଭାବରେ ଏଗୁଡ଼ିକ ଅଧିକ ଜାତୀୟ, ଏପରିକି ସବୁଠାରୁ ସମ୍ମତଭାବେ ସହାନୁଭୂତିସୂଚକ ସମାଲୋଚନାଶୀଳ ବୁଦ୍ଧି ନିକଟରେ ଏହା ଆଦୌ ସ୍ପଷ୍ଟ ନୁହେଁ ।

ଏହି ଯେ ସମସ୍ୟା, ବାସ୍ତବରେ ଏହାକୁ ଅତିକ୍ରମ କରିବାକୁ ହେଲେ ବାଧାବିଘ୍ନ ମଧ୍ୟଦେଇ ଯିବାକୁ ହେବ ଏବଂ ଚିନ୍ତା ବା କର୍ମର କେଉଁ ବିନ୍ଦୁରୁ ଆରମ୍ଭ କରିବାକୁ ହେବ, ନୂତନ ଅନୁଷ୍ଠାନଟିକୁ କେଉଁ ମୂଳନୀତି ଅନୁସରଣ କରି ଗଢ଼ିବାକୁ ହେବ ବା କେଉଁ ଧାରାରେ ଏହାର ନକ୍ସା ତିଆରି କରିବାକୁ ହେବ – ଏସବୁ ଆବିଷ୍କାର କରିବା ଆଦୌ ସହଜ ନୁହେଁ । ଅବସ୍ଥା ଅତି ଜଟିଳ ଏବଂ ଯାହା କରିବାକୁ ହେବ, ତାହାକୁ ସଂପୂର୍ଣ୍ଣ ଏକ ନୂତନ ଧାରାରେ ସୃଷ୍ଟି କରିବାକୁ ହେବ । ଭାରତରେ କୌଣସି ସମୟରେ ପ୍ରଚଳିତ ହୋଇଥିବା କୌଣସି ଅତୀତ ନୀତି, ପଦ୍ଧତି ଓ ରୀତିକୁ – ତାହା ଯେତେ ମହାନ୍ ହେଉ ବା ଆମର ଅତୀତ ସଭ୍ୟତା ଓ ସଂସ୍କୃତି ସହିତ ତାହାର ଯେତେ ସଂଗତି

ଥାଉ ନା କାହିଁକି – ତାହାର କେବଳ ପୁନଃପ୍ରଚଳନ କରାଇ ଆମେ ସନ୍ତୁଷ୍ଟ ହୋଇପାରିବୁ ନାହିଁ । ଅତୀତକୁ ପ୍ରତ୍ୟାବର୍ତ୍ତନ କରିବାର ଅର୍ଥ ହେବ ଏକ ନିଷ୍ଫଳ ଓ ଅସମ୍ଭବ ପ୍ରଚେଷ୍ଟା ଯାହା ବର୍ତ୍ତମାନର ଜରୁରୀ ଦାବି ଓ ଆମ ଭବିଷ୍ୟତ୍‌ର ଆହୁରି ବୃହତ୍ତର ଦାବି ସକାଶେ ନୈରାଶ୍ୟଜନକଭାବେ ଅପର୍ଯ୍ୟାପ୍ତ ହେବ । ଅନ୍ୟ ପକ୍ଷରେ, ଇଂରାଜୀ, ଜର୍ମାନ୍ ବା ଆମେରିକାନ୍ ବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ଶିକ୍ଷାଧାରାକୁ ଗ୍ରହଣ କରିନେବା ବା ଭାରତୀୟତାର ବାହ୍ୟ ଆବରଣ ଦେଇ ସେହିସବୁରେ କିଛି ପରିବର୍ତ୍ତନ ସହ ଗ୍ରହଣ କରିବା ହୁଏତ ଆକର୍ଷଣୀୟ ଭାବେ ସହଜସାଧ୍ୟ ଏକ କାର୍ଯ୍ୟଧାରା ହୋଇପାରେ ଏବଂ ତଦ୍ଦ୍ୱାରା ହୁଏତ ବେଶୀ ଚିନ୍ତା କରିବାରୁ ଓ ନୂତନ ପରୀକ୍ଷାନିରୀକ୍ଷାର ଆବଶ୍ୟକତାରୁ କ୍ଷାନ୍ତି ମିଳିପାରେ, କିନ୍ତୁ ସେହି କ୍ଷେତ୍ରରେ ଶିକ୍ଷାର ଜାତୀୟକରଣ ସମ୍ବନ୍ଧେ ଉଚ୍ଚ କୋଳାହଳ ନିମିତ୍ତ ଆହ୍ୱାନ କରିବାର ପ୍ରଶ୍ନ ଉଠୁ ନାହିଁ, ସେଥିପାଇଁ ଯାହାକିଛି ଆବଶ୍ୟକ ତାହା ହେଲା ନିୟନ୍ତ୍ରଣ, ଶିକ୍ଷାଦାନର ମାଧ୍ୟମ, ପାଠ୍ୟକ୍ରମର ଛାଞ୍ଚ ଓ ଯୋଜନା ଏବଂ କେତେକ ପରିମାଣରେ ବିଷୟବସ୍ତୁଗୁଡ଼ିକ ମଧ୍ୟରେ ଭାରସାମ୍ୟ ରକ୍ଷା । ମୁଁ ଅନୁମାନ କରୁଛି ଯେ ଏ ବିଷୟରେ ଆମେ ଯାହା ଭାବୁଛୁ, ତାହା ଅପେକ୍ଷା ଏହା ଅଧିକକିଛି ଗଭୀର, ମହାନ୍ ଓ ଅନୁସନ୍ଧାନ କରିବାର ବିଷୟ ଏବଂ ଏହାକୁ ରୂପଦେବା ଯେତେ କଷ୍ଟସାଧ୍ୟ ହେଲେ ମଧ୍ୟ ଏହା ଭାରତୀୟ ଆତ୍ମା, ଆବଶ୍ୟକତା, ମାନସିକ ପ୍ରକୃତି ଓ ସଂସ୍କୃତିର ଉପଯୋଗୀ ଏକ ଶିକ୍ଷା ଯାହାର ଅନୁସନ୍ଧାନ କରିବାରେ ଆମ୍ଭେମାନେ ପ୍ରବୃତ୍ତ; ଯଥାର୍ଥରେ ଏହା ଏପରି କିଛି ନୁହେଁ ଯାହା କେବଳ ଅତୀତ ପ୍ରତି ବିଶ୍ୱସ୍ତ, କିନ୍ତୁ ଏହା ଭାରତର ବିକାଶଶୀଳ ଆତ୍ମା ପ୍ରତି, ତାହାର ଭବିଷ୍ୟତ୍ ଆବଶ୍ୟକତା ପ୍ରତି, ତାହାର ଆଗାମୀ ଆତ୍ମ-ସୃଜନର ମହାନତା ପ୍ରତି, ତାହାର ଶାଶ୍ୱତ ଆତ୍ମା ପ୍ରତି ବିଶ୍ୱସ୍ତ । ଏହି ବିଷୟହିଁ ଆମ୍ଭମାନଙ୍କ ମନରେ ସ୍ପଷ୍ଟ ହେବା ଆବଶ୍ୟକ, ଏବଂ ମହାନ୍‌ଭାବେ କର୍ମସଂପାଦନ କରିବା ପୂର୍ବରୁ ଆମ୍ଭେମାନେ ତାହାର ମୌଳିକ ଭିତ୍ତି ମଧ୍ୟକୁ

ଭେଦ କରିଯାଇ ତାହାକୁ ଦୃଢ଼ୀଭୂତ କରିବା ଆବଶ୍ୟକ । ତା' ନ ହେଲେ ସବୁଠୁ ସହଜ କାର୍ଯ୍ୟ ହେବ, ସତ୍ୟ ବୋଲି ପ୍ରତୀତ ହେଉଥିବା ଏକ ମିଥ୍ୟା ଧ୍ୱନିକୁ ଆଶ୍ରୟ କରି କାର୍ଯ୍ୟାରମ୍ଭ କରିବା ଅଥବା ପ୍ରକୃତ କ୍ଷେତ୍ରମଧ୍ୟକୁ ପ୍ରବେଶ କରୁ ନ ଥିବା ଏକ ସ୍ପର୍ଶକ ରେଖା ପରି ଏକ ଭୁଲ୍ ବିନ୍ଦୁରୁ ଯାତ୍ରାରମ୍ଭ କରି ଯଥାର୍ଥ ପଥଠାରୁ ବହୁ ଦୂରରେ ଦୂରରେ ଯାତ୍ରା କରିବା । ଏହା ଆମକୁ କୌଣସି ଲକ୍ଷ୍ୟରେ ତ ପହଞ୍ଚାଇବ ନାହିଁ ପରନ୍ତୁ ପରିଣାମ ହେବ ଶୂନ୍ୟତା ଓ ବିଫଳତା ।

କିନ୍ତୁ ଆମକୁ ପ୍ରଥମେ ପ୍ରାଥମିକ କ୍ଷତିକର ଆପତ୍ତି-ଅଭିଯୋଗ ସବୁକୁ ପଥରୁ ପରିଷ୍କାର କରିଦେବାକୁ ହେବ କିଂବା ଅନ୍ତତଃ ସେଗୁଡ଼ିକୁ ଯଥାର୍ଥ ସ୍ଥାନ ଦେବାକୁ ହେବ ଏବଂ ଆଲୋକ ସମ୍ମୁଖକୁ ଆଣିବାକୁ ହେବ । ସେହି ଅଭିଯୋଗଗୁଡ଼ିକ ହେଲା: ପ୍ରକଳ୍ପିତ ଏକ ଜାତୀୟ ଶିକ୍ଷାର ଧାରଣାରେ କୌଣସି ଅର୍ଥ ନାହିଁ ବା ଏଥିପାଇଁ କୌଣସି ପ୍ରକାର କଷ୍ଟସ୍ୱୀକାର କରିବା ମୂଲ୍ୟହୀନ । ଏହି ଧାରଣା ହେଉଛି ଯେଉଁ କ୍ଷେତ୍ରରେ ଉତ୍ତମ ନାଗରିକତ୍ୱ ସମ୍ବନ୍ଧେ ତାଲିମ ଦେବା ବ୍ୟତୀତ ସ୍ୱଦେଶ-ପ୍ରେମର କୌଣସି ନ୍ୟାୟସଙ୍ଗତ ସ୍ଥାନ ନାହିଁ, ତାହାରି ମଧ୍ୟକୁ ଏକ ମିଥ୍ୟା ଓ ସଂକୀର୍ଣ୍ଣ ସ୍ୱଦେଶ-ପ୍ରେମର ଏକ ଅବାଞ୍ଛିତ ଓ କ୍ଷତିକର ଅନଧିକାର ପ୍ରବେଶ । ଏବଂ ସେହି ଉଦ୍ଦେଶ୍ୟଟି ନିମିତ୍ତ କୌଣସି ବିଶେଷ ପ୍ରକାର ବା ପ୍ରଣାଳୀର ଶିକ୍ଷା ଅନାବଶ୍ୟକ, ଯେହେତୁ ଉତ୍ତମ ନାଗରିକତ୍ୱ ସକାଶେ ଦିଆଯାଉଥିବା ତାଲିମ ପ୍ରାଚ୍ୟ ବା ପାଶ୍ଚାତ୍ୟରେ ହେଉ, ଇଂଲଣ୍ଡ ବା ଜର୍ମାନୀ ବା ଜାପାନ ବା ଭାରତରେ ହେଉ, ସମସ୍ତଙ୍କ ସକାଶେ ସମସ୍ତ ସାରବସ୍ତୁ ସହିତ ସମାନ ହେବା ଆବଶ୍ୟକ । ମାନବଜାତି ଓ ଏହାର ଆବଶ୍ୟକତାସକଳ ସର୍ବତ୍ର ସମାନ ଏବଂ ସକଳ ଦେଶ ନିର୍ବିଶେଷରେ ସତ୍ୟ ଓ ଜ୍ଞାନ ଏକ; ଶିକ୍ଷା ମଧ୍ୟ ହେବା ଆବଶ୍ୟକ ଏକ ସାର୍ବଜନୀନ ବିଷୟ ଏବଂ ସକଳ ଜାତୀୟ ବା ଦେଶଗତ ସୀମାରେଖାରୁ ମୁକ୍ତ । ଉଦାହରଣସ୍ୱରୂପ, ବିଜ୍ଞାନ-କ୍ଷେତ୍ରରେ ଜାତୀୟ ଶିକ୍ଷାର ଅର୍ଥ କ'ଣ

ହୋଇପାରେ ଏବଂ ଏହା କ'ଣ ଏହି ମହତ୍ତ୍ୱକୁ ପ୍ରକାଶ କରେ ଯେ ଆମକୁ ଆଧୁନିକ ସତ୍ୟ ଓ ବିଜ୍ଞାନର ଆଧୁନିକ ପଦ୍ଧତିକୁ ବର୍ଜନ କରିବାକୁ ହେବ ଯେହେତୁ ଆମ ପାଖକୁ ସେସବୁ ଇଉରୋପରୁ ଆସିଛି ? ପ୍ରାଚୀନ ଭାରତର ଅପୂର୍ଣ୍ଣ ଭୌତିକ ଜ୍ଞାନ ଦିଗରେ ଫେରିଯାଇ ଗାଲିଲିଓ ଓ ନିଉଟନ୍‌ଙ୍କ ବିଜ୍ଞାନ ଓ ଅନ୍ୟ ଯାହାକିଛି ପରେ ଆସିଛି ସେସବୁକୁ ଆମେ କ'ଣ ବର୍ଜନ କରିବା ଏବଂ ଯାହାକିଛି ଭାସ୍କରାଚାର୍ଯ୍ୟ, ଆର୍ଯ୍ୟଭଟ୍ଟ ଓ ବରାହମିହିରଙ୍କୁ ଜଣାଥିଲା, କେବଳ ସେତିକିହିଁ ଶିଖାଇବା ? କିଂବା ସଂସ୍କୃତ ବା ବ୍ୟବହୃତ ଦେଶୀୟ ଭାଷାମାନଙ୍କର ଶିକ୍ଷାଦାନ ଲାଟିନ ବା ଆଧୁନିକ ଇଉରୋପୀୟ ଭାଷାମାନଙ୍କର ଶିକ୍ଷାଦାନଠାରୁ ପ୍ରକାର ଓ ପଦ୍ଧତିରେ କିପରି ଭିନ୍ନ ହେବା ଉଚିତ ? ତେବେ କ'ଣ ଆମେ ନଦୀୟାର ''ଟୋଲ''ମାନଙ୍କର ଶିକ୍ଷାପଦ୍ଧତିକୁ ଅଥବା ତକ୍ଷଶୀଳା ବା ନାଳନ୍ଦାର ପ୍ରାଚୀନ ଶିକ୍ଷା-ବ୍ୟବସ୍ଥାକୁ, ଯଦି ଆମେ ତାହାକୁ ଯଥାର୍ଥରେ ଆବିଷ୍କାର କରିପାରୁ, ଫେରାଇ ଆଣିବା ? ଅତି ବେଶୀରେ ଯାହା ଦାବି କରାଯାଇପାରେ, ତାହା ହେଲା ଆମ ଦେଶର ଅତୀତର ଶିକ୍ଷାକୁ ପ୍ରଶସ୍ତତର ସ୍ଥାନ ଦେବା, ଇଂରାଜୀ ଭାଷାର ଶିକ୍ଷା ସ୍ଥାନରେ ସ୍ଥାନୀୟ ଭାଷାସବୁକୁ ମାଧ୍ୟମରୂପେ ଗ୍ରହଣ କରି ଇଂରାଜୀ ଭାଷାକୁ ନିମ୍ନତର ସ୍ଥାନ ଦେଇ ଦ୍ୱିତୀୟ ଭାଷାରୂପେ ଗ୍ରହଣ କରିବା— କିନ୍ତୁ ଏପରି ପରିବର୍ତ୍ତନସବୁ ଆଣିବାର ଯୌକ୍ତିକତା ସମ୍ବନ୍ଧେ ଆପତ୍ତି କରିବାର ସମ୍ଭାବନା ମଧ୍ୟ ରହିଛି । ସର୍ବୋପରି, ଆମେ ବିଂଶ ଶତାବ୍ଦୀରେ ବାସ କରୁଛୁ ଏବଂ ଚନ୍ଦ୍ରଗୁପ୍ତ ବା ଆକବରଙ୍କ ଯୁଗର ଭାରତବର୍ଷକୁ ବର୍ତ୍ତମାନ ପୁନର୍ଜୀବିତ କରିପାରିବୁ ନାହିଁ; ଆମ୍ଭେମାନେ ସତ୍ୟ ଓ ଜ୍ଞାନର ଅଗ୍ରଗତି ସହ ସମତାଳ ଦେଇ ଆଗେଇ ଚାଲିବା, ଏବଂ ବାସ୍ତବ ପରିସ୍ଥିତି ମଧ୍ୟରେ ବଞ୍ଚିବା ନିମିତ୍ତ ଆମ୍ଭମାନଙ୍କୁ ଉପଯୁକ୍ତ କରି ଗଢ଼ିତୋଳିବା ଆବଶ୍ୟକ; ଏବଂ ସେହି କାରଣରୁ ଆମ୍ଭମାନଙ୍କର ଶିକ୍ଷା ବାହ୍ୟରୂପ ତଥା ସାରତତ୍ତ୍ୱରେ ଯୁଗୋପଯୋଗୀ ଏବଂ ଜୀବନ ତଥା ଅନ୍ତଶ୍ଚେତନାରେ ଆଧୁନିକ ହେବା ଆବଶ୍ୟକ ।

ଏହିସବୁ ଆପତ୍ତି-ଅଭିଯୋଗ କେବଳ ସେତେବେଳେ ଉପଯୋଗୀ ହୋଇପାରେ ଯଦି ସେସବୁକୁ ସେହି ଜାତୀୟ ଶିକ୍ଷା-କଳ୍ପନାର ହାସ୍ୟକର ଅନୁକରଣ ବିରୋଧରେ ପରିଚାଳିତ କରାଯାଇପାରେ, ଯେଉଁ ଜାତୀୟ ଶିକ୍ଷା, ଏକ ସମୟରେ ଯାହା ଆମ ସଂସ୍କୃତିର ଜୀବନ୍ତ ଆଧାର ଥିଲା କିନ୍ତୁ ବର୍ତ୍ତମାନ ମୃତ ବା ମୁମୂର୍ଷୁ ଅବସ୍ଥାରେ ରହିଛି, ତାହାର ସେହି ଅତୀତ ଅବସ୍ଥା ମଧ୍ୟକୁ ଏକ ସଂସ୍କାରବିରୋଧୀ ପଶ୍ଚାଦ୍‌ଗମନ କରିବାର ଉପାୟରୂପେ ନିଜକୁ ଗ୍ରହଣ କରେ । କିନ୍ତୁ ସେ ଦିଗରେ କୌଣସି ଧାରଣା ନାହିଁ ବା ପ୍ରଚେଷ୍ଟା ମଧ୍ୟ ନାହିଁ । ଜାତୀୟ ଶିକ୍ଷା ନିମିତ୍ତ ଦାବିର ଜୀବନ୍ତ ଆତ୍ମା, ବର୍ତ୍ତମାନ ପୁନଶ୍ଚ ଭାସ୍କରାଚାର୍ଯ୍ୟଙ୍କ ଜ୍ୟୋତିର୍ବିଦ୍ୟା ଏବଂ ଗଣିତଶାସ୍ତ୍ରର ବା ନାଳନ୍ଦାର ଶିକ୍ଷାପଦ୍ଧତିର ଧରଣକୁ ଫେରିଯିବାକୁ ଚାହେଁ ନାହିଁ, ଠିକ୍ ଯେପରି ଭାବରେ ସ୍ୱଦେଶୀ ଆନ୍ଦୋଳନର ଜୀବନ୍ତ ଆତ୍ମା ରେଳଗାଡ଼ି ବା ମୋଟର ଗାଡ଼ିର ପ୍ରଚଳନ ବ୍ୟବସ୍ଥାକୁ ଛାଡ଼ି ପ୍ରାଚୀନ ରଥଚାଳନା ବା ବଳଦଗାଡ଼ିର ପ୍ରଚଳନକୁ ଫେରିଯିବାକୁ ଚାହେଁ ନାହିଁ । ଏଥିରେ କୌଣସି ସନ୍ଦେହ ନାହିଁ ଯେ ଏ ସମ୍ବନ୍ଧେ ଯଥେଷ୍ଟ ପଶ୍ଚାଦ୍‌ଗାମୀ ଭାବପ୍ରବଣତା ରହିଛି ଏବଂ ସାଧାରଣ ଜ୍ଞାନ ଓ ଯୁକ୍ତି ଉପରେ କେତେକ ଅଦ୍ଭୁତ ଆକ୍ରମଣ ଓ ଅନିଷ୍ଟକାରୀ ଖାମଖିଆଲ ରହିଛି ଯାହା ବାସ୍ତବ ସମସ୍ୟାକୁ ଆହୁରି ଖରାପ କରୁଛି । କିନ୍ତୁ ଏହି କାଳ୍ପନିକ ଉଦ୍ଭଟ ବିଷୟର ଅପ୍ରାସଙ୍ଗିକ ସାମାନ୍ୟ ପରିମାଣ ମାତ୍ର ବିଷୟକୁ ଏକ ଅବାସ୍ତବ ରଙ୍ଗରେ ରଞ୍ଜିତ କରେ । ଆମକୁ ଯେଉଁ କାର୍ଯ୍ୟ କରିବାକୁ ହେବ, ଏହାହିଁ ତାହାର ଜୀବନ୍ତ ଅପରିହାର୍ଯ୍ୟ ସମସ୍ୟା ଏବଂ ଏଠାରେ ଯେଉଁ ପ୍ରଶ୍ନ ଉଠୁଛି ତାହା ଆଧୁନିକତା ଓ ପ୍ରାଚୀନତା ମଧ୍ୟରେ ନୁହେଁ, କିନ୍ତୁ ଏକ ବିଦେଶାଗତ ସଭ୍ୟତା ଏବଂ ଭାରତୀୟ ମନ ଓ ପ୍ରକୃତିର ବୃହତ୍ତର ସମ୍ଭାବନା ମଧ୍ୟରେ; ବର୍ତ୍ତମାନ ଓ ଅତୀତ ମଧ୍ୟରେ ନୁହେଁ, କିନ୍ତୁ ବର୍ତ୍ତମାନ ଓ ଭବିଷ୍ୟତ୍ ମଧ୍ୟରେ । ଏହା ପଞ୍ଚମ ଶତାବ୍ଦୀକୁ ଏକ ପଶ୍ଚାଦ୍‌ଗମନ ନୁହେଁ କିନ୍ତୁ ଆଗାମୀ

ଶତାବ୍ଦୀସବୁର ଏକ ଆରମ୍ଭ; ଏକ ପ୍ରତ୍ୟାବର୍ତ୍ତନ ନୁହେଁ, କିନ୍ତୁ ବର୍ତ୍ତମାନର କୃତ୍ରିମ ମିଥ୍ୟା ଉକ୍ତି ମଧ୍ୟରୁ ଶୀଘ୍ର ନିଷ୍କ୍ରାନ୍ତ ହୋଇ ଭାରତ-ଆତ୍ମା ଓ ଭାରତ-ଶକ୍ତି ଦ୍ୱାରା ଦାବି କରାଯାଉଥିବା ବୃହତ୍ତର ସହଜାତ ପ୍ରଚ୍ଛନ୍ନ ଶକ୍ତି ଦିଗରେ ଅଗ୍ରଗମନ ।

ଜାତୀୟ ଶିକ୍ଷା ବିରୋଧରେ ଯେଉଁ ଯୁକ୍ତି ଦିଆଯାଇପାରେ ତାହା ପ୍ରଥମତଃ ଆରମ୍ଭ ହୁଏ ଏହି ପ୍ରାଣହୀନ ପଣ୍ଡିତସୁଲଭ ଧାରଣା ଉପରେ ଯେ ବିଭିନ୍ନ ତଥ୍ୟର ଆହରଣହିଁ ହେଉଛି ଜାତୀୟ ଶିକ୍ଷାର ସମଗ୍ର ବା କେନ୍ଦ୍ରୀୟ ବିଷୟବସ୍ତୁ । କିନ୍ତୁ ବିଭିନ୍ନ ପ୍ରକାର ତଥ୍ୟ-ଆହରଣ ଶିକ୍ଷାର ଉପାୟ ଓ ଆବଶ୍ୟକତାର ମୁଖ୍ୟ ବିଷୟ ନୁହେଁ, କେବଳ ଗୋଟିଏ ବିଷୟ ମାତ୍ର । ଏହାର କେନ୍ଦ୍ରୀୟ ଲକ୍ଷ୍ୟ ହେଉଛି ମାନବର ମନ ଓ ଉତ୍ସାହର ଆବଶ୍ୟକ ଶକ୍ତିସୃଜନ; ଏହା ହେଉଛି ଜ୍ଞାନ, ଚରିତ୍ର ଓ ସଂସ୍କୃତିର ବ୍ୟବହାର ନିମିତ୍ତ ଶକ୍ତିର ସୃଜନ, ଅଥବା ମୋ ବିଚାରରେ, ଆବାହନ – ଅନ୍ତତଃ ଏତିକି, ଯଦି ଆଉ ବେଶୀ କିଛି ନ ହୋଇପାରେ । ଏବଂ ଏହି ଦୁଇଟି (ଜ୍ଞାନ,ଚରିତ୍ର ଓ ସଂସ୍କୃତିର ବ୍ୟବହାର ନିମିତ୍ତ ଶକ୍ତିର ଗଠନ ଏବଂ ଆବାହନ) ମଧ୍ୟରେ ଖୁବ୍ ବିଶେଷ ପାର୍ଥକ୍ୟ ରହିଛି । ଏହା ଖୁବ୍ ସତ୍ୟ ଯେ, ଯଦି ଆମେ ଯାହାକିଛି ଚାହୁଁ, ସେସବୁ କେବଳ ଆମର ସାମର୍ଥ୍ୟ ଅନୁସାରେ ଜଡ଼ବିଜ୍ଞାନ ଦ୍ୱାରା ତଥ୍ୟର ଆହରଣକୁ ବୁଝାଏ, ତେବେ ପାଶ୍ଚାତ୍ୟ ବିଜ୍ଞାନକୁ ହୃଦୟଙ୍ଗମ ନ କରି ସମଗ୍ରଭାବେ ଅଥବା ହୃଦୟଙ୍ଗମ କରି ଯତ୍ନର ସହ ଅଳ୍ପ ଅଳ୍ପ ମାତ୍ରାରେ ଗ୍ରହଣ କରିବା ଯଥେଷ୍ଟ ହୋଇପାରେ । କିନ୍ତୁ ମୁଖ୍ୟ ପ୍ରଶ୍ନ ହେଉଛି, କେଉଁ ପ୍ରକାରର ବିଜ୍ଞାନକୁ ଆମେ ଶିକ୍ଷା କରୁଛୁ, କେବଳ ସେତିକି ନୁହେଁ, କିନ୍ତୁ ବିଜ୍ଞାନସମ୍ମତ ମନ ଲାଭ କରି ଏବଂ ବୈଜ୍ଞାନିକ ଆବିଷ୍କାରର ଅଭ୍ୟାସକୁ ଫେରିପାଇ ଆମେ ବିଜ୍ଞାନକୁ ନେଇ କିପରି କ'ଣ କରିବୁ – ଭାରତୀୟ ମନୋଭାବର ସ୍ୱପ୍ରକୃତିରେ ସ୍ୱାଧୀନଭାବେ କାର୍ଯ୍ୟକରି ନୂତନ ପଦ୍ଧତି ଆବିଷ୍କାର କରିବା କିଂବା ଜଡ଼ବିଜ୍ଞାନକୁ ନୂତନ ଦିଗରେ ପରିଚାଳିତ କରିବାର

ସମ୍ଭାବନାକୁ ଏଠାରେ ମୁଁ ବାଦ୍ ଦେଉଛି– ଆମେ ଏହାକୁ ମାନବ-ମନର ଅନ୍ୟାନ୍ୟ ଶକ୍ତି ସହିତ ଏବଂ ବୈଜ୍ଞାନିକ ଜ୍ଞାନକୁ ଅନ୍ୟ ଜ୍ଞାନ ସହିତ ସମ୍ପର୍କିତ କରିବୁ ଯାହା ଏହା ସହିତ ଅଧିକ ଅନ୍ତରଙ୍ଗ ଏବଂ ଆମ ବୁଦ୍ଧି ଓ ପ୍ରକୃତିର କମ୍ ଆଲୋକ ଓ ଶକ୍ତିପ୍ରଦାନକାରୀ ଅଂଶସମୂହ ନୁହେଁ । ଏବଂ ସେଠାରେ ଭାରତୀୟ ମନର ଅଦ୍ଭୁତ ଧାରା, ଏହାର ମନସ୍ତାତ୍ତ୍ୱିକ ପରମ୍ପରା, ପୂର୍ବପୁରୁଷାଗତ ସାମର୍ଥ୍ୟ, ପ୍ରବଣତା, ଜ୍ଞାନ ପ୍ରଭୃତି ଏକ ପରମ ଗୁରୁତ୍ୱପୂର୍ଣ୍ଣ ସାଂସ୍କୃତିକ ଉପାଦାନର ପ୍ରବର୍ତ୍ତନ କରିଥାଏ । ଜାତୀୟ ମନ ସକାଶେ ସବୁଠାରୁ ସ୍ୱାଭାବିକ, ଉପଯୁକ୍ତ ଏବଂ ଉଦ୍ଦୀପକ ଏକ ଭାଷାକୁ– ସଂସ୍କୃତ ବା ଅନ୍ୟ ଏକ ଭାଷାକୁ– ଯେକୌଣସି ଉପାୟରେ ଲାଭ କରିବାକୁ ହେବ ଏବଂ ଆମେ କୌଣସି ପ୍ରକାର ଅତୀତ ବା ବର୍ତ୍ତମାନର ଶିକ୍ଷାଧାରାକୁ ଜାବୁଡ଼ି ଧରିବା ଅନାବଶ୍ୟକ । କିନ୍ତୁ ଅପରିହାର୍ଯ୍ୟ ପ୍ରଶ୍ନ ହେଉଛି ଏହି ଯେ ସଂସ୍କୃତ ଓ ଅନ୍ୟ ସ୍ଥାନୀୟ ଭାଷାଗୁଡ଼ିକୁ ଆମେ କିପରି ବ୍ୟବହାର କରିବା ଯାହାଫଳରେ ଆମ ନିଜ ସଂସ୍କୃତିର ଅନ୍ତରତମ ଓ ଅନ୍ତରଙ୍ଗ ଭାବ ମଧ୍ୟକୁ ଆମେ ପ୍ରବେଶ କରିପାରିବା, ଏବଂ ବର୍ତ୍ତମାନ ମଧ୍ୟ ଜୀବିତ ଥିବା ଆମ ଅତୀତର ଶକ୍ତି ଓ ଭବିଷ୍ୟତ୍ ସକାଶେ ଏପର୍ଯ୍ୟନ୍ତ ସୃଷ୍ଟ ହୋଇ ନ ଥିବା ଶକ୍ତି ମଧ୍ୟରେ ଏକ ସ୍ପଷ୍ଟ ଧାରାବାହିକତାକୁ ପ୍ରତିଷ୍ଠା କରିବା; ଏବଂ ଇଂରାଜୀ ବା ଅନ୍ୟ କୌଣସି ବିଦେଶୀ ଭାଷାକୁ ଆମେ କିପରି ଶିକ୍ଷା କରିବା ତଥା ବ୍ୟବହାର କରିବା ଯାହା ଫଳରେ ଅନ୍ୟ ଦେଶମାନଙ୍କର ଜୀବନ, ଭାବଧାରା ଓ ସଂସ୍କୃତିକୁ ଆମର ସହାୟକ ଭାବରେ ଜାଣିପାରିବା; ଏବଂ ଆମ ଚତୁର୍ଦ୍ଦିଗରେ ଥିବା ଜଗତ ସହିତ ଆମର ଯଥାର୍ଥ ସଂପର୍କ ପ୍ରତିଷ୍ଠା କରିପାରିବା । ଯଥାର୍ଥ ଜାତୀୟ ଶିକ୍ଷାର ଲକ୍ଷ୍ୟ ଓ ମୂଳତତ୍ତ୍ୱ, ନିଶ୍ଚିତ ଭାବରେ ଆଧୁନିକ ସତ୍ୟ ଓ ଜ୍ଞାନକୁ ପ୍ରତ୍ୟାଖ୍ୟାନ କରିବା ନୁହେଁ, କିନ୍ତୁ ଆମର ନିଜ ସତ୍ତା, ଆମର ନିଜ ମନ, ଆମର ନିଜ ଆତ୍ମାର ଭିତ୍ତି ଉପରେ ପ୍ରତିଷ୍ଠିତ ହେବା ।

ଖୋଲାଖୋଲି ଭାବରେ ବା ଅସ୍ପଷ୍ଟ ଭାବରେ ବିରୋଧୀ ଯୁକ୍ତିର ଯେଉଁ ଦ୍ୱିତୀୟ କାରଣ ଉପସ୍ଥାପିତ କରାଯାଏ, ତାହା ଏହି ଯେ ଆଧୁନିକ ଅର୍ଥାତ୍ ୟୁରୋପୀୟ ସଭ୍ୟତାକୁହିଁ ଆମକୁ ଗ୍ରହଣ କରିବାକୁ ହେବ ତଥା ସେଥି ନିମିତ୍ତ ଉପଯୁକ୍ତ କରି ଆମ୍ଭମାନଙ୍କୁ ପ୍ରସ୍ତୁତ କରିବାକୁ ହେବ; କେବଳ ତେବେହିଁ ଆମ୍ଭେମାନେ ବଞ୍ଚିପାରିବା ଏବଂ ସମୃଦ୍ଧିଶାଳୀ ହୋଇପାରିବା ଏବଂ ଆମ୍ଭମାନଙ୍କ ଶିକ୍ଷା ଆମ୍ଭମାନଙ୍କ ସକାଶେ ଏହାହିଁ କରିବା ଆବଶ୍ୟକ । ଜାତୀୟ ଶିକ୍ଷାର ଭାବଧାରା ଏହି ଧାରଣାର ପ୍ରାଚୁର୍ଯ୍ୟକୁ ଦାବି କରେ । ୟୁରୋପ ତାହାର ପ୍ରାଚୀନ ସଂସ୍କୃତିକୁ ଗଢ଼ିତୋଳିଥିଲା ଅତ୍ୟଧିକ ପରିମାଣରେ ପ୍ରାଚ୍ୟଜଗତରୁ : ଇଜିପ୍ଟ, ଚାଲ୍ଡ଼ିଆ, ଫିନିସିଆ, ଭାରତରୁ ଗ୍ରହଣ କରିଥିବା ଭିତ୍ତି ଉପରେ; କିନ୍ତୁ ଏକ ନୂତନ ଗତିପଥ ଓ ଅନ୍ୟ ଏକ ଜୀବନ-ଧାରଣା ଦିଗରେ ନିଜକୁ ପରିବର୍ତ୍ତିତ କରିଥିଲା ଗ୍ରୀସ୍ ଓ ରୋମର ନିଜସ୍ୱ ଚେତନା, ପ୍ରକୃତି, ମନ ଓ ସାମାଜିକ ପ୍ରତିଭା ଦ୍ୱାରା; ତାହାକୁ ହରାଇ ସେ ପୁନଶ୍ଚ ଲାଭ କରିଥିଲା କେତେକାଂଶରେ ଆରବଠାରୁ, ଆରବ ଯାହା ଗ୍ରହଣ କରିଥିଲା ସଦ୍ୟଭାବରେ ନିକଟପ୍ରାଚ୍ୟରୁ ଏବଂ ଭାରତରୁ; ଏବଂ ଅତ୍ୟଧିକ ମାତ୍ରାରେ ନିଜର ନବଜାଗରଣ ଦ୍ୱାରା । କିନ୍ତୁ ତା'ପରେ ମଧ୍ୟ ଏହା ଟିଉଟୋନିକ, ଲାଟିନ୍, କେଲ୍ଟିକ୍ ଓ ସ୍ଲାଭ୍ ଜାତିମାନଙ୍କର ନିଜସ୍ୱ ଚେତନା, ପ୍ରକୃତି, ମନ ଓ ସାମାଜିକ ପ୍ରତିଭାର ଅନୁକୂଳ ଏକ ନୂତନ ପରିବର୍ତ୍ତନ ଓ ଗତିପଥ ଗ୍ରହଣ କରିଥିଲା । ଏହି ସଭ୍ୟତା ଏପରି ଭାବରେ ଗଢ଼ିଉଠିଛି ଯାହା ଦୀର୍ଘକାଳ ଧରି ସର୍ବଦା ମାନବ-ମନର ଅନ୍ତିମ ଓ ଅପରିହାର୍ଯ୍ୟ ବାଣୀରୂପେ ନିଜକୁ ପ୍ରତିପାଦିତ କରିଆସିଛି । କିନ୍ତୁ ଏସିଆର ଦେଶଗୁଡ଼ିକ ଏହାକୁ ଗ୍ରହଣ କରିବାକୁ ବାଧ୍ୟ ନୁହନ୍ତି, ସେମାନେ ଅଧିକ ଭଲ ଭାବରେ ନିଜକୁ ଗଢ଼ିବେ, ସମୟକ୍ରମେ ଯାହାକିଛି ନୂତନ ଜ୍ଞାନ ବା ୟୁରୋପର ଯଥାର୍ଥ ଭାବଧାରା ପ୍ରକାଶିତ ହେବ ଏବଂ ନିଜର ଜ୍ଞାନ, ସଂସ୍କୃତି, ନିଜର ସ୍ୱକୀୟ ପ୍ରକୃତି ଓ ଚେତନା, ମନ ଏବଂ ସାମାଜିକ ପ୍ରତିଭା ଅନୁଯାୟୀ

ସେସବୁକୁ ଗ୍ରହଣ କରିବେ ଏବଂ ତନ୍ମଧ୍ୟରୁ ଭବିଷ୍ୟତର ସଭ୍ୟତାକୁ ଗଢ଼ିତୋଳିବେ । ପାଶ୍ଚାତ୍ୟର ବୈଜ୍ଞାନିକ, ଯୁକ୍ତିବାଦମୂଳକ, ଶିଳ୍ପଗତ, ମିଥ୍ୟା ଗଣତାନ୍ତ୍ରିକ ସଭ୍ୟତା ବର୍ତ୍ତମାନ କ୍ଷୟପ୍ରାପ୍ତ ହେବାକୁ ଆରମ୍ଭ କଲାଣି ଏବଂ ବର୍ତ୍ତମାନ ମୂହୂର୍ତ୍ତରେ ସେହି ପତିତ ଭିତ୍ତି ଉପରେ ଅନ୍ଧ ଭାବରେ କିଛି ଗଠନ କରିବା ଆମ୍ଭମାନଙ୍କ ପକ୍ଷରେ ହେବ ଏକ ଉନ୍ମତ୍ତ ଅଯୌକ୍ତିକତା । ଯେତେବେଳେ ପାଶ୍ଚାତ୍ୟର ଅଧିକାଂଶ ଉନ୍ନତ ଚିନ୍ତାଶୀଳ ବ୍ୟକ୍ତି ପାଶ୍ଚତ୍ୟ ଦେଶଗୁଡ଼ିକର ଏହି ଦୁଃସମୟରେ ଏକ ନୂତନ ଓ ଅଧିକତର ଆଧ୍ୟାତ୍ମିକ ସଭ୍ୟତାର ଆଶା ରଖି ଏସିଆର ପ୍ରତିଭା ଦିଗରେ ମୁଖ ଫେରାଉଛନ୍ତି, ସେତେବେଳେ ଏହା ଆଶ୍ଚର୍ଯ୍ୟର ବିଷୟ ହେବ ଯଦି ଆମ୍ଭେମାନେ ନିଜର ଆତ୍ମସତ୍ତା ଓ ପ୍ରଚ୍ଛନ୍ନଶକ୍ତିକୁ ପ୍ରତ୍ୟାଖ୍ୟାନ କରିବା ଅପେକ୍ଷା ଅଧିକ କିଛି ଭଲ ବିଷୟ ଚିନ୍ତା କରି ନ ପାରୁ ଏବଂ ୟୁରୋପର କ୍ଷୟଶୀଳ ଓ ମୃତପ୍ରାୟ ଅତୀତ ସଭ୍ୟତା ଉପରେ ଆସ୍ଥାବାନ୍ ହେଉ ।

ଏବଂ ପରିଶେଷରେ, ଏହି ଭିତ୍ତି ଉପରେ ଅଭିଯୋଗ କରାଯାଏ ଯେ ନିଃସନ୍ଦେହଭାବେ ମାନବ-ମନ ହେଉଛି ସର୍ବତ୍ର ସମାନ ଏବଂ ସର୍ବତ୍ର ଏକହିଁ ଯାନ୍ତ୍ରିକ ପଦ୍ଧତିରେ ସମରୂପଭାବେ ଏହାର ଶୃଙ୍ଖଳିତ ବିକାଶ ସମ୍ଭବ ହୋଇପାରେ । କିନ୍ତୁ ଏହା ହେଉଛି ଯୁକ୍ତିର ଏକ ପୁରାତନ ଓ ଜୀର୍ଣ୍ଣ କୁସଂସ୍କାର ଯାହାକୁ ପରିତ୍ୟାଗ କରିବାର ସମୟ ଆସି ଉପସ୍ଥିତ । କାରଣ ମାନବଜାତିର ବିଶ୍ୱଗତ ମନ ଓ ଆତ୍ମା ମଧ୍ୟରେ ଅସୀମ ଭିନ୍ନତା, ସାଧାରଣତ୍ୱ ଏବଂ ଅନୁପମତ୍ୱ ସହିତ ବ୍ୟକ୍ତିଗତ ମନ ଓ ଆତ୍ମା ରହିଛି ଏବଂ ଏହି ଉଭୟର ମଧ୍ୟରେ ରହିଛି ଏକ ମଧ୍ୟବର୍ତ୍ତୀ ଶକ୍ତି, ଏକ ଜାତୀୟ ମନ, ଏକ ମାନବ-ସମାଜର ଆତ୍ମା । ଏବଂ ଶିକ୍ଷାକୁ ଏକ ଯନ୍ତ୍ରନିର୍ମିତ ଶିଳ୍ପରେ ପରିଣତ ନ କରି ଯଦି ମାନବସତ୍ତାର ମନ ଓ ଆତ୍ମାର ଶକ୍ତିସମୂହର ଏକ ଯଥାର୍ଥ ଆବାସ ବା ଜୀବନ୍ତ ଆହ୍ୱାନରୂପେ ଗଢ଼ିତୋଳିବାକୁ ହୁଏ, ତେବେ ତାକୁ ଏହି ତ୍ରିବିଧ ଚିନ୍ତାଧାରାକୁ ବିଚାରକୁ ନେବାକୁ ହେବ ।

(୨)

ଜାତୀୟ ଶିକ୍ଷାର ଏହି ଚିନ୍ତାଧାରା ସମ୍ବନ୍ଧେ ଯେଉଁସବୁ ପ୍ରାଥମିକ ଆପତ୍ତି କରାଯାଉଛି ଏବଂ ପ୍ରସଙ୍ଗତଃ ଯଥାର୍ଥ ପଥରୁ ବିଚ୍ୟୁତ ହୋଇ ଯେଉଁ ଭ୍ରାନ୍ତ ଧାରଣାସବୁକୁ ନେଇ ଏହାର ବିରୋଧ କରାଯାଉଛି, ସେସବୁ ସତ୍ତ୍ୱେ ଆମକୁ ଅଧିକ ନିଶ୍ଚିତରୂପେ ଓ ସ୍ପଷ୍ଟଭାବେ ପ୍ରକାଶ କରିବାକୁ ହେବ ଜାତୀୟ ଶିକ୍ଷା ସମ୍ବନ୍ଧେ ଯେଉଁ ଚିନ୍ତାଧାରା, ଆମ ସକାଶେ ତାହାର ଅର୍ଥ କ'ଣ, ଭାରତରେ ଜାତୀୟ ଶିକ୍ଷାର ତତ୍ତ୍ୱ ଓ ରୂପ କ'ଣ ହେବ, ଏହା ଦ୍ୱାରା କ'ଣ ହାସଲ କରିବାକୁ ହେବ ଏବଂ ଏଥି ନିମିତ୍ତ କେଉଁ ପଦ୍ଧତି ଓ ପରିବର୍ତ୍ତନ ସହ ଆମକୁ ପ୍ରଚେଷ୍ଟା କରିବାକୁ ହେବ । ପ୍ରଚେଷ୍ଟାର ଏହି ଆରମ୍ଭରେ ପ୍ରକୃତ ଅସୁବିଧା ଆରମ୍ଭ ହୋଇଯାଏ, କାରଣ ବହୁ ଦିନ ଧରି, କେବଳ ଶିକ୍ଷାକ୍ଷେତ୍ରରେ ନୁହେଁ, କିନ୍ତୁ ପ୍ରାୟ ସବୁ କ୍ଷେତ୍ରରେ, ଆମର ସମଗ୍ର ସାଂସ୍କୃତିକ ଜୀବନରେ, ଆମେ ଆମର ଜାତୀୟ ଆତ୍ମା ଓ ଭାବକୁ ହରାଇ ବସିଛୁ ଏବଂ ଏପର୍ଯ୍ୟନ୍ତ ଏଥିନିମିତ୍ତ କୌଣସି ସ୍ପଷ୍ଟ, ଦୃଢ଼ ଓ ଗଭୀର ଚିନ୍ତା ବା ଦୃଷ୍ଟିଭଙ୍ଗୀର ପ୍ରଚେଷ୍ଟା ହୋଇ ନାହିଁ ଯାହା ଫଳରେ ଆମେ ତାହାର ପୁନରୁଦ୍ଧାର କରିପାରିବୁ ଏବଂ ତେଣୁ ଏବିଷୟରେ ଅତି ଆବଶ୍ୟକ ଓ ଆନୁଷଙ୍ଗିକ କୌଣସି ସ୍ପଷ୍ଟ ମତୈକ୍ୟ ବା ଏପରିକି କୌଣସି ମତାନୈକ୍ୟ ଦେଖାଯାଇ ନାହିଁ । ଅତି ବେଶୀରେ ଏକ ଶକ୍ତିଶାଳୀ ଭାବପ୍ରବଣତା ଏବଂ ଏକ ସାଧାରଣ କିନ୍ତୁ ଆକୃତିହୀନ ଭାବ ଏବଂ ଭାବପ୍ରବଣତା ସମ୍ବନ୍ଧୀୟ ଉତ୍ସାହ ଦ୍ୱାରା ଆମେ ସନ୍ତୁଷ୍ଟ ହୋଇ ରହିଛୁ ଏବଂ ଏହାକୁ ଆମର ବୁଦ୍ଧିଗତ ଅନୁସଙ୍ଗ, ଅଭ୍ୟାସ ବା ଖାମଖିଆଲସମ୍ମତ ଆକସ୍ମିକ ସଂଘଟିତ ଯେକୌଣସି ବିଶୃଙ୍ଖଳିତ ପ୍ରୟୋଗର ରୂପ ଦେଇଛୁ । ତାହାର ପରିଣାମ ହୋଇଛି ଅସ୍ପଷ୍ଟ ଓ ଅସ୍ଥାୟୀ ସଫଳତା, କିନ୍ତୁ ବରଂ ଚରମ ବିଶୃଙ୍ଖଳା ଓ ବିଫଳତା । ପ୍ରଥମ ଆବଶ୍ୟକ ହେଲା ଆମ ନିଜ ମନରେ ସ୍ପଷ୍ଟ ହୋଇ ଉଠିବା ଯେ ଜାତୀୟ ଆତ୍ମା,

ସ୍ୱଭାବ, ଚିନ୍ତାଧାରା ଓ ଆବଶ୍ୟକତା ଆମଠାରୁ ଶିକ୍ଷା ମାଧ୍ୟମରେ କ'ଣ ଦାବି କରୁଛି ଏବଂ ସମସ୍ୟାର ବିଭିନ୍ନ ଅଂଶରେ ଯଥାର୍ଥ ସଙ୍ଗତି ସହ ଶିକ୍ଷାକୁ କିପରି ପ୍ରୟୋଗ କରାଯାଇ ପାରିବ । କେବଳ ତାହାହିଁ କରାଯିବା ପରେ, କିଛି ଦୃଢ଼ ବିଶ୍ୱାସ ଏବଂ ଉପଯୋଗିତା ଓ ସଫଳତାର ସୁଯୋଗ ସହ ଆମେ ବସ୍ତୁତଃ ଆଶା କରିପାରୁ ଯେ ବର୍ତ୍ତମାନର ମିଥ୍ୟା, ଅସାର ଓ ଯାନ୍ତ୍ରିକ ଶିକ୍ଷାର ସ୍ଥାନରେ ଏକ ସାମାନ୍ୟ, ନିରର୍ଥକ, ବିଶୃଙ୍ଖଳ ବା ଏକ ନୂତନ ଯାନ୍ତ୍ରିକ ମିଥ୍ୟା ଉକ୍ତି ଅପେକ୍ଷା କିଛି ଶ୍ରେୟସ୍କର ବସ୍ତୁକୁ, ଭବିଷ୍ୟତର ଭାରତୀୟ ମନୁଷ୍ୟତ୍ୱର ଏକ ଯଥାର୍ଥ, ଜୀବନ୍ତ ଓ ସୃଜନଶୀଳ ଲାଳନପାଳନକୁ ପ୍ରତିଷ୍ଠିତ କରାଯାଇ ପାରିବ ।

କିନ୍ତୁ ସର୍ବପ୍ରଥମେ ଆବଶ୍ୟକ ହେଉଛି – ଯଥାର୍ଥ ଶିକ୍ଷା କହିଲେ ଆମେ ଯାହା ବୁଝୁ ତାହାର ସତ୍ୟାର୍ଥ, ତାହାର ମୌଳିକ ଲକ୍ଷ୍ୟ ଓ ସାର୍ଥକତାର ସମସ୍ତ ଅନିଶ୍ଚିତ ଅର୍ଥରୁ ମୁକ୍ତ ହେବା, ତାହାକୁ ଯଥାର୍ଥତଃ ଜାଣିବା । କାରଣ ତେବେହିଁ ଆମେ ଆମର ପ୍ରାରମ୍ଭିକ କାର୍ଯ୍ୟ ସମ୍ବନ୍ଧେ ନିଶ୍ଚିତ ହୋଇପାରିବୁ ଏବଂ ଶବ୍ଦଟି ସହିତ ଆମେ ଯେଉଁ ଗୁଣବାଚକ ସଂଜ୍ଞାଟିକୁ ଯୋଡ଼ିବାକୁ ଚାହୁଁଛୁ, ତାହାର ଯଥାର୍ଥ ସ୍ଥାନଟିକୁ ଓ ସମଗ୍ର ସମ୍ବନ୍ଧଟିକୁ ଦୃଢ଼ କରିବା ନିମିତ୍ତ ନିରାପଦରେ ଅଗ୍ରସର ହୋଇପାରିବୁ । ଜାତୀୟ ଶିକ୍ଷା କ'ଣ ଓ କ'ଣ ହେବା ଉଚିତ, ଏହା ନିଶ୍ଚିତଭାବେ ମୁଁ ଜାଣିବା ପୂର୍ବରୁ ମୋତେ ନିଶ୍ଚିତଭାବେ ଜାଣିବାକୁ ହେବ – ଶିକ୍ଷା କହିଲେ କ'ଣ ବୁଝାଏ ଏବଂ କ'ଣ ହେବା ଉଚିତ । ତେବେ ଆମର ପ୍ରାରମ୍ଭିକ ଉକ୍ତି ସହ ଆରମ୍ଭ କରାଯାଉ – ଯାହା ମୁଁ ଭାବୁଛି, ସେ ବିଷୟରେ ବିଶେଷ କିଛି ବାଦାନୁବାଦ ହୋଇପାରିବ ନାହିଁ ଯେ ଏକ ବାସ୍ତବ ଏବଂ ଜୀବନ୍ତ ଶିକ୍ଷାରେ ମୁଖ୍ୟ ତିନୋଟି ବିଷୟକୁ ବିଚାରକୁ ନେବାକୁ ହେବ : ନିଜର ଅତୁଳନୀୟତା ସହ ସାଧାରଣ ବ୍ୟକ୍ତିଗତ ମାନବ, ଦେଶ ବା ଲୋକସମୂହ, ଏବଂ ସମଗ୍ର ବିଶ୍ୱର ମାନବସମାଜ । ଏହାର ଠିକ୍ ପରବର୍ତ୍ତୀ ବିଚାର୍ଯ୍ୟ ବିଷୟ ହେଲା ଏହି ଯେ କେବଳ ତାହାହିଁ ହେବ

ଯଥାର୍ଥ ଏବଂ ଜୀବନ୍ତ ଶିକ୍ଷା ଯାହା ମାନବଜୀବନର ପୂର୍ଣ୍ଣାଙ୍ଗ ବିକାଶରେ ସାହାଯ୍ୟ କରେ, ପୂର୍ଣ୍ଣାଙ୍ଗ ଲକ୍ଷ୍ୟ ଓ କାର୍ଯ୍ୟକ୍ଷେତ୍ର ନିମିତ୍ତ ତାହାକୁ ପ୍ରସ୍ତୁତ କରେ । ଏଠାରେ ମାନବଜୀବନର ଅର୍ଥ ହେଲା ସମଗ୍ର ବ୍ୟକ୍ତିଗତ ମାନବ ଏବଂ ଏକ ସଙ୍ଗେ ଯେଉଁ ମାନବସମୂହର ବା ଦେଶର ସେ ଅନ୍ତର୍ଗତ, ତାହାର ଜୀବନ, ମନ ଓ ଆତ୍ମାର ଯଥାର୍ଥ ସମ୍ପର୍କରେ ଆସିବା ନିମିତ୍ତ ଯାହା ତାକୁ ସାହାଯ୍ୟ କରେ, ଏବଂ ଯେଉଁ ମାନବଜାତିର ସେହି ବୃହତ୍ ସମଗ୍ର ଜୀବନ, ମନ ଓ ଆତ୍ମାର ବ୍ୟକ୍ତି ନିଜେ ହେଉଛି ଗୋଟିଏ ଏକକ ଏବଂ ତାହାର ସମାଜ ବା ଦେଶ ହେଉଛି ଯାହାର ଏକ ସ୍ୱତନ୍ତ୍ର ତଥା ଅବିଚ୍ଛେଦ୍ୟ ଅଙ୍ଗ । ସମଗ୍ର ପ୍ରଶ୍ନଟିକୁ ଏହି ବୃହତ୍ ଏବଂ ସମଗ୍ର ତତ୍ତ୍ୱର ଆଲୋକରେ ବିଚାର କରିହିଁ ଆମର ଶିକ୍ଷା କ'ଣ ହେବ ଏବଂ ଜାତୀୟ ଶିକ୍ଷା ଦ୍ୱାରା ଆମେ କ'ଣ ସମ୍ପାଦନ କରିବାକୁ ଚେଷ୍ଟା କରିବା, ତାହାର ସର୍ବୋତ୍ତମ ଓ ସ୍ପଷ୍ଟ ଧାରଣାରେ ଆମେ ଉପନୀତ ହୋଇପାରିବା । ବର୍ତ୍ତମାନ ଭାରତରେ ଦୃଷ୍ଟିକୋଣ ଓ ଭିତ୍ତିର ଏହି ବୃହତ୍ତ୍ୱ ବିଶେଷଭାବେ ଆବଶ୍ୟକ, କାରଣ ଭାରତର ଜୀବନ-ଲକ୍ଷ୍ୟର ସମଗ୍ର ଶକ୍ତି, ତା'ର ନିୟତିର ଏହି ସଙ୍କଟମୟ ପରିବର୍ତ୍ତନ ସମୟରେ, ତାହାର ଏକାନ୍ତ ବିଶେଷ ଆବଶ୍ୟକତା ଦିଗରେ ନିୟନ୍ତ୍ରିତ ହେବା ଆବଶ୍ୟକ — ବ୍ୟକ୍ତିଗତ ଓ ଦେଶଗତ ଜୀବନରେ ତାହାର ଯଥାର୍ଥ ଆତ୍ମସତ୍ତାର ଆବିଷ୍କାର ଓ ପୁନର୍ଗଠନ କରିବା ଏବଂ ପୁନଶ୍ଚ ତାହାର ଆନ୍ତର ମହତ୍ତ୍ୱକୁ ଏହିଭାବେ ପୁନରଧିକାର କରି ସମଗ୍ର ମାନବଜାତିର ଜୀବନରେ ତାହାର ଯଥାର୍ଥ ଏବଂ ସ୍ୱାଭାବିକ ଅଂଶ ଓ ଅବସ୍ଥାନ ଗ୍ରହଣ କରିବା ।

ଯାହା ହେଉ, ମନୁଷ୍ୟ ଓ ତାହାର ଜୀବନ ସମ୍ବନ୍ଧେ, ଦେଶ ଓ ତାହାର ଜୀବନ ସମ୍ବନ୍ଧେ ଏବଂ ମାନବଜାତି ଓ ତାହାର ଜୀବନ ସମ୍ବନ୍ଧେ ଭିନ୍ନ ଭିନ୍ନ ଧାରଣାସବୁ ରହିଛି, ଏବଂ ଶିକ୍ଷା ସମ୍ବନ୍ଧରେ ଆମର ଧାରଣା ଓ ପ୍ରଚେଷ୍ଟା ସେହି ଭିନ୍ନତା ଅନୁସାରେ ଅନେକ ପରିମାଣରେ ପରିବର୍ତ୍ତିତ

ହୋଇପାରେ । ଏହିସବୁ ବିଷୟରେ ଭାରତର ସର୍ବଦା ଏକ ନିଜସ୍ୱ ଅସାଧାରଣ ଧାରଣା ଓ ଦୃଷ୍ଟି ଥିଲା ଏବଂ ଆମେ ଦେଖିବା ଆବଶ୍ୟକ ଯେ ଆମ ଶିକ୍ଷା ତାହାର ମୂଳଭିତ୍ତିରେ ଯେପରି ହେବ ବା ହେବା ଆବଶ୍ୟକ, ଯଥାର୍ଥରେ ସେପରି ହୋଇଛି କି ନାହିଁ, ଏବଂ ଯେଉଁ ଏକମାତ୍ର ବିଷୟ ଯାହାକି ଆମ ଶିକ୍ଷାକୁ ତାହାର ବାସ୍ତବ ଜାତୀୟ ଗୁଣ-ଧର୍ମ ପ୍ରଦାନ କରିବ ତାହା ଅଛି କି ନାହିଁ । ଭାରତୀୟ ଚିନ୍ତାଧାରାରେ ମନୁଷ୍ୟକୁ କେବେ ବି ଦେଖାଯାଇ ନାହିଁ ଜଡ଼ପ୍ରକୃତି ଦ୍ୱାରା ବିକଶିତ ଜୀବନ୍ତ ଶରୀରରୂପେ ଯାହାକି କେତେକ ପ୍ରାଣିକ ପ୍ରବୃତ୍ତି, ଏକ ଅହଂ, ଏକ ମନ ଏବଂ ଏକ ଯୁକ୍ତିବୁଦ୍ଧି, କେତୋଟି କ୍ଷୁଦ୍ର ଜାତିର ସମବାୟରେ ଗଠିତ ଏକ ମହାଜାତିର ଏକ ପ୍ରାଣୀ, ଏବଂ ଆମ୍ଭମାନଙ୍କ କ୍ଷେତ୍ରରେ ଭାରତୀୟ ମନୁଷ୍ୟଜାତିର ଏକ ପ୍ରାଣୀ, ଏବଂ ଯାହାର ସମଗ୍ର ଜୀବନ ଏବଂ ଶିକ୍ଷା ବ୍ୟକ୍ତିଗତ ଏବଂ ଜାତୀୟ ଅହଂର ସର୍ବୋତ୍ତମ ସୁବିଧା ନିମିତ୍ତ ତାଲିମପ୍ରାପ୍ତ ମନ ଓ ଯୁକ୍ତିବୁଦ୍ଧିର ଶାସନ-ପ୍ରଣାଳୀ ଅଧୀନରେ ଏହିସବୁ ପ୍ରବୃତ୍ତିର ତୁଷ୍ଟି ଦିଗରେ ପରିଚାଳିତ ହେବା ଆବଶ୍ୟକ । ଅପର ପ୍ରାଣୀମାନଙ୍କ ଅପେକ୍ଷା ଅଧିକ ଯୁକ୍ତିବୁଦ୍ଧିସମ୍ପନ୍ନ ପ୍ରାଣୀରୂପେ ମନୁଷ୍ୟକୁ ବିଚାର କରିବା ଦିଗରେ ମଧ୍ୟ ଭାରତର ମନ କେବେ ଢଳି ନାହିଁ, କିଂବା କୁହାଯାଇପାରେ – ସେହି ସୁପ୍ରଚଳିତ ସଂଜ୍ଞାକୁ ବିସ୍ତାରିତ କରି ଭାରତ କେବେ ଚିନ୍ତା କରି ନାହିଁ ଯେ ମନୁଷ୍ୟ ହେଉଛି ଏକ ଚିନ୍ତାଶୀଳ, ଅନୁଭବଶୀଳ ଏବଂ ସଂକଳ୍ପଶୀଳ ପ୍ରାକୃତିକ ଜୀବ, ଜଡ଼ପ୍ରକୃତିର ମାନସପୁତ୍ର, ଏବଂ ତାହାର ଶିକ୍ଷା ହେବ ମାନସିକ ସାମର୍ଥ୍ୟର ଏକ ସଂସ୍କୃତିତୁଲ୍ୟ, କିଂବା ସେ କେବେ ବି ମନୁଷ୍ୟର ବର୍ଣ୍ଣନା ଦେଇ ନାହିଁ ଏକ ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ସତ୍ତାରୂପେ ଏବଂ ତାହାର ଶିକ୍ଷାକୁ କେବେ ବି କହି ନାହିଁ ଯେ ତାହା ହେଉଛି ସମାଜ ଓ ରାଜ୍ୟର ଦକ୍ଷ, ଉତ୍ପାଦନକ୍ଷମ ଓ ଉତ୍ତମ ନିୟମାନୁବର୍ତ୍ତୀ ସଦସ୍ୟରୂପେ ମନୁଷ୍ୟକୁ ଉପଯୁକ୍ତ କରି ଗଢ଼ିବା ନିମିତ୍ତ ଏକ ତାଲିମ । ନିଃସନ୍ଦେହରେ

କୁହାଯାଇପାରେ ଯେ ଏହିସବୁ ହେଉଛି ମାନବ ସତ୍ତାର ବିଭିନ୍ନ ବିଭାବ ଏବଂ ଭାରତ ଏହିସବୁକୁ ତାହାର ବୃହତ୍ ଦୃଷ୍ଟିରେ ଦେଇଛି ଯଥେଷ୍ଟ ପ୍ରାଧାନ୍ୟ, କିନ୍ତୁ ସେସବୁ ହେଲା ବାହ୍ୟବସ୍ତୁ, ତାହାର ମନ, ପ୍ରାଣ ଓ କର୍ମର ମାଧ୍ୟମର ବିଭିନ୍ନ ଅଂଶ, ସମଗ୍ର ବା ବାସ୍ତବ ମନୁଷ୍ୟ ନୁହେଁ ।

ଭାରତ ସର୍ବଦା ବ୍ୟକ୍ତିଗତ ମନୁଷ୍ୟ ମଧ୍ୟରେ ଦେଖିଛି ଏକ ଆତ୍ମା, ମନ ଓ ଶରୀର ଦ୍ୱାରା ଆବୃତ ଦିବ୍ୟତ୍ୱର ଏକ ଅଂଶ, ପ୍ରକୃତି ମଧ୍ୟରେ ବିଶ୍ୱଗତ ସତ୍ତା ଓ ଆତ୍ମାର ଏକ ସଚେତନ ଅଭିବ୍ୟକ୍ତି । ମନୁଷ୍ୟ ମଧ୍ୟରେ ଭାରତ ସର୍ବଦା ଏକ ବୈଶିଷ୍ଟ୍ୟ ରକ୍ଷା କରିଛି ଏବଂ ମାନସିକ, ବୌଦ୍ଧିକ, ନୈତିକ, ଗତିଶୀଳ ଓ ବ୍ୟାବହାରିକ, ସୌନ୍ଦର୍ଯ୍ୟଗତ, ସୁଖଭୋଗଗତ, ପ୍ରାଣିକ ଓ ଶାରୀରିକ ସତ୍ତାର ଅନୁଶୀଳନ କରିଛି, କିନ୍ତୁ ଏହିସବୁକୁ ସେ ଦେଖିଛି ଆତ୍ମାର ଶକ୍ତିସକଳରୂପେ ଯାହା ସେହିସବୁ ମଧ୍ୟଦେଇ ଅଭିବ୍ୟକ୍ତ ହୋଇଥାଏ ଏବଂ ସେସବୁର ବୃଦ୍ଧି ସହିତ ଅଭିବୃଦ୍ଧ ହୋଇଥାଏ ଏବଂ ତଥାପି ସେସବୁ ଆତ୍ମାର ସର୍ବସ୍ୱ ନୁହନ୍ତି, କାରଣ ଏହାର ଆରୋହଣର ସର୍ବୋଚ୍ଚ ଶିଖରରେ ଏହା ସେସବୁ ଅପେକ୍ଷା କିଛି ମହତ୍ତର ସ୍ତରକୁ ଉତ୍ଥିତ ହୋଇଥାଏ ଯାହା ହେଉଛି ଏକ ଆଧ୍ୟାତ୍ମିକ ସତ୍ତା ଏବଂ ଏହାରି ମଧ୍ୟରେହିଁ ଭାରତ ସର୍ବଦା ଆବିଷ୍କାର କରିଛି ମାନବ ଆତ୍ମାର ସର୍ବୋତ୍ତମ ଅଭିବ୍ୟକ୍ତି ଏବଂ ତାହାର ଚରମ ଦିବ୍ୟ ମନୁଷ୍ୟତ୍ୱ, ତାହାର 'ପରମାର୍ଥ' ଏବଂ ତାହାର ସର୍ବୋଚ୍ଚ 'ପୁରୁଷାର୍ଥ' । ଏବଂ ସେହିପରି ଭାରତ କେବେ ବି ଜାତି ଦେଶ ବା ଲୋକସମୂହକୁ ବୁଝି ନାହିଁ ଏକ ସଂଗଠିତ ରାଷ୍ଟ୍ର ଭାବରେ ବା ଏକ ସୁସଜ୍ଜିତ ଲୋକସମାଜ ଭାବରେ ଯାହା ଜୀବନ-ସଂଗ୍ରାମ ଏବଂ ଜାତୀୟ ଅହଂର ସେବାରେ ଅନ୍ୟ ସବୁକିଛିକୁ ପ୍ରୟୋଗ କରିବା ନିମିତ୍ତ ସୁପ୍ରସ୍ତୁତ – ତାହା ହେଉଛି କେବଳ ଲୌହବର୍ମର ଛଦ୍ମବେଶ ଯାହା ଜାତୀୟ ପୁରୁଷକୁ ଲୁକ୍କାୟିତ କରେ ଏବଂ ବିଭ୍ରାନ୍ତ କରେ,– କିନ୍ତୁ ଏକ ମହାନ୍ ସାମୂହିକ ଆତ୍ମା ଏବଂ ଜୀବନ ଯାହା ସମୂହ ମଧ୍ୟରେ ପ୍ରକାଶିତ

ହୋଇଛି ଏବଂ ନିଜସ୍ୱ ଏକ ପ୍ରକୃତିକୁ ଏବଂ ସେହି ପ୍ରକୃତିର ଏକ ବିଧାନକୁ ଅଭିବ୍ୟକ୍ତ କରିଛି, ଯାହା ହେଉଛି ତାହାର ସ୍ୱଭାବ ଓ ସ୍ୱଧର୍ମ, ଏବଂ ଏହାର ବୁଦ୍ଧିଗତ, ସୌନ୍ଦର୍ଯ୍ୟଗତ, ନୀତିଗତ, ବ୍ୟାବହାରିକ, ସାମାଜିକ ଏବଂ ରାଜନୈତିକ ରୂପ ଏବଂ ସଂସ୍କୃତିରେ ଯାହା ଏହାକୁ ମୂର୍ତ୍ତ କରେ । ଏବଂ ସମାନ ଭାବରେ ମାନବସମାଜ ସମ୍ବନ୍ଧେ ଆମର ସାଂସ୍କୃତିକ ଧାରଣା ହେବା ଆବଶ୍ୟକ ମାନବଜାତି ମଧ୍ୟରେ ତାହାର ବିଶ୍ୱଗତ ଅଭିବ୍ୟକ୍ତିର ପ୍ରାଚୀନ ଦୃଷ୍ଟି ଅନୁସାରେ, ଜୀବନ ଓ ମନ ମଧ୍ୟଦେଇ ବିକଶିତ ହେବା କିନ୍ତୁ ତାହା ସହିତ ରହିବ ଏକ ଅତ୍ୟୁଚ୍ଚ ଆଧ୍ୟାତ୍ମିକ ଲକ୍ଷ୍ୟ, — ଏହା ହେବ ଏକ ଆଧ୍ୟାତ୍ମିକ ଭାବ, ମାନବଜାତିର ଆତ୍ମା ଯାହା ଅଗ୍ରଗତି କରିବ ସଂଗ୍ରାମ ଓ ସଙ୍ଗତି ମଧ୍ୟରେ ଏକତ୍ୱ ଦିଗକୁ, ଏବଂ ତଦ୍ୱାରା ଏହା ଅଭିବୃଦ୍ଧି କରିବ ଏହାର ଅଭିଜ୍ଞତାକୁ, ଏହାର ବହୁଲୋକଙ୍କର ବିଚିତ୍ର ସଂସ୍କୃତି ଓ ଜୀବନ-ଉଦ୍ଦେଶ୍ୟର ମଧ୍ୟଦେଇ ଆବଶ୍ୟକ ବୈଚିତ୍ର୍ୟକୁ ବଜାୟ ରଖି, ବ୍ୟକ୍ତିଗତ ଶକ୍ତିର ବିକାଶ ଓ ତାହାର ଦିବ୍ୟତର ସତ୍ତା ଓ ଜୀବନ ଦିଗରେ ଅଗ୍ରଗତିର ମଧ୍ୟଦେଇ ପୂର୍ଣ୍ଣତା ନିମିତ୍ତ ସନ୍ଧାନ କରି; କିନ୍ତୁ ଧୀରେ ଧୀରେ ହେଲେ ମଧ୍ୟ ମାନବଜାତିର ଜୀବନରେ ପୂର୍ଣ୍ଣତା ଲାଭ କରିବାର ସାମର୍ଥ୍ୟକୁ ଅନୁଭବ କରି । ଏହା ଯେ ମନୁଷ୍ୟ ଜୀବନର ବା ଜାତୀୟ ସତ୍ତାର ବାସ୍ତବ ବିବରଣ, ଏଥିରେ ସନ୍ଦେହ କରାଯାଇପାରେ; କିନ୍ତୁ ଥରେ ଯଦି ଏହି ବର୍ଣ୍ଣନାକୁ ସତ୍ୟ ବୋଲି ସ୍ୱୀକାର କରାଯାଏ, ତେବେ ଏହା ସ୍ପଷ୍ଟ ହୋଇଉଠିବ ଯେ ତାହାହିଁ ହେବ ଏକମାତ୍ର ଯଥାର୍ଥ ଶିକ୍ଷା ଯାହାକି ବ୍ୟକ୍ତି ଏବଂ ଜାତିର ମନ ଓ ଶରୀରରେ ଆତ୍ମାର ଏହି ବାସ୍ତବ କାର୍ଯ୍ୟପଦ୍ଧତି ନିମିତ୍ତ ଏକ ମାଧ୍ୟମ । ତାହାହିଁ ସେହି ମୌଳିକ ସତ୍ୟ ଯାହାକୁ ଭିତ୍ତି କରି ଆମେ ସବୁକିଛିକୁ ଗଢ଼ିତୋଳିବା ଆବଶ୍ୟକ, ତାହାହିଁ ହେଉଛି କେନ୍ଦ୍ରୀୟ ଉଦ୍ଦେଶ୍ୟ ଏବଂ ପଥପ୍ରଦର୍ଶନକାରୀ ଆଦର୍ଶ । ଏହା ହେବ ଏପରି ଏକ ଶିକ୍ଷା, ବ୍ୟକ୍ତି ନିମିତ୍ତ ଯାହାର କେନ୍ଦ୍ରୀୟ ଲକ୍ଷ୍ୟ ହେବ ଆତ୍ମା ଏବଂ ତାହାର ଶକ୍ତି ଓ ସମ୍ଭାବନାର ଅଭିବୃଦ୍ଧି; ଜାତି ନିମିତ୍ତ ଏହାର ପ୍ରଥମ ଉଦ୍ଦେଶ୍ୟ ହେବ ଜାତୀୟ

ଆତ୍ମା ଓ ଏହାର ଧର୍ମର ସଂରକ୍ଷଣ, ଶକ୍ତିବର୍ଦ୍ଧନ ଓ ସମୃଦ୍ଧିସାଧନ ଏବଂ ଏହି ଉଭୟକୁ ମାନବଜାତିର ଜୀବନ ଏବଂ ଊର୍ଦ୍ଧ୍ୱଗାମୀ ମନ ଓ ଆତ୍ମାର ଶକ୍ତିଚୟ ମଧ୍ୟକୁ ଉତ୍‌ଥିତ କରିବା । ଏବଂ କୌଣସି ସମୟରେ ବି ଏହା ମନୁଷ୍ୟର ସର୍ବୋଚ୍ଚ ଲକ୍ଷ୍ୟ, ତାହାର ଆଧ୍ୟାତ୍ମିକ ସତ୍ତାର ଜାଗରଣ ଓ ବିକାଶ ନିମିତ୍ତ ଦୃଷ୍ଟିକୁ ହରାଇ ବସିବ ନାହିଁ ।

(ଅସଂପୂର୍ଣ୍ଣ)

# ଜାତୀୟ ଶିକ୍ଷାର ବ୍ୟବସ୍ଥା

## (କେତେକ ପ୍ରାଥମିକ ବିଚାରଧାରା)

ଶ୍ରୀଅରବିନ୍ଦଙ୍କ ସଂପାଦିତ "Karmayogin" ନାମକ ଇଂରାଜୀ ପତ୍ରିକାରେ ତାଙ୍କର ଏହି ଆଠୋଟି ପ୍ରବନ୍ଧ ୧୯୧୦ ଖ୍ରୀଷ୍ଟାବ୍ଦରେ "A System of National Education" ଶିରୋନାମାରେ ପ୍ରକାଶିତ ହୋଇଥିଲା । କିନ୍ତୁ ଏହି ପ୍ରବନ୍ଧଗୁଡ଼ିକର ମୂଳ ବିଷୟ ଜାତୀୟ ଶିକ୍ଷା ସମ୍ବନ୍ଧେ କେବଳ ଏକ ପରୋକ୍ଷ ବିଚାରଧାରାର ପ୍ରକାଶ ବ୍ୟତୀତ ଏଥିରେ ତାହାର ଗଭୀରକୁ ପ୍ରବେଶ କରାଯାଇ ନ ଥିଲା । ପତ୍ରିକାଟିର ପ୍ରକାଶନ ବନ୍ଦ ହୋଇଯିବାରୁ ଏହା ଅସଂପୂର୍ଣ୍ଣ ରହିଗଲା । ତଥାପି ଏଥିରେ ଉପସ୍ଥାପିତ ବିଷୟବସ୍ତୁଗୁଡ଼ିକରେ ଜାତୀୟ ଶିକ୍ଷା ସମ୍ବନ୍ଧେ କେତେକ ଗୁରୁତ୍ୱପୂର୍ଣ୍ଣ ବିଷୟର ଉଲ୍ଲେଖ କରାଯାଇଥିବାରୁ ପ୍ରଥମେ ୧୯୨୪ ଖ୍ରୀଷ୍ଟାବ୍ଦରେ ଏହାକୁ ପୁସ୍ତିକାକାରରେ ପ୍ରକାଶ କରାଯାଇଥିଲା ।

ଏହାର ଓଡ଼ିଆ ଅନୁବାଦ ପ୍ରଥମେ 'ନବଜ୍ୟୋତି' ପତ୍ରିକାର ଅଗଷ୍ଟ ୧୯୭୧ ସଂଖ୍ୟାରୁ ଆରମ୍ଭ କରି ନଭେମ୍ବର ୧୯୭୫ ମଧ୍ୟରେ ପ୍ରକାଶିତ ହୋଇଥିଲା । ସେହି ଓଡ଼ିଆ ଅନୁବାଦକୁ କେତେକ ସ୍ଥାନରେ ପରିବର୍ତ୍ତିତ କରି ଏଠାରେ ଉପସ୍ଥାପିତ କରାଯାଇଛି ।

(୨)

# ଜାତୀୟ ଶିକ୍ଷାର ବ୍ୟବସ୍ଥା

## (କେତେକ ପ୍ରାଥମିକ ବିଚାରଧାରା)

(୧)

### ମାନବ ମନ

ଶିକ୍ଷାର ଯଥାର୍ଥ ଭିତ୍ତି ହେଉଛି ଶୈଶବ, କୈଶୋର ଓ ପ୍ରୌଢ଼ାବସ୍ଥାର ମାନବ-ମନର ଅନୁଶୀଳନ । ଜ୍ଞାନ-କୈନ୍ଦ୍ରିକ ପୂର୍ଣ୍ଣତାର ସିଦ୍ଧାନ୍ତ ଉପରେ ପ୍ରତିଷ୍ଠିତ ଶିକ୍ଷାବ୍ୟବସ୍ଥା ଯାହା ଅଧ୍ୟୟନର ଉପକରଣକୁ ଉପେକ୍ଷା କରେ ତାହା ପୂର୍ଣ୍ଣାଙ୍ଗ ଓ ସୁଷମ ମନର ଗଠନ ନ କରି ବୁଦ୍ଧିଗତ ଉତ୍କର୍ଷକୁ ଅଧିକଭାବେ ବାଧାଦେବାର ଓ କ୍ଷତିଗ୍ରସ୍ତ କରିବାର ସମ୍ଭାବନା ଥାଏ । କାରଣ ଶିକ୍ଷାବିତ୍‌କୁ କଳାକାର ବା ସ୍ଥପତି ସଦୃଶ ନିର୍ଜୀବ ଉପକରଣକୁ ନେଇ ନୁହେଁ, କିନ୍ତୁ ଅସୀମ ଭାବେ ସୂକ୍ଷ୍ମ ଓ ସଂବେଦନଶୀଳ ଜୀବନକୁ ନେଇ କାର୍ଯ୍ୟ କରିବାକୁ ହୁଏ । ସେ କାଷ୍ଠ ବା ପ୍ରସ୍ତର ସଦୃଶ କୌଣସି ମାନବକୁ ଶିକ୍ଷାକ୍ଷେତ୍ରର ଶ୍ରେଷ୍ଠ ଅବଦାନରେ ରୂପାୟିତ କରିପାରିବ ନାହିଁ, ଯେଉଁ ମନକୁ ବୁଝିବା ଦୁରୂହ ତାହାର ଉପାଦାନକୁ ନେଇ ତାକୁ କାର୍ଯ୍ୟ କରିବାକୁ ହେବ ଏବଂ ଭଙ୍ଗୁର ମାନବ-ଶରୀର ଦ୍ୱାରା ସେହି ମନ ଉପରେ ଆରୋପିତ ସୀମିତ ଅବସ୍ଥା ଉପରେ ତାକୁ ବିବେଚନା କରିବାକୁ ହେବ ।

ଏହା ନିଃସନ୍ଦେହ ଯେ ଇଉରୋପର ଆଧୁନିକ ଶିକ୍ଷାବ୍ୟବସ୍ଥା ପ୍ରାଚୀନ କାଳର ଅନେକ ଶିକ୍ଷାବ୍ୟବସ୍ଥା ଅପେକ୍ଷା ବିଶେଷ ଅଗ୍ରଗତି କରିଛି,

କିନ୍ତୁ ଏହାର ତ୍ରୁଟିସକଳ ମଧ୍ୟ ସ୍ପଷ୍ଟ । ମାନବ-ମନସ୍ତତ୍ତ୍ୱର ଅପୂର୍ଣ୍ଣ ଜ୍ଞାନହିଁ ଏହାର ଭିତ୍ତିଭୂମି, ଏବଂ କେବଳ ଇଉରୋପରେହିଁ ଏହାକୁ ଏହାର ବିପଜ୍ଜନକ ପରିଣାମରୁ ସୁରକ୍ଷିତ କରାଯାଇ ପାରିଛି । କାରଣ ସେଠାରେ ଏହି ଶିକ୍ଷା- ବ୍ୟବସ୍ଥାର ପ୍ରକ୍ରିୟାକୁ ସାଧାରଣ ଛାତ୍ର ଅସ୍ୱୀକାର କରିଥାଏ, ଦଣ୍ଡରୁ ରକ୍ଷା ପାଇବା କିଂବା ତୁରନ୍ତ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ନିମିତ୍ତ ଯେତିକି ଆବଶ୍ୟକ କେବଳ ସେତିକି ଅଧ୍ୟୟନର ଅଭ୍ୟାସ କରେ, କେତେକ ସକ୍ରିୟ ଅଭ୍ୟାସ ଓ ଜୋରଦାର ଶାରୀରିକ ବ୍ୟାୟାମ ଅବଲମ୍ବନ କରେ । କେବଳ ଭାରତରେହିଁ ଶରୀର, ମନ ଓ ଚରିତ୍ର ଉପରେ ଏହି ଶିକ୍ଷାବ୍ୟବସ୍ଥାର ଶୋଚନୀୟ ପରିଣାମ ବିଶେଷ ଭାବେ ପରିଲକ୍ଷିତ ହୁଏ । ଜାତୀୟ ଶିକ୍ଷା-ବ୍ୟବସ୍ଥାର ପ୍ରଥମ ସମସ୍ୟା ହେଲା ଇଉରୋପୀୟ ଶିକ୍ଷା-ବ୍ୟବସ୍ଥା ସଦୃଶ ବ୍ୟାପକ, ଏବଂ ତଦପେକ୍ଷା ଅଧିକ ସଂପୂର୍ଣ୍ଣ ତଥା ତ୍ରୁଟିହୀନ ଶିକ୍ଷାଦାନ କରିବା ଯହିଁରେ ଅଧିକ ମାନସିକ ଶ୍ରାନ୍ତି ଓ ଅର୍ଥହୀନ ମୁଖସ୍ଥ କରିବାର କୁପରିଣାମ ଦେଖା ଦେବ ନାହିଁ । ଏହା କେବଳ ଜ୍ଞାନାର୍ଜନର ଉପକରଣର ଅଧ୍ୟୟନ ଏବଂ ଏକ ସ୍ୱାଭାବିକ, ସହଜ ଓ ଫଳପ୍ରଦ ଶିକ୍ଷା-ବ୍ୟବସ୍ଥାର ଆବିଷ୍କାର ଦ୍ୱାରା ସମ୍ଭବ ହୋଇପାରେ । କେବଳ ଏହି ଜ୍ଞାନାର୍ଜନର ଉପକରଣଗୁଡ଼ିକୁ ସେସବୁର ସର୍ବୋତ୍ତମ ସାମର୍ଥ୍ୟରେ ଶକ୍ତିଶାଳୀ ଓ ତୀକ୍ଷ୍ଣ କରିବା ଦ୍ୱାରାହିଁ ଆଧୁନିକ ଅବସ୍ଥାରେ ପ୍ରୟୋଜନୀୟ ବୃଦ୍ଧିପ୍ରାପ୍ତ ବ୍ୟବହାର ନିମିତ୍ତ ଫଳପ୍ରଦ କରାଯାଇପାରେ । ମାନସିକ ଶକ୍ତିସବୁକୁ ସରଳ ଓ ସହଜ ଉପାୟ ଦ୍ୱାରା ତନ୍ନ ତନ୍ନ ଭାବେ ତାଲିମ କରିବାକୁ ହେବ, ତେବେହିଁ—ଏବଂ ତାହା ହେବା ପୂର୍ବରୁ ନୁହେଁ—ବୁଦ୍ଧିଗତ ଶକ୍ତିର ଅସାଧାରଣ କାର୍ଯ୍ୟସକଳ ସେସବୁ ଦ୍ୱାରା ସାଧିତ ହୋଇପାରିବ ।

ଯଥାର୍ଥ ଶିକ୍ଷାଦାନର ପ୍ରଥମ ନୀତି ଏହି ଯେ କିଛି ବି ଶିକ୍ଷା ଦିଆଯାଇ ପାରିବ ନାହିଁ । ଶିକ୍ଷକ ଜଣେ ଉପଦେଷ୍ଟା ବା ଅବଧାନ ନୁହନ୍ତି, ସେ ଜଣେ ସାହାଯ୍ୟଦାତା ଓ ପଥପ୍ରଦର୍ଶକ । ତାଙ୍କର କର୍ତ୍ତବ୍ୟ ହେଲା

ସୂଚନା ଦେବା, କିନ୍ତୁ ଜବରଦସ୍ତି କିଛି ଲଦିଦେବା ନୁହେଁ । ବାସ୍ତବରେ ସେ ଛାତ୍ରର ମନକୁ ତାଲିମ କରନ୍ତି ନାହିଁ, ସେ କେବଳ ତାହାର ଜ୍ଞାନାର୍ଜନର ଯନ୍ତ୍ରଗୁଡ଼ିକୁ କିପରି ପୂର୍ଣ୍ଣତା ପ୍ରଦାନ କରିବାକୁ ହେବ, ତାହା ଦେଖାଇ ଦିଅନ୍ତି ଏବଂ ତାହାର ପଦ୍ଧତିରେ ଉତ୍ସାହିତ ଓ ସହାୟତା କରନ୍ତି । ସେ ତାକୁ ଜ୍ଞାନ ପ୍ରଦାନ କରନ୍ତି ନାହିଁ, ନିଜେ କିପରି ଜ୍ଞାନ ଅର୍ଜନ କରିପାରିବ ତାହାର ଉପାୟ ଦେଖାଇ ଦିଅନ୍ତି । ସେ ଛାତ୍ର ମଧ୍ୟରେ ଅନ୍ତର୍ନିହିତ ଜ୍ଞାନକୁ ବହିର୍ଦ୍ଦେଶକୁ ଆଣି ତାହାର ପ୍ରୟୋଗ କରନ୍ତି ନାହିଁ, କେବଳ ତାକୁ ଦେଖାଇ ଦିଅନ୍ତି ଯେ ତାହା କେଉଁଠାରେ ନିହିତ ଏବଂ ତାହାକୁ ବହିର୍ଦ୍ଦେଶକୁ ଆଣିବାକୁ ସେ କିପରି ଅଭ୍ୟସ୍ତ ହୋଇପାରେ । ଏହି ନିୟମ କେବଳ କିଶୋର ଓ ପ୍ରୌଢ଼ ମନକୁ ଶିକ୍ଷା ଦେବା ନିମିତ୍ତ ପ୍ରୟୋଗ କରାଯାଇ ପାରିବ ଏବଂ ଶିଶୁ-ମନକୁ ଶିକ୍ଷା ଦେବା ନିମିତ୍ତ ଏହା ପ୍ରଯୋଜ୍ୟ ନୁହେଁ,– ଏହା ଏକାନ୍ତ ରକ୍ଷଣଶୀଳ ଏବଂ ଅଜ୍ଞାନମୂଳକ ମତବାଦ । ଶିଶୁ ବା ବୟସ୍କ ବ୍ୟକ୍ତି, ବାଳକ ବା ବାଳିକା, ସମସ୍ତଙ୍କ ନିମିତ୍ତ ଉତ୍ତମ ଶିକ୍ଷାଦାନର କେବଳ ଏହି ଏକମାତ୍ର ଉତ୍ତମ ନିୟମ ଅଛି । ବୟସର ତାରତମ୍ୟ ଅନୁସାରେ ପ୍ରୟୋଜନୀୟ ସାହାଯ୍ୟ ଓ ମାର୍ଗ-ନିର୍ଦ୍ଦେଶର ମାତ୍ରା କମ୍ ବା ବେଶି ହୋଇପାରେ କିନ୍ତୁ ମୂଳତଃ ଏହି ନିୟମର ପ୍ରକୃତିରେ କୌଣସି ପରିବର୍ତ୍ତନ ହୁଏ ନାହିଁ ।

ଦ୍ୱିତୀୟ ନୀତି ହେଲା ଉତ୍କର୍ଷସାଧନ ନିମିତ୍ତ ମନକୁ ନିଜର ପରାମର୍ଶ ଗ୍ରହଣ କରିବାକୁ ହେବ । ଛାତ୍ରମାନଙ୍କୁ ପିତାମାତା ବା ଶିକ୍ଷକଙ୍କ ଅଭିଳଷିତ ଛାଞ୍ଚରେ ପିଟାପିଟି କରି ଗଢ଼ିତୋଳିବାର ଧାରଣା ଏକ ବର୍ବରୋଚିତ ଅଜ୍ଞାନ କୁସଂସ୍କାର ମାତ୍ର । ଛାତ୍ର ନିଜେହିଁ ନିଜର ସ୍ୱଭାବ ଅନୁଯାୟୀ ବିକାଶପ୍ରାପ୍ତ ହେବାକୁ ଅନୁପ୍ରାଣିତ ହେବା ଉଚିତ । ପୁତ୍ର-କନ୍ୟାଙ୍କୁ ପୂର୍ବନିର୍ଦ୍ଧାରିତ କୌଣସି ନିର୍ଦ୍ଦିଷ୍ଟ ଗୁଣାବଳୀ, ଶକ୍ତି, ଭାବଧାରା, ନୈତିକ ଉତ୍କର୍ଷର ଅଧିକାରୀ କରାଇବା ନିମିତ୍ତ ଅଥବା ପୂର୍ବକଳ୍ପିତ ଏକ ଜୀବନନିର୍ବାହ-ପନ୍ଥା ନିମିତ୍ତ

ପ୍ରସ୍ତୁତ କରାଇବାର ମନୋଭାବ ଧାରଣ କରିବାଠାରୁ ପିତାମାତାଙ୍କ ପକ୍ଷରେ ଆଉ କିଛି ବଡ଼ ଭୁଲ୍ ନାହିଁ । ସ୍ୱଭାବକୁ ତାହାର ନିଜ ଧର୍ମତ୍ୟାଗ କରିବା ନିମିତ୍ତ ବାଧ କରିବାର ଅର୍ଥ ସବୁଦିନ ପାଇଁ ତାହାର କ୍ଷତି ଘଟାଇବା, ବିକାଶରେ ବ୍ୟାଘାତ ଆଣିବା ଓ ପୂର୍ଣ୍ଣତାଲାଭକୁ ବିକୃତ କରିବା । ମାନବ-ଆତ୍ମା ଉପରେ ଏହା ଏକ ସ୍ୱାର୍ଥଜଡ଼ିତ ଅତ୍ୟାଚାର ଏବଂ ରାଷ୍ଟ୍ର ସକାଶେ ଏକ ଆଘାତ; କାରଣ ଏହା ଫଳରେ ଏହାର ମଙ୍ଗଳ ନିମିତ୍ତ ବ୍ୟକ୍ତି ତାହାର ଯେଉଁ ସର୍ବୋତ୍କୃଷ୍ଟ ଦାନ ଦେଇଥା'ନ୍ତା ତାହା ରାଷ୍ଟ୍ର ହରାଇ ବସେ ଏବଂ ତତ୍ ପରିବର୍ତ୍ତେ ତାହାଠାରୁ ଗ୍ରହଣ କରିବାକୁ ବାଧହୁଏ ଯାହା ଅପୂର୍ଣ୍ଣ, କୃତ୍ରିମ, ଦ୍ୱିତୀୟ ଶ୍ରେଣୀୟ, ଆଗ୍ରହହୀନ ଓ ସାଧାରଣ । ପ୍ରତ୍ୟେକ ମନୁଷ୍ୟ ମଧ୍ୟରେ ଏପରି କିଛି ନିହିତ ଯାହା ଦିବ୍ୟ, ଯାହା ତାହାର ନିଜସ୍ୱ, ଏବଂ ପୂର୍ଣ୍ଣତା ଓ ସାମର୍ଥ୍ୟପ୍ରାପ୍ତି ନିମିତ୍ତ ପ୍ରତ୍ୟେକର ରହିଛି ସୁଯୋଗ – ତାହାର ପରିସର ଯେତେ କ୍ଷୁଦ୍ର ହେଉନା କାହିଁକି – ଯାହା ଭଗବାନ ତାକୁ ଦାନ କରନ୍ତି ଏବଂ ଯାହାକୁ ସେ ଗ୍ରହଣ ଅଥବା ବର୍ଜନ କରିପାରେ । ଆମର ଏକାନ୍ତ କର୍ତ୍ତବ୍ୟ ହେଲା ଏହାକୁ ଆବିଷ୍କାର କରିବା, ବିକଶିତ କରାଇବା ଓ ବ୍ୟବହାର କରିବା । ଶିକ୍ଷାର ସର୍ବପ୍ରଧାନ ଲକ୍ଷ୍ୟ ହେବା ଉଚିତ ଏକ ମହତ୍ ଉଦ୍ଦେଶ୍ୟସାଧନ ନିମିତ୍ତ ବିକାଶଶୀଳ ଅନ୍ତରାତ୍ମାକୁ ତାହାର ନିଜ ମଧ୍ୟସ୍ଥ ସର୍ବୋତ୍କୃଷ୍ଟ ବସ୍ତୁକୁ ବାହାର କରି ଆଣିବାରେ ଓ ତାହାକୁ ପୂର୍ଣ୍ଣତା ପ୍ରଦାନ କରିବାରେ ସାହାଯ୍ୟ କରିବା ।

ଶିକ୍ଷାଦାନର ତୃତୀୟ ନୀତି ହେଉଛି ନିକଟସ୍ଥ ପାରିପାର୍ଶ୍ୱିକ ଅବସ୍ଥାରୁ ଆରମ୍ଭ କରି ଦୂର-ଦୂରାନ୍ତ ପର୍ଯ୍ୟନ୍ତ, ବର୍ତ୍ତମାନ ଯାହା ଉପସ୍ଥିତ ତହିଁରୁ ଆରମ୍ଭ କରି ଭବିଷ୍ୟତ୍‌ରେ ଯାହା ହୋଇଉଠିବ ସେଥି ନିମିତ୍ତ କାର୍ଯ୍ୟକରିବା । ପ୍ରାୟ ସଦାସର୍ବଦା, ମାନବପ୍ରକୃତିର ମୂଳଭିତ୍ତି ହେଲା ତାହାର ଅନ୍ତରାତ୍ମାର ଅତୀତ ଅବସ୍ଥା ଏବଂ ତାହାର ବଂଶପରମ୍ପରା, ପରିବେଶ, ଜାତୀୟତା, ଦେଶ, ଯେଉଁ ମୃତ୍ତିକାରୁ ସେ ଖାଦ୍ୟ ଗ୍ରହଣ

କରେ, ଯେଉଁ ବାୟୁ ସେ ନିଃଶ୍ୱାସରେ ସେବନ କରେ, ଯେଉଁ ଦୃଶ୍ୟ, ଶବ୍ଦ ଓ ଅଭ୍ୟାସରାଜି ସହ ସେ ଅଭ୍ୟସ୍ତ । ଯେହେତୁ ସେସବୁ ତାହାକୁ ତାହାର ଅଜ୍ଞାତସାରରେ ପ୍ରଭାବିତ କରନ୍ତି, ତଥାପି ଏହା ନୁହେଁ ଯେ ସେସବୁ କମ୍ ପ୍ରଭାବଶାଳୀ ଭାବେ ତାହାକୁ ଗଢ଼ି ତୋଳନ୍ତି । ତେଣୁ ସେହିସବୁକୁ ନେଇହିଁ ଆମ୍ଭମାନଙ୍କୁ ଶିକ୍ଷା ଆରମ୍ଭ କରିବାକୁ ହେବ । ବ୍ୟକ୍ତି ଯେଉଁ ଦେଶରେ ବାସକରେ, ସ୍ୱଚ୍ଛନ୍ଦରେ ଗଢ଼ିଉଠେ ଏବଂ ଯାହାର ପରିବେଶ ମନକୁ ପରିବେଷ୍ଟିତ କରେ ତହିଁରୁ ତାହାର ପ୍ରକୃତିର ଚେରମୂଳକୁ ଉତ୍ପାଟିତ କରି ତାହାର ବିପରୀତଧର୍ମୀ ଦେଶ ଓ ଜୀବନର ମାନସିକ ଚିତ୍ର ଓ ଭାବଧାରାକୁ ଗ୍ରହଣ କରିବା ଉଚିତ ନୁହେଁ । ଯଦି ବାହାରୁ କିଛି ଆଣିବାକୁ ହେବ ତେବେ ତାହାକୁ ଗ୍ରହଣ କରିବା ନିମିତ୍ତ ମନ ନିକଟରେ ସମର୍ପଣ କରିବାକୁ ହେବ କିନ୍ତୁ ବାଧ କରି ଲଦି ଦେବାକୁ ହେବ ନାହିଁ । ଏକ ସ୍ୱାଧୀନ ଏବଂ ସ୍ୱାଭାବିକ ଅଭିବୃଦ୍ଧିହିଁ ଯଥାର୍ଥ ବିକାଶର ସର୍ତ୍ତ । ଏପରି ମାନବାତ୍ମାସବୁ ଦେଖାଯାଆନ୍ତି ଯେଉଁମାନେ ସ୍ୱଭାବତଃ ସେମାନଙ୍କ ପରିବେଶ ବିରୋଧରେ ବିଦ୍ରୋହୀ ହୋଇଉଠନ୍ତି ଏବଂ ଏହା ବୋଧହୁଏ ଯେ ସେମାନେ ଭିନ୍ନ ଯୁଗ ଓ ଦେଶର ବ୍ୟକ୍ତି । ସେମାନେ ସେମାନଙ୍କ ସ୍ୱାଭାବିକ ଆଗ୍ରହକୁ ଅନୁସରଣ କରିବା ଉଚିତ; କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ଅବସନ୍ନ, ଶକ୍ତିହୀନ, ଶୂନ୍ୟ ଓ ଅପ୍ରାକୃତିକ ହୋଇପଡ଼ନ୍ତି ଯଦି ସେମାନଙ୍କୁ କୃତ୍ରିମ ଭାବେ କୌଣସି ବିପରୀତଧର୍ମୀ ଛାଞ୍ଚରେ ପକାଇ ଗଢ଼ିବାର ପ୍ରୟାସ କରାଯାଏ । ଏହା ଈଶ୍ୱରଙ୍କର ବ୍ୟବସ୍ଥା ଯେ ସେମାନେ କୌଣସି ଏକ ନିର୍ଦ୍ଦିଷ୍ଟ ଦେଶ, ଯୁଗ ଓ ସମାଜର ବ୍ୟକ୍ତି ହେବା ଉଚିତ; ସେମାନେ ହେବା ଉଚିତ ଅତୀତର ଶିଶୁଗଣ, ବର୍ତ୍ତମାନର ଅଧିକାରୀ, ଭବିଷ୍ୟତର ସ୍ରଷ୍ଟା । ଅତୀତ ହେଉଛି ଆମ୍ଭମାନଙ୍କର ଭିତ୍ତିଭୂମି, ବର୍ତ୍ତମାନ ଆମ୍ଭମାନଙ୍କର ବିଷୟବସ୍ତୁ ଏବଂ ଭବିଷ୍ୟତ୍ ହେଉଛି ଆମ୍ଭମାନଙ୍କର ଲକ୍ଷ୍ୟ ଓ ପ୍ରଗତିର ପରାକାଷ୍ଠା । ଜାତୀୟ ଶିକ୍ଷା ବ୍ୟବସ୍ଥାରେ ପ୍ରତ୍ୟେକେହିଁ ନିଜ ନିଜର ଉପଯୁକ୍ତ ଓ ସ୍ୱାଭାବିକ ସ୍ଥାନ ଗ୍ରହଣ କରିବା ଉଚିତ ।

(୨)

## ମନର ଶକ୍ତିସକଳ

ଶିକ୍ଷାବିତ୍‌ର ଉପକରଣ ହେଲା ମନ ବା ଅନ୍ତଃକରଣ ଯାହାର ଚାରୋଟି ସ୍ତର ବା ବିଭାବ ରହିଛି । ମନର ଯେଉଁ ସ୍ତର ଅତୀତ ଅସ୍ପଷ୍ଟ ଧାରଣାସବୁର ଧାରକ ବା ସ୍ମୃତିର ଭଣ୍ଡାର ତାହାର ନାମ ହେଉଛି 'ଚିତ୍ତ' । ସ୍ମୃତିର ସୁନିର୍ଦ୍ଦିଷ୍ଟ କ୍ରିୟାକଳାପଠାରୁ ଏହାକୁ ସ୍ୱତନ୍ତ୍ର କରି ଦେଖିବାକୁ ହେବ; ଏହା ହେଉଛି ମନର ଅନ୍ୟସବୁ ସ୍ତରର ଭିତ୍ତି ଯାହା ଉପରେ ନିର୍ଭର କରି ସେସବୁ ତିଷ୍ଠି ରହିଥା'ନ୍ତି । ଆମର ସକଳ ଅଭିଜ୍ଞତା ଆମ ଭିତରେ ନିଷ୍କ୍ରିୟ ବା ପ୍ରଚ୍ଛନ୍ନ ସ୍ମୃତିରୂପେ ରହିଥାଏ, ସକ୍ରିୟ ସ୍ମୃତି ସେହି ଭଣ୍ଡାର ମଧ୍ୟରୁ ଯାହା ଆବଶ୍ୟକ କରେ ତାହାକୁ ବାଛି ନେଇଥାଏ । କିନ୍ତୁ ସକ୍ରିୟ ସ୍ମୃତି ହେଲା ଏପରି ଏକ ମନୁଷ୍ୟ ସଦୃଶ ଯେକି ଏକ ବିରାଟ ଅବରୁଦ୍ଧ ଜଡ଼ପିଣ୍ଡର ସ୍ତୂପ ମଧ୍ୟରେ କିଛି ଅନ୍ୱେଷଣ କରେ; କୌଣସି କୌଣସି ସମୟରେ ସେ ଯାହା ଖୋଜେ ତାହା ପାଇପାରେ ନାହିଁ, ଅନେକ ସମୟରେ ତା'ର ଦ୍ରୁତ ଅନୁସନ୍ଧାନରେ ଏପରି ବହୁ ବସ୍ତୁ ଅକସ୍ମାତ୍ ତାହାର ଗୋଚରକୁ ଆସିଥାଏ ଯେଉଁଗୁଡ଼ିକ ତା'ର ତାତ୍କାଳିକ ପ୍ରୟୋଜନରେ ଆସେ ନାହିଁ; ଅନେକ ସମୟରେ ସେ ଗୁରୁତର ଭୁଲ୍ କରି ବସେ ଏବଂ ଅଯଥାର୍ଥ ବସ୍ତୁକୁ ପାଇ ଯଥାର୍ଥ ବସ୍ତୁ ପାଇଛି ବୋଲି ଭାବିଥାଏ; ଯେଉଁ ଥିରେ ସେ ହାତ ଦେଇଥାଏ ତାହା ମୂଲ୍ୟହୀନ ନ ହେଲେ ମଧ୍ୟ ଅପ୍ରାସଙ୍ଗିକ ହୋଇଥାଏ । ନିଷ୍କ୍ରିୟ ସ୍ମୃତି ବା 'ଚିତ୍ତ' ନିମିତ୍ତ କୌଣସି ତାଲିମ ଦରକାର ହୁଏ ନାହିଁ, ଏହା ସ୍ୱୟଂକ୍ରିୟ ଏବଂ ସ୍ୱଭାବତଃ ନିଜର କର୍ମ-ସମ୍ପାଦନ ନିମିତ୍ତ ଯଥେଷ୍ଟ କ୍ଷମ । ଜ୍ଞାନର ପରିସର ମଧ୍ୟରେ ଆସୁଥିବା ଏପରି କୌଣସି ସାମାନ୍ୟତମ ବିଷୟ ନାହିଁ

ଯାହାକି ଏହି ଚମତ୍କାର ଆଧାର ମଧ୍ୟରେ ଦୃଢ଼ ଭାବେ ସ୍ଥାପିତ ଓ ନିର୍ଦ୍ଦୋଷ ଭାବେ ସଂରକ୍ଷିତ ହୋଇ ନ ଥାଏ। ସକ୍ରିୟ ସ୍ମୃତି ହେଲା ଏକ ଉଚ୍ଚତର କିନ୍ତୁ ଅସଂପୂର୍ଣ୍ଣ ରୂପେ ବିକଶିତ ବୃତ୍ତି ଯାହାର ଉନ୍ନତି ଆବଶ୍ୟକ।

ଦ୍ୱିତୀୟ ସ୍ତରଟି ହେଲା ଯଥାର୍ଥ ମନ ବା ମନସ୍ ଯାହାକୁ ଭାରତୀୟ ମନସ୍ତତ୍ତ୍ୱରେ ଷଷ୍ଠ ଇନ୍ଦ୍ରିୟ ବୋଲି କୁହାଯାଏ, ଯାହା ମଧ୍ୟରେ ଅନ୍ୟସବୁ ଇନ୍ଦ୍ରିୟର ଅନୁଭୂତି ସଂଗୃହୀତ ହୋଇଥାଏ। ମନର କାର୍ଯ୍ୟପଦ୍ଧତି ହେଲା ଦୃଷ୍ଟି, ଶବ୍ଦ, ଗନ୍ଧ, ସ୍ୱାଦ ଓ ସ୍ପର୍ଶ, ଏହି ପଞ୍ଚେନ୍ଦ୍ରିୟ ମାଧ୍ୟମରେ ପ୍ରତିଭାତ ବସ୍ତୁସକଳର ପ୍ରତିରୂପ ଗ୍ରହଣ କରିବା ଏବଂ ପୁଣି ଏସବୁକୁ ଚିନ୍ତାନୁଭୂତିରେ ପରିବର୍ତ୍ତିତ କରିବା। ଏହା ନିଜର ପ୍ରତ୍ୟକ୍ଷ ଧୀଶକ୍ତି ଦ୍ୱାରା ମଧ୍ୟ ବିଭିନ୍ନ ପ୍ରତିରୂପ ଗ୍ରହଣ କରେ ଏବଂ ସେସବୁକୁ ମାନସିକ ଧାରଣାରେ ପରିଣତ କରେ। ଏହି ଅନୁଭୂତିସକଳ ହେଲା ଚିନ୍ତାର ଉପକରଣ ମାତ୍ର, କିନ୍ତୁ ଯଥାର୍ଥ ଚିନ୍ତା ନୁହେଁ; କିନ୍ତୁ ଏହା ବିଶେଷଭାବେ ଗୁରୁତ୍ୱପୂର୍ଣ୍ଣ ଯେ ଚିନ୍ତା ତାହାର ପର୍ଯ୍ୟାପ୍ତ ଓ ସଂପୂର୍ଣ୍ଣ ସାମଗ୍ରୀଗୁଡ଼ିକୁ ନେଇ କାର୍ଯ୍ୟ କରିବା ଉଚିତ। ତେଣୁ ଶିକ୍ଷାବିତ୍‌ର ପ୍ରଥମ କାର୍ଯ୍ୟ ହେଲା– ଶିଶୁ ମଧ୍ୟରେ ଷଡ଼େନ୍ଦ୍ରିୟର ଯଥାର୍ଥ ପ୍ରୟୋଗର ବିକାଶ ଘଟାଇବା; ଅବ୍ୟବହାର ଦ୍ୱାରା ଇନ୍ଦ୍ରିୟଗୁଡ଼ିକ ଯେପରି ସେମାନଙ୍କ ବିକାଶରେ ବାଧାପ୍ରାପ୍ତ ବା କ୍ଷତିଗ୍ରସ୍ତ ନ ହୁଅନ୍ତି, କିନ୍ତୁ ସେଗୁଡ଼ିକ ଯେଉଁ ପୂର୍ଣ୍ଣାଙ୍ଗ ଯଥାର୍ଥତା ଓ ଗଭୀର ସୂକ୍ଷ୍ମ ସଂବେଦନଶୀଳତା ନିମିତ୍ତ ସମର୍ଥ ସେଥି ନିମିତ୍ତ ଶିକ୍ଷକଙ୍କ ପ୍ରତ୍ୟକ୍ଷ ନିର୍ଦ୍ଦେଶାନୁସାରେ ଶିଶୁ ଦ୍ୱାରା ସେଗୁଡ଼ିକୁ ତାଲିମପ୍ରାପ୍ତ କରାଇବା ନିମିତ୍ତ ଦୃଷ୍ଟିଦେବା। ଏଥି ସହ କର୍ମେନ୍ଦ୍ରିୟଗୁଡ଼ିକ ଦ୍ୱାରା ଯାହାକିଛି ସହାୟତା ଲାଭ କରାଯାଇପାରେ ସେସବୁକୁ ସଂପୂର୍ଣ୍ଣ ରୂପେ ନିୟୋଜିତ କରାଯିବା ଆବଶ୍ୟକ। ଉଦାହରଣସ୍ୱରୂପ ଚକ୍ଷୁ ଯାହା ଦେଖେ ଓ ମନ ଯାହା ଅନୁଭବକରେ ହସ୍ତ ତାହାକୁ କାର୍ଯ୍ୟକାରୀ କରିବା ନିମିତ୍ତ ତାଲିମ ପାଇବା ଉଚିତ। ସମଗ୍ର ଅନ୍ତଃକରଣ ଯେଉଁ ଜ୍ଞାନ ହାସଲ କରେ ତାହାକୁ ପୂର୍ଣ୍ଣତଃ ପ୍ରକାଶ କରିବା ନିମିତ୍ତ ବାକ୍‌ଶକ୍ତି ତାଲିମ ପାଇବା ଉଚିତ।

ତୃତୀୟ ସ୍ତରଟି ହେଲା 'ବୁଦ୍ଧି', ଯାହାକି ଚିନ୍ତାର ଯଥାର୍ଥ ଉପକରଣ ଏବଂ ତାହା ସମଗ୍ର ଯନ୍ତ୍ରର ଅନ୍ୟ ଅଂଶଗୁଡ଼ିକ ଦ୍ୱାରା ଯେଉଁ ଜ୍ଞାନ ଲାଭ କରାଯାଏ ତାହାକୁ ଶୃଙ୍ଖଳିତ ଓ ବ୍ୟବସ୍ଥିତ କରେ । ଏପର୍ଯ୍ୟନ୍ତ ମୁଁ ମନର ଯେଉଁ ତିନୋଟି ସ୍ତର ବିଷୟରେ କହିଛି ତନ୍ମଧ୍ୟରେ ଏହି ସ୍ତରଟି ଶିକ୍ଷାବିତ୍‌ଙ୍କ ସକାଶେ ଅସୀମରୂପେ ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ । ବୁଦ୍ଧି ହେଉଛି ମନର ଏପରି ଏକ ଅଙ୍ଗ ଯାହାକି କେତେକ କାର୍ଯ୍ୟନିର୍ବାହକ ଶ୍ରେଣୀରୂପେ ଗଠିତ; ସେଗୁଡ଼ିକୁ ପ୍ରଧାନତଃ ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ : ଦକ୍ଷିଣ ଭାଗର କାର୍ଯ୍ୟକ୍ଷମତା ତଥା ବୃତ୍ତିସମୂହ ଓ ବାମ ଭାଗର କାର୍ଯ୍ୟ ତଥା କାର୍ଯ୍ୟ-କ୍ଷମତାସମୂହ । ଦକ୍ଷିଣ ଭାଗର କାର୍ଯ୍ୟକ୍ଷମତା ହେଲା ବ୍ୟାପକ, ସୃଜନଶୀଳ ଓ ସମନ୍ୱୟମୂଳକ; ବାମ ଭାଗର କାର୍ଯ୍ୟ କ୍ଷମତା ହେଲା ସମାଲୋଚନାମୂଳକ ଓ ବିଶ୍ଳେଷଣାତ୍ମକ । ଦକ୍ଷିଣଭାଗର କାର୍ଯ୍ୟକ୍ଷମତାର ଅନ୍ତର୍ଗତ ହେଲା ବିଚାର, କଳ୍ପନା, ସ୍ମୃତି, ପର୍ଯ୍ୟବେକ୍ଷଣ; ବାମ ଭାଗର କାର୍ଯ୍ୟକ୍ଷମତାର ଅନ୍ତର୍ଗତ ହେଲା ତୁଳନା ଓ ଯୁକ୍ତି । ସମାଲୋଚନାମୂଳକ କାର୍ଯ୍ୟକ୍ଷମତାସବୁ ପ୍ରଭେଦ ଦେଖାନ୍ତି, ତୁଳନା କରନ୍ତି, ଶ୍ରେଣୀବିଭାଗ କରନ୍ତି, ସାମାନ୍ୟକରଣ କରନ୍ତି, ସିଦ୍ଧାନ୍ତ କରନ୍ତି, ଅନୁମାନ କରନ୍ତି, ନିଷ୍ପତ୍ତି କରନ୍ତି; ଏହିସବୁ ହେଲେ ଯୁକ୍ତିସଙ୍ଗତ କାରଣର ଉପାଦାନସକଳ । ଦକ୍ଷିଣ ଭାଗର କାର୍ଯ୍ୟକ୍ଷମତାସବୁ ହୃଦୟଙ୍ଗମ କରନ୍ତି, ଆଦେଶ କରନ୍ତି, ସେମାନଙ୍କ ନିଜ କ୍ଷମତାନୁସାରେ ବିଚାର କରନ୍ତି, ତାତ୍ପର୍ଯ୍ୟ ଗ୍ରହଣ କରନ୍ତି, ଧାରଣ କରନ୍ତି, ଏବଂ ଦକ୍ଷତାର ସହ ବ୍ୟବହାର କରନ୍ତି । ମନର ଦକ୍ଷିଣଭାଗ ହେଉଛି ଜ୍ଞାନର ପ୍ରଭୁ, ବାମଭାଗ ହେଉଛି ଭୃତ୍ୟ । ବାମଭାଗ କେବଳ ଜ୍ଞାନର ବହିରାବରଣକୁ ସ୍ପର୍ଶ କରେ, ଦକ୍ଷିଣଭାଗ ଜ୍ଞାନର ଆତ୍ମାକୁ ଭେଦ କରିଥାଏ । ବାମଭାଗ ନିରୂପିତ ସତ୍ୟକୁ ନିଜେ ସୀମିତ କରେ, ଦକ୍ଷିଣ ଭାଗ ଯାହା ସ୍ମରଣ ରଖିବା କଠିନ ଏବଂ ଅନିରୂପିତ, ସେହିସବୁକୁ ଦୃଢ଼ଭାବେ ଧାରଣ କରିପାରେ । ମାନୁଷୀ

ଯୁକ୍ତିବୁଦ୍ଧିର ପରିପୂର୍ଣ୍ଣତା ନିମିତ୍ତ ଉଭୟଭାଗ ଅପରିହାର୍ଯ୍ୟ । ଯଦି ଶିଶୁର ଶିକ୍ଷା ଅପୂର୍ଣ୍ଣ ଓ ଏକଦେଶଦର୍ଶୀ ହେବାକୁ ଆମେ ନ ଚାହୁଁ ତେବେ ମନ-ଯନ୍ତ୍ରର ଏହି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ଷମତାଗୁଡ଼ିକୁ ସେମାନଙ୍କର ଉଚ୍ଚତମ ଓ ସୂକ୍ଷ୍ମତମ କାର୍ଯ୍ୟଶକ୍ତିରେ ଉତ୍‌ଥିତ କରାଇବାକୁ ହେବ ।

ମନର କାର୍ଯ୍ୟକ୍ଷମତାର ଏକ ଚତୁର୍ଥ ସ୍ତର ରହିଛି ଯାହାକି ମାନବ ମଧ୍ୟରେ ଏପର୍ଯ୍ୟନ୍ତ ପୂର୍ଣ୍ଣତଃ ବିକଶିତ ହୋଇ ନାହିଁ ଏବଂ କ୍ରମଶଃ ଏକ ପ୍ରଶସ୍ତତର ବିକାଶ ଓ ଅଧିକତର ପୂର୍ଣ୍ଣାଙ୍ଗ ବିବର୍ତ୍ତନ ଦିଗରେ ଗତି କରୁଛି । ଜ୍ଞାନର ଏହି ଉଚ୍ଚତମ ସ୍ତରର ଅଦ୍ଭୁତ ଶକ୍ତିଗୁଡ଼ିକୁ ପ୍ରଧାନତଃ ଅସାଧାରଣ ଧୀଶକ୍ତିର ବାହ୍ୟପ୍ରକାଶରୁ ଆମ୍ଭେମାନେ ଜାଣିଥାଉ; ସେସବୁ ହେଲା — ସାର୍ବଭୌମ ବିଚାରଶକ୍ତି, ସ୍ୱତଃସ୍ଫୂର୍ତ୍ତ ସତ୍ୟଦୃଷ୍ଟି, ଅଖଣ୍ଡ ବାକ୍‌ପ୍ରେରଣା, ପ୍ରତ୍ୟକ୍ଷ ଜ୍ଞାନଦୃଷ୍ଟି, ଏତେ ପରିମାଣରେ ଯେ ଅନେକ ସମୟରେ ତାହା ଈଶ୍ୱରବାଣୀତୁଲ୍ୟ ପ୍ରତୀୟମାନ ହୁଏ, ମନୁଷ୍ୟ ଭଗବତ୍ ପ୍ରତ୍ୟାଦିଷ୍ଟ ସତ୍ୟବକ୍ତାରେ ପରିଣତ ହୋଇଥାଏ । ଏହି ଶକ୍ତିସକଳ ସେଗୁଡ଼ିକର ଉଚ୍ଚତର ବିକାଶ ସହ ପ୍ରକାଶିତ ହେବା ଅତି ବିରଳ, ଯଦିଓ ଅନେକେ ଅପୂର୍ଣ୍ଣ ଭାବରେ ବା ଆକସ୍ମିକ ପ୍ରକାଶ ରୂପେ ଏହି ଶକ୍ତିସକଳର ଅଧିକାରୀ ହୋଇଥା'ନ୍ତି । ତଥାପି ସେସବୁ ଶକ୍ତି ମାନବର ସମାଲୋଚନାମୂଳକ ଯୁକ୍ତିବୁଦ୍ଧି ଦ୍ୱାରା ବିଶେଷ ଭାବେ ଅବିଶ୍ୱାସ୍ୟ ହୋଇଥା'ନ୍ତି କାରଣ ସେସବୁରେ ଭ୍ରାନ୍ତି, ମନମୁଖିତା, ଏବଂ ଭାବପ୍ରବଣ କଳ୍ପନାର ସମ୍ମିଶ୍ରଣ ସେଗୁଡ଼ିକର ପୂର୍ଣ୍ଣାଙ୍ଗ କ୍ରିୟାକଳାପକୁ ବାଧାପ୍ରାପ୍ତ ଓ ବିକୃତ କରିଥାଏ । ତଥାପି ଏହା ସ୍ପଷ୍ଟ ଯେ ମାନବସମାଜ ତାହାର ବର୍ତ୍ତମାନର ସ୍ତରକୁ ଉନ୍ନୀତ ହୋଇପାରି ନ ଥା'ନ୍ତା ଯଦି ଏହିସବୁ କାର୍ଯ୍ୟକାରୀ କ୍ଷମତାର ସହାୟତା ପାଇ ନ ଥା'ନ୍ତା, ଏବଂ ଏହା ଏକ ପ୍ରଶ୍ନରୂପେ ଦେଖାଦିଏ — ଯାହାକୁ ଶିକ୍ଷାବିତ୍‌ଗଣ ଏପର୍ଯ୍ୟନ୍ତ ହାତାହାତି ଦୃଢ଼ଭାବେ ଧରିପାରି ନାହାନ୍ତି — ଶିଶୁ ମଧ୍ୟସ୍ଥ ଏହି ଉପକରଣ, ଏହି ଅସାଧାରଣ ଧୀଶକ୍ତିର ଶକ୍ତିଶାଳୀ ଓ ଦୁର୍ବୋଧ ଉପକରଣର କିପରି

ବ୍ୟବହାର କରିବାକୁ ହେବ । ଯେ କେବଳ ଉପଦେଷ୍ଟା (ଶିକ୍ଷକ ନୁହନ୍ତି), ସେ ଏହି ପ୍ରତିଭାକୁ ହତୋତ୍ସାହ ଏବଂ ଦମନ କରିବାକୁ ଚେଷ୍ଟା କରନ୍ତି, ଯେ ଅଧିକ ଉଦାର ଶିକ୍ଷକ ହୋଇଥା'ନ୍ତି ସେ ଏହି ପ୍ରତିଭାକୁ ସ୍ୱାଗତ କରନ୍ତି । ଏହି ଯେଉଁ କାର୍ଯ୍ୟକାରୀ କ୍ଷମତାସବୁ ମାନବସମାଜ ସକାଶେ ଏତେ ଗୁରୁତ୍ୱପୂର୍ଣ୍ଣ, ସେଗୁଡ଼ିକୁ ଆମ୍ଭମାନଙ୍କ ବିଚାର-ଆଲୋଚନାର ପରିସର ମଧ୍ୟରୁ ବହିଷ୍କୃତ କରି ରଖାଯାଇ ନ ପାରେ । ଏହିସବୁକୁ ଅବହେଳା କରିବାହିଁ ନିର୍ବୋଧତା । ସେସବୁର ଅପୂର୍ଣ୍ଣ ବିକାଶକୁ ଅବଶ୍ୟ ପୂର୍ଣ୍ଣାଙ୍ଗ କରିବାକୁ ହେବ; ତହିଁରେ ଭ୍ରାନ୍ତି, ମନମୁଖିତା, ଏବଂ ଭାବପ୍ରବଣ ଖାମଖେୟାଲର ସମ୍ମିଶ୍ରଣକୁ ସାବଧାନତା ଓ ଜ୍ଞାନର ସହ ଅପସାରିତ କରିବାକୁ ହେବ । କିନ୍ତୁ ଶିକ୍ଷକ ନିଜେ ଏହା କରି ପାରିବେ ନାହିଁ, ସେ ଯଦି ଏଥିରେ ହସ୍ତକ୍ଷେପ କରନ୍ତି ତେବେ ଶସ୍ୟକ୍ଷେତ୍ରରୁ ବାଲୁଙ୍ଗା ବାଛିବା ସଙ୍ଗେସଙ୍ଗେ ଯାହା ଉତ୍ତମ ଶସ୍ୟ ତାହାକୁ ମଧ୍ୟ ନିର୍ମୂଳ କରିଦେବେ । ସକଳ ଶିକ୍ଷାବିଷୟକ କାର୍ଯ୍ୟସାଧନ ସଦୃଶ ଏଠାରେ ମଧ୍ୟ ଶିକ୍ଷକ ଅନ୍ୟ କିଛି ନ କରି କେବଳ ଶିଶୁର ବିକାଶଶୀଳ ଆତ୍ମାକୁ ତାହାର ସ୍ୱକୀୟ ପୂର୍ଣ୍ଣତାର ପଥରେ ନେଇ ପହଞ୍ଚାଇ ଦେବେ ।

(୩)

# ନୈତିକ ପ୍ରକୃତି

ମାନବର ଜୀବନ-ପରିଚାଳନାକ୍ଷେତ୍ରରେ ମାନସିକ ପ୍ରକୃତି ନୈତିକ ପ୍ରକୃତି ଉପରେ ନିର୍ଭରଶୀଳ । ବୁଦ୍ଧିଗତ ଶିକ୍ଷାକୁ ଯଦି ନୈତିକ ଓ ଆବେଗମୟ ପ୍ରକୃତିର ପୂର୍ଣ୍ଣତାଠାରୁ ବିଛିନ୍ନ କରି ଦିଆଯାଏ ତେବେ ତାହା ମାନବ-ଉନ୍ନତିର କ୍ଷତିକାରକ ହୋଇଥାଏ । ତଥାପି ଏଥି ନିମିତ୍ତ କୌଣସି ନିର୍ଦ୍ଧାରିତ ପାଠ୍ୟକ୍ରମ ଯାହା ମନର ତାଲିମ ନିମିତ୍ତ ବିଶେଷ ସହାୟକ ହେବ, ତାହାର ବ୍ୟବସ୍ଥା ସହଜସାପେକ୍ଷ ହେଲେ ମଧ୍ୟ ଆଧୁନିକ ପରିସ୍ଥିତିର ତାଡ଼ନାରେ ସ୍କୁଲ-କଲେଜର ନୈତିକ ତାଲିମ ସକାଶେ କିଛି ବ୍ୟବସ୍ଥା କରିବା ସମ୍ଭବ ହୋଇପାରି ନାହିଁ । ନୈତିକ ଓ ଧର୍ମ ସଂକ୍ରାନ୍ତ ପାଠ୍ୟପୁସ୍ତକର ଶିକ୍ଷାଦାନ ଦ୍ୱାରା ଛାତ୍ରମାନଙ୍କୁ ନୀତିପରାୟଣ ଓ ଧର୍ମପରାୟଣ କରି ଗଢ଼ିବାର ପ୍ରୟାସ ହେଲା ଏକ ଅସାର କାର୍ଯ୍ୟ ଓ ବିଭ୍ରାନ୍ତି ମାତ୍ର । ଯଥାଯଥ ଭାବରେ କହିବାକୁ ଗଲେ, ଏହାର କାରଣ ଏହି ଯେ ହୃଦୟ ଓ ମନ ଏକ ଜିନିଷ ନୁହେଁ ଏବଂ ମନକୁ ଉପଦେଶ ଦେଲେ ଯେ ତାହା ହୃଦୟର ବିକାଶ ଘଟାଇବ, ଏଥିରେ କୌଣସି ନିଶ୍ଚିତତା ନାହିଁ । ଏହା ଯେ ଆଦୌ ଫଳପ୍ରଦ ନୁହେଁ— ଏପରି କହିବା ମଧ୍ୟ ଭୁଲ୍ ହେବ । ଏହା ଚିନ୍ତାର କେତେକ ବୀଜ ଅନ୍ତଃକରଣ ମଧ୍ୟକୁ ନିକ୍ଷେପ କରେ ଏବଂ ଏହି ଚିନ୍ତାସମୂହ ଯଦି ଅଭ୍ୟାସଗତ ହୁଏ ତେବେ ସେସବୁ ଦ୍ୱାରା ଆଚରଣ ପ୍ରଭାବିତ ହୋଇଥାଏ । କିନ୍ତୁ ନୀତିମୂଳକ ପାଠ୍ୟପୁସ୍ତକର ଶିକ୍ଷାଦାନରେ ବିପଦ ଏହି ଯେ ଅତି ଉଚ୍ଚକୋଟୀର ଚିନ୍ତାକୁ ସେସବୁ ଯାନ୍ତ୍ରିକ ଏବଂ ଅପ୍ରାକୃତିକ କରି ପକାନ୍ତି ଏବଂ ଯାହାକିଛି ଯାନ୍ତ୍ରିକ ଏବଂ ଅପ୍ରାକୃତିକ ତାହା କୌଣସି ମଙ୍ଗଳସାଧନ ନିମିତ୍ତ ଅକାର୍ଯ୍ୟକାରୀ ।

ମାନବର ନୈତିକ ପ୍ରକୃତି ସମ୍ପର୍କରେ କହିବାକୁ ଗଲେ ତିନୋଟି ବିଷୟ ହେଉଛି ବିଶେଷ ଗୁରୁତ୍ୱପୂର୍ଣ୍ଣ : ଆବେଗ, ସଂସ୍କାରସକଳ ବା ସଂଗଠିତ ଅଭ୍ୟାସାବଳୀ ଓ ସଂସର୍ଗ ଏବଂ ସ୍ୱଭାବ ବା ପ୍ରକୃତି । ନିଜକୁ ନୈତିକ ତାଲିମ ଦେବା ନିମିତ୍ତ ମାନବର ଏକମାତ୍ର ଉପାୟ ହେଲା – ଯଥାର୍ଥ ଆବେଗ, ମହତ୍ ସଂସର୍ଗ, ଶ୍ରେଷ୍ଠ ମାନସିକ, ଆବେଗମୟ ଓ ଶାରୀରିକ ଅଭ୍ୟାସ ସହ ଅଭ୍ୟସ୍ତ ହୋଇଉଠିବା ଏବଂ କେନ୍ଦ୍ରୀୟ ପ୍ରକୃତିର ମୌଳିକ ପ୍ରବେଗର ଯଥାର୍ଥ କ୍ରିୟାଧାରାକୁ ଅନୁସରଣ କରିବା । ଶିଶୁମାନଙ୍କ ଉପରେ ତୁମେ କେତେକ ଶୃଙ୍ଖଳାକୁ ଜୋରକରି ଲଦି ଦେଇପାର, ନିର୍ଦ୍ଦିଷ୍ଟ ଢାଞ୍ଚାରେ ସେମାନଙ୍କୁ ବେଶ କରାଇ ଦେଇପାର, କୌଣସି ଆକାଙ୍‌କ୍ଷିତ ପଥରେ ଜବରଦସ୍ତି ଚଳାଇପାର, କିନ୍ତୁ ଯେପର୍ଯ୍ୟନ୍ତ ସେମାନଙ୍କର ହୃଦୟ ଓ ପ୍ରକୃତିକୁ ତୁମ ଦିଗରେ ଆକର୍ଷିତ କରାଇ ନ ପାରିଛ, ସେପର୍ଯ୍ୟନ୍ତ ଜୋର୍‌କରି ଲଦିଦିଆଯାଇଥିବା ଏହିସବୁ ନିୟମ ଅନୁଯାୟୀ କରାଯାଉଥିବା କାର୍ଯ୍ୟ ହୋଇଉଠେ ଏକ କପଟପୂର୍ଣ୍ଣ, ହୃଦୟହୀନ, ଗତାନୁଗତିକ ଏବଂ ଅନେକ ସମୟରେ ଏକ ଭୀରୁତାମୂଳକ ଆଦେଶପାଳନ । ଏହାହିଁ ଇଉରୋପରେ ଘଟିଥାଏ, ଏବଂ ବିଦ୍ୟାଳୟରେ ତଥା ଗୃହରେ ଶୃଙ୍ଖଳା-ଭାର ଶିଥିଳ ହୋଇଯିବା ପରେ ପରେ ଏହାର ପରିଣାମ ଠିକ୍ ସେହି ବିଖ୍ୟାତ ଅସ୍ୱାଭାବିକ ବିଷୟ – ବାଲୁଙ୍ଗା ବୁଣିବା ପରି ହୋଇଥାଏ ଏବଂ ସାମାଜିକ କପଟତା ଘଟାଇଥାଏ ଯାହାକି ୟୁରୋପୀୟ ଜୀବନର ଏକ ବିଶିଷ୍ଟ ଅଂଶ । ମନୁଷ୍ୟ ଯାହା ପ୍ରତି ଉଚ୍ଚ ଧାରଣା ପୋଷଣ କରେ ଏବଂ ଯାହାକୁ ସ୍ୱତଃ ଗ୍ରହଣ କରେ, କେବଳ ତାହାକୁହିଁ ତା ଜୀବନର ଅଙ୍ଗୀଭୂତ କରେ, ଅନ୍ୟ ସବୁକିଛି କେବଳ ମୁଖା ବା ବାହ୍ୟ ଆବରଣ ସଦୃଶ ମନେହୁଏ । ସେ ବିଦ୍ୟାଳୟର ନୈତିକ କାର୍ଯ୍ୟକ୍ରମର ଧାରାକୁ ଯେପରି କେବଳ ବାହ୍ୟିକଭାବେ ମାନିଥାଏ, ସାମାଜିକ ଶୃଙ୍ଖଳାକୁ ପାଳନ କରିବାକୁ ଠିକ୍ ସେହିଭଳି ବାହ୍ୟତଃ ସମ୍ମତ ହୋଇଥାଏ, କିନ୍ତୁ ତାହାର ଯଥାର୍ଥ ଜୀବନକୁ, ଆନ୍ତର ବା ଘରୋଇ

ଜୀବନକୁ ନିଜର ରୁଚି ବା ଇନ୍ଦ୍ରିୟତୃପ୍ତି ସକାଶେ ପରିଚାଳିତ କରିବା ନିମିତ୍ତ ସେ ନିଜକୁ ସ୍ୱାଧୀନ ବୋଲି ବିଚାର କରେ । ଅନ୍ୟ ଦିଗରେ ନୈତିକ ତଥା ଧର୍ମ-ଶିକ୍ଷାକୁ ଏକାନ୍ତଭାବେ ଅବହେଳା କରିବା ଦ୍ୱାରା ଜାତି ନଷ୍ଟଭ୍ରଷ୍ଟ ହୋଇଯାଏ । ସ୍ୱଦେଶୀ ଆନ୍ଦୋଳନର ସଂରକ୍ଷଣକାରୀ ପ୍ରଭାବ ପୂର୍ବରୁ ଆମ ଯୁବସମାଜ ମଧ୍ୟରେ ଯେଉଁ ଦୁଷ୍ଟାମିମୂଳକ ନୈତିକ ଭ୍ରଷ୍ଟତା ଦେଖା ଦେଇଥିଲା ତାହା ହେଲା ଇଂରାଜୀ ଶିକ୍ଷା-ବ୍ୟବସ୍ଥାରେ ପ୍ରଦତ୍ତ ଏକାନ୍ତ ମାନସିକ ଉପଦେଶାବଳୀର ପ୍ରତ୍ୟକ୍ଷ ଫଳାଫଳ । କେନ୍ଦ୍ରୀୟ ହିନ୍ଦୁ ମହାବିଦ୍ୟାଳୟ (Central Hindu College) ସଦୃଶ ଅନୁଷ୍ଠାନ-ମାନଙ୍କରେ ଛଦ୍ମ ଭାରତୀୟ ଆବରଣ ମଧ୍ୟରେ ଇଂରାଜୀ ଶିକ୍ଷାବ୍ୟବସ୍ଥା ଗ୍ରହଣର ପରିଣାମ କେବଳ ୟୁରୋପୀୟ ଫଳାଫଳ ଦିଗରେ ନେଇଯିବ । ଏହି ଫଳାଫଳ ସମ୍ବନ୍ଧରେ ଅତି ବେଶିରେ ଯାହା କୁହାଯାଇପାରେ ତାହା ହେଲା– ‘‘ନାହିଁ ମାମୁ ଅପେକ୍ଷା କଣାମାମୁ ଭଲ’’ ।

ମନର ଶିକ୍ଷା ସଦୃଶ ହୃଦୟର ଶିକ୍ଷା ନିମିତ୍ତ ଶ୍ରେଷ୍ଠ ଉପାୟ ହେଲା ଶିଶୁକୁ ତା'ର ନିଜ ପୂର୍ଣ୍ଣତାସାଧନ ସକାଶେ ଯଥାର୍ଥ ରାସ୍ତାରେ ଚାଲିବାକୁ ଛାଡ଼ିଦେବା ଏବଂ ତାହା ଉପରେ କୌଣସି ହସ୍ତକ୍ଷେପ ନ କରି କେବଳ ଜାଗ୍ରତ ଦୃଷ୍ଟି ରଖି, ନାନା ପ୍ରସ୍ତାବ ଦେଇ, ସହାୟତା କରି ତାହା ଅନୁସରଣ କରିବାକୁ ଉତ୍ସାହିତ କରିବା । ଇଂରାଜୀ ଆବାସିକ ବିଦ୍ୟାଳୟଗୁଡ଼ିକରେ ସବୁଠାରୁ ସୁନ୍ଦର ଜିନିଷ ହେଲା ଏହି ଯେ ଉତ୍ତମ ଶିକ୍ଷକ କେବଳ ନୈତିକ ପରିଚାଳକ ବା ଦୃଷ୍ଟାନ୍ତ ଭାବରେ ରହିଥାନ୍ତି ଏବଂ ଛାତ୍ରମାନଙ୍କୁ ସ୍ୱାଧୀନଭାବେ ଛାଡ଼ିଦେଇ ଦେଖନ୍ତି ଯେ ସେମାନଙ୍କୁ ଯେଉଁ ପଥ ନୀରବ ଭାବେ ପ୍ରଦର୍ଶିତ ହୋଇଥାଏ ତାହାକୁ ସେମାନେ କିପରି ଅନୁସରଣ କରି ପରସ୍ପରକୁ ପ୍ରଭାବିତ ତଥା ସହାୟତା ପ୍ରଦାନ କରିଥା'ନ୍ତି । କିନ୍ତୁ ଯେଉଁ ପଦ୍ଧତିର ଅଭ୍ୟାସ କରାଯାଏ ତାହା ଅମାର୍ଜିତ ଏବଂ ଅତ୍ୟଧିକ ବାହ୍ୟ ଶୃଙ୍ଖଳା-ଭାରରେ ବିକୃତ ହୋଇଥାଏ ଏବଂ ଏହି କାରଣରୁ

ଛାତ୍ରମାନେ କେବଳ ଭୟ ଯୋଗୁଁ ସାମାନ୍ୟ ଆନ୍ତରିକ ସହାୟତା ପ୍ରଦର୍ଶନ ବ୍ୟତୀତ ସେଥିପ୍ରତି କୌଣସି ସମ୍ମାନ ଦେଖାଇ ନ ଥା'ନ୍ତି । ତଦ୍ଵାରା ଯେଉଁ ସାମାନ୍ୟ ଉପକାର ହୁଏ ତଦପେକ୍ଷା ବେଶୀ କ୍ଷତି ହେବାର ଦେଖାଯାଏ । ପ୍ରାଚୀନ ଭାରତୀୟ ଗୁରୁଗୃହ-ଶିକ୍ଷାର ବ୍ୟବସ୍ଥାରେ ଗୁରୁ ତାଙ୍କର ଜ୍ଞାନ ଓ ଶୁଚିତା ସହ ଶିଷ୍ୟକୁ ଆଦେଶ ଦେଇଥାନ୍ତି ଏବଂ ଶିଷ୍ୟ ତାହାର ଅନ୍ତର୍ନିହିତ ଆଜ୍ଞାନୁବର୍ତ୍ତିତା, ପୂର୍ଣ୍ଣ ଶ୍ରଦ୍ଧା, ଭକ୍ତିପୂର୍ଣ୍ଣ ଅନୁସରଣ ଦ୍ଵାରା ତାହାକୁ ପାଳନ କରିଥାଏ । ତାହା ଏକ ଅତି ଉତ୍କୃଷ୍ଟ ଧରଣର ନୈତିକ ଶୃଙ୍ଖଳାର ପଦ୍ଧତି । ବର୍ତ୍ତମାନ ସେହି ପ୍ରାଚୀନ ବ୍ୟବସ୍ଥାର ପୁନଃପ୍ରତିଷ୍ଠା କରିବା ଅସମ୍ଭବ । କିନ୍ତୁ ଅଧୁନା ଇଉରୋପୀୟ ବ୍ୟବସ୍ଥାରେ ସାଧାରଣତଃ ଯେଉଁଠି ଶିକ୍ଷକମାନେ ହେଉଛନ୍ତି କେବଳ ବେତନଭୋଗୀ ଶିକ୍ଷାଦାତା ବା ହିତକାରୀ ଶାନ୍ତିରକ୍ଷକ (police-man) – ସେମାନଙ୍କ ସ୍ଥାନରେ ଜ୍ଞାନୀ, ବନ୍ଧୁ, ପଥପ୍ରଦର୍ଶକ ଏବଂ ସହାୟକ ଶିକ୍ଷକମାନଙ୍କର ବ୍ୟବସ୍ଥା କରିବା ଅସମ୍ଭବ ନୁହେଁ ।

ନୈତିକ ତାଲିମର ପ୍ରଥମ ନିୟମ ହେଲା ସୂଚନା ଦେବା (suggest) ଏବଂ ଆମନ୍ତ୍ରଣ କରିବା (invite) କିନ୍ତୁ ଆଦେଶ ଦେବା (command) କିଂବା ଜୋର କରି ଲଦିଦେବା (impose) ନୁହେଁ । ଇଙ୍ଗିତ ଦେବାର ଶ୍ରେଷ୍ଠ ପଦ୍ଧତି ହେଲା ବ୍ୟକ୍ତିଗତ ଦୃଷ୍ଟାନ୍ତ, ପ୍ରତ୍ୟହ କଥୋପକଥନ ଏବଂ ଦୈନନ୍ଦିନ ପୁସ୍ତକପଠନ । ଏହିସବୁ ପୁସ୍ତକରେ ଥିବା ଉଚିତ : ଅଳ୍ପବୟସ୍କ ଛାତ୍ରମାନଙ୍କ ପାଇଁ ଅତୀତରେ ପ୍ରଦର୍ଶିତ ମହାନ୍ ଦୃଷ୍ଟାନ୍ତସବୁ, କୌଣସି ନୈତିକ ପାଠ୍ୟବସ୍ତୁ ରୂପେ ନୁହେଁ କିନ୍ତୁ ମାନବମନର ବିଶେଷ ଆକର୍ଷଣୀୟ ବସ୍ତୁରୂପେ । ଏବଂ ବୟସ୍କ ଛାତ୍ରମାନଙ୍କ ପାଇଁ ଏହିସବୁ ପୁସ୍ତକରେ ରହିବା ଉଚିତ : ମହାତ୍ମାମାନଙ୍କର ଉଚ୍ଚ ଚିନ୍ତାଧାରା, ସାହିତ୍ୟର ସେହିସବୁ ଅଂଶ ଯାହା ଉଚ୍ଚତମ ଆବେଗକୁ ଉଦ୍ଦୀପିତ କରେ ଏବଂ ଉଚ୍ଚତମ ଆଦର୍ଶ ଓ ଅଭୀପ୍‌ସାକୁ ତତ୍ପର କରାଏ, ଇତିହାସ ଓ ଜୀବନୀର ବିବରଣୀ

ଯାହାକି ସେହିସବୁ ମହାନ୍ ଚିନ୍ତା, ମହତ୍ ଆବେଗ ଏବଂ ଅଭୀପ୍‌ସିତ ଆଦର୍ଶର ଜୀବନ୍ତ ଦୃଷ୍ଟାନ୍ତ ରୂପେ କାର୍ଯ୍ୟ କରିଥାଏ । ଏହା ଏକ ପ୍ରକାର ଉତ୍ତମ ସାଥୀ, ସତ୍‌ସଙ୍ଗ, ଯାହାକି ନୀତିପୂର୍ଣ୍ଣ ଧର୍ମୋପଦେଶ ତ୍ୟାଗ କରା ହୋଇଥିବା ପର୍ଯ୍ୟନ୍ତ କ୍ୱଚିତ୍ ଫଳହୀନ ହୋଇଥାଏ ଏବଂ ସର୍ବୋତ୍ତମଭାବେ ଫଳପ୍ରସୂ ହୋଇଥାଏ ଯଦି ଛାତ୍ରମାନଙ୍କ ସମ୍ମୁଖରେ ରଖାଯାଉଥିବା ମହାନ୍ ଆଦର୍ଶସବୁକୁ ଶିକ୍ଷକ ତାଙ୍କ ବ୍ୟକ୍ତିଗତ ଜୀବନରେ ରୂପାୟିତ କରିଥା'ନ୍ତି । ଯାହା ହେଲେ ବି, ଏହି ଆଦର୍ଶ କଦାପି ପୂର୍ଣ୍ଣମାତ୍ରାରେ ପ୍ରଭାବଶାଳୀ ହୋଇପାରିବ ନାହିଁ ଯେପର୍ଯ୍ୟନ୍ତ ତରୁଣଜୀବନର ସୀମିତ ପରିସର ମଧ୍ୟରେ ଯେଉଁସବୁ ନୈତିକ ଆବେଗ ତା' ମଧ୍ୟରୁ ଉତ୍‌ଥିତ ହୁଏ ସେସବୁକୁ କାର୍ଯ୍ୟତଃ ରୂପାୟିତ ହେବାର ସୁଯୋଗ ଦିଆ ନ ଯାଇଛି । ବ୍ରାହ୍ମଣର ଜ୍ଞାନତୃଷ୍ଣା, ଆତ୍ମୋତ୍ସର୍ଗ, ପବିତ୍ରତା ଓ ତ୍ୟାଗଭାବ; କ୍ଷତ୍ରିୟର ସାହସ, ଉଦ୍ଦୀପନା, ସମ୍ମାନ, ମହାନତା, ବୀରତ୍ୱ ଓ ସ୍ୱଦେଶପ୍ରେମ; ବୈଶ୍ୟର ପରୋପକାରିତା, ଦକ୍ଷତା, ଅଧ୍ୟବସାୟ, ଉଦାର ଉଦ୍ୟୋଗ ଏବଂ ବିଶେଷ ମୁକ୍ତହସ୍ତତା; ଶୂଦ୍ରର ଆତ୍ମବିଲୋପ ଓ ପ୍ରେମମୟ ସେବା – ଏହିସବୁ ହେଲା ଆର୍ଯ୍ୟଗୁଣ । ସମଗ୍ର ରାଷ୍ଟ୍ରରେ ତରୁଣମାନଙ୍କ ମଧ୍ୟରେ ଆମ୍ଭେମାନେ ଚାହୁଁଥିବା ନୈତିକ ଧୈର୍ଯ୍ୟ ଗଠନ କରିବାରେ ଏହିସବୁ ବିଶେଷ ସହାୟକ । କିନ୍ତୁ ଏହିସବୁ ଗୁଣ ଆମ୍ଭେମାନେ କିପରି ଲାଭ କରିବା ଯଦି ଆର୍ଯ୍ୟ ଐତିହ୍ୟ ଅନୁସାରେ ତରୁଣମାନେ ନିଜକୁ ତାଲିମ କରିବା ସକାଶେ, ଏବଂ ଯେଉଁ ଉପାଦାନସବୁକୁ ନେଇ ସେମାନଙ୍କର ବୟଃପ୍ରାପ୍ତ ଜୀବନ ସଂଗଠିତ ହେବ ସେସବୁ ସହିତ ଶିଶୁ ଅବସ୍ଥା ଓ ବାଳକ ଅବସ୍ଥାରେ ଅଭ୍ୟସ୍ତ ଓ ସୁପରିଚିତ ହେବା ସକାଶେ ଆମ୍ଭେମାନେ ସେମାନଙ୍କୁ ସୁଯୋଗ ନ ଦେଉ ?

ତେଣୁ ପ୍ରତ୍ୟେକ ବାଳକକୁ, ତାହାର ସ୍ୱଭାବରେ ଯାହାକିଛି ଶ୍ରେଷ୍ଠ ଗୁଣ ରହିଛି, ସେସବୁର ବିକାଶ ନିମିତ୍ତ ବ୍ୟାବହାରିକ ସୁଯୋଗ ତଥା ବୌଦ୍ଧିକ ଉତ୍ସାହ ପ୍ରଦାନ କରିବା ଆବଶ୍ୟକ । ଯଦି ତାହାର ଶାରୀରିକ

ବା ମାନସିକ କୌଣସି ଦୁର୍ଗୁଣ, ବଦଭ୍ୟାସ ଓ କୁସଂସ୍କାର ରହିଛି, ତେବେ ତାହାକୁ ଅପରାଧୀ ମନେକରି ତାହା ପ୍ରତି କଠୋର ବ୍ୟବହାର କରାଯିବା ଉଚିତ ନୁହେଁ ବରଂ ରାଜଯୋଗର ପଦ୍ଧତି ସଂଯମ, ପ୍ରତ୍ୟାଖ୍ୟାନ (rejection) ଓ ଅଭ୍ୟାସ ପରିବର୍ତ୍ତନ (substitution) ପ୍ରଣାଳୀ ଦ୍ୱାରା ସେସବୁକୁ ଦୂର କରିବା ଲାଗି ତାକୁ ଉତ୍ସାହିତ କରିବା ଉଚିତ । ସେହିସବୁ ଦୁର୍ଗୁଣକୁ କୌଣସି ପାପ ବା ଅପରାଧ ଭାବରେ ନୁହେଁ, କିନ୍ତୁ କୌଣସି ଉପଶମ୍ୟ ରୋଗର ଲକ୍ଷଣ ଭାବେ, ସଂକଳ୍ପ ସହ ଦୃଢ଼ ଓ ନିରନ୍ତର ପ୍ରଚେଷ୍ଟା ଦ୍ୱାରା ପରିବର୍ତ୍ତନୀୟ ବୋଲି ଭାବିବା ସକାଶେ ତାହାକୁ ଉତ୍ସାହିତ କରାଯିବା ଉଚିତ । ଯେତେବେଳେ ମନରେ ମିଥ୍ୟାଭାବ ପ୍ରବେଶ କରିବ ସେତେବେଳେ ତାହାକୁ ତ୍ୟାଗ କରି ତାହା ସ୍ଥାନରେ ସତ୍ୟକୁ, ଭୟ ସ୍ଥାନରେ ସାହସକୁ, ସ୍ୱାର୍ଥପରତା ସ୍ଥାନରେ ଆତ୍ମୋତ୍ସର୍ଗ ଓ ତ୍ୟାଗକୁ, ବିଦ୍ୱେଷ ସ୍ଥାନରେ ପ୍ରେମକୁ ପୋଷଣ କରିବାକୁ ହେବ । ଅସଂଗଠିତ ନୈତିକ ଗୁଣକୁ ଦୋଷବୋଲି ଭାବି ଯେପରି ବର୍ଜନ କରା ନ ଯାଏ, ସେଥିପାଇଁ ବିଶେଷ ଯତ୍ନ ନେବାକୁ ହେବ । ତରୁଣପ୍ରକୃତିର ଦୁର୍ଦ୍ଦାନ୍ତତା ଓ ଅପରିଣାମଦର୍ଶିତାକୁ ଅତ୍ୟଧିକ ଶକ୍ତି, ମହାନତା ଓ ଉଦାରତାର ଉଚ୍ଛଳନ ବୋଲି ବୁଝିବାକୁ ହେବ । ସେଗୁଡ଼ିକୁ ବିଶୁଦ୍ଧ କରି ଗଢ଼ିବାକୁ ହେବ, ହତୋତ୍ସାହିତ କରିବାକୁ ହେବ ନାହିଁ ।

ଏପର୍ଯ୍ୟନ୍ତ ମୁଁ ନୈତିକତା ସମ୍ବନ୍ଧେ କହିଛି, ବର୍ତ୍ତମାନ ଧର୍ମଶିକ୍ଷା ସମ୍ବନ୍ଧେ ପଦେଅଧେ କହିବା ଆବଶ୍ୟକ । ଅତିପ୍ରଚଳିତ ଏକ ଅଦ୍ଭୁତ ଧାରଣା ରହିଛି ଯେ କେବଳ ଧର୍ମର ଉପଦେଶବାକ୍ୟ ଶିକ୍ଷାଦେବା ଦ୍ୱାରା ଶିଶୁମାନେ ଧର୍ମପରାୟଣ ଓ ନୀତିବାଦୀ ହୋଇଉଠିବେ । ଏହା ଏକ ଇଉରୋପୀୟ ଭ୍ରାନ୍ତି, ଏବଂ ଏହାର ଅଭ୍ୟାସ ହୁଏତ କୌଣସି ଏକ ଧର୍ମମତ ବା ତାହାର ଯାନ୍ତ୍ରିକ ଅନୁମୋଦନ ଦିଗରେ ନେଇଯାଏ ଯାହାର କୌଣସି ଆନ୍ତର ପ୍ରଭାବ ପଡ଼ିପାରେ ନାହିଁ ଏବଂ ଅତି ସାମାନ୍ୟ ବାହ୍ୟ ପ୍ରଭାବ ପଡ଼ିଥାଏ, ଅଥବା ଏହା ତିଆରି କରେ ଧର୍ମୋନ୍ମାଦ, ଅନ୍ଧ-ଅନୁଗାମୀ, ଆଚାରସର୍ବସ୍ୱ ବା

କପଟାଚାରୀ ବିରାଡ଼ିବୈଷ୍ଣବ । ଧର୍ମକୁ ଜୀବନରେ ରୂପାୟିତ କରିବାକୁ ହେବ, କେବଳ ଧର୍ମମତ ଭାବେ ଶିକ୍ଷା କରିବାକୁ ହେବ ନାହିଁ । ବଙ୍ଗଳାର ତଥାକଥିତ ଜାତୀୟ ଶିକ୍ଷାରେ, ଧର୍ମବିଶ୍ୱାସର ଶିକ୍ଷାକୁ ବାଧ୍ୟବାଧକତା କରିବା କିନ୍ତୁ କୌଣସି ଅନୁଷ୍ଠାନ ବା ଧର୍ମଗତ କ୍ରିୟାକଳାପକୁ ଜୀବନରେ ଅଭ୍ୟାସ କରିବା ନିମିତ୍ତ ନିଷେଧ କରିବା ମଧ୍ୟରେ ଯେଉଁ ଅଦ୍ଭୁତ ମିଳାମିଶା ହୋଇଛି ତାହା ହେଲା ଅଜ୍ଞାନଜନିତ ବିଶୃଙ୍ଖଳାର ଏକ ଉଦାହରଣ ଯାହାକି ବିଷୟବସ୍ତୁ ଉପରୁ ଜନସାଧାରଣଙ୍କର ଚିତ୍ତବିକ୍ଷେପ ଘଟାଇଥାଏ । ପ୍ରକାଶ୍ୟରେ ହେଉ ବା ଗୋପନରେ ହେଉ, ଏହି ନିଷେଧ ହେଲା ଧର୍ମନିରପେକ୍ଷତାକୁ ଶାନ୍ତ କରିବାର ଏକ ଉପାୟ ମାତ୍ର । କୌଣସି ଧର୍ମ-ଶିକ୍ଷାକୁ ଯଦି ଜୀବନରେ ଅଭ୍ୟାସ କରା ନ ଯାଏ ତେବେ ତାହା ମୂଲ୍ୟହୀନ ହୋଇପଡ଼େ । ବିଭିନ୍ନ ପ୍ରକାର ସାଧନାର ଅଭ୍ୟାସ, ଆଧ୍ୟାତ୍ମିକ ଆତ୍ମ-ତାଲିମ ଏବଂ କ୍ରିୟାକଳାପହିଁ ଧର୍ମ-ଜୀବନର ପ୍ରସ୍ତୁତି ନିମିତ୍ତ ଏକମାତ୍ର ଫଳପ୍ରଦ ବିଷୟ । ପ୍ରାର୍ଥନା, ଶ୍ରଦ୍ଧା-ଭକ୍ତି, ଉତ୍ସବ ପ୍ରଭୃତିର ଅନୁଷ୍ଠାନକୁ ଆବଶ୍ୟକ ପ୍ରସ୍ତୁତିରୂପେ ଅନେକେ ଚାହିଁଥାନ୍ତି । ଏହା ଯଦିଓ ଧର୍ମଜୀବନର ଶେଷ ଜିନିଷ ନୁହେଁ ତଥାପି ଆଧ୍ୟାତ୍ମିକ ପ୍ରଗତି ନିମିତ୍ତ ଏହା ବିଶେଷ ସହାୟକ ହୋଇଥାଏ । ଯଦି ଏହାକୁ ବନ୍ଦ କରି ଦିଆଯାଏ ତେବେ ଏହା ସ୍ଥାନରେ ଧ୍ୟାନ, ଭକ୍ତି କିଂବା ଧର୍ମମୂଳକ କର୍ତ୍ତବ୍ୟର ଅନ୍ୟ କୌଣସି ରୂପକୁ ଗ୍ରହଣ କରିବା ଉଚିତ । ନଚେତ୍ ଧର୍ମଶିକ୍ଷାର କୌଣସି ମୂଲ୍ୟ ରହିବ ନାହିଁ ଏବଂ ଏହି ଶିକ୍ଷା ନ ଦେବାହିଁ ପ୍ରାୟ ଶ୍ରେୟସ୍କର ହେବ ।

କିନ୍ତୁ ଧର୍ମର ଯେକୌଣସି ରୂପରେ ସ୍ପଷ୍ଟ ଶିକ୍ଷା ପ୍ରଦାନ କରାହେଉ ବା ନ ହେଉ, ଧର୍ମର ସାରମର୍ମ : ଭଗବାନଙ୍କ ନିମିତ୍ତ, ମାନବଜାତି ନିମିତ୍ତ, ଦେଶ ନିମିତ୍ତ, ଅପରଙ୍କ ନିମିତ୍ତ ତଥା ସେମାନଙ୍କ ମଧ୍ୟରେ ନିଜ ନିମିତ୍ତ ଜୀବନଯାପନ କରିବା ପ୍ରତ୍ୟେକ ଜାତୀୟ ବିଦ୍ୟାଳୟରେ ଆଦର୍ଶ ରୂପେ ଗୃହୀତ ହେବା ଆବଶ୍ୟକ । ହିନ୍ଦୁଧର୍ମର ଏହି ଆଭିମୁଖ୍ୟ ଆମର ସମସ୍ତ

ବିଦ୍ୟାଳୟରେ ଅନୁପ୍ରବେଶ କରିବାହିଁ – ଯାହାକି ଭାରତୀୟ ବିଷୟବସ୍ତୁ-ଗୁଡ଼ିକର ଭାରତୀୟ ପଦ୍ଧତିର ବ୍ୟବହାର କିଂବା ହିନ୍ଦୁ-ବିଶ୍ୱାସ ବା ହିନ୍ଦୁ-ଶାସ୍ତ୍ରରେ ଉପଦେଶ ଅପେକ୍ଷା ଅଧିକ ପ୍ରଭାବଶାଳୀ – ଅନ୍ୟ ବିଦ୍ୟାଳୟ-ମାନଙ୍କଠାରୁ ଭିନ୍ନ ବୋଲାଉଥିବା ଆମର ବିଦ୍ୟାଳୟମାନଙ୍କରେ ଜାତୀୟତାର ମୂଳତତ୍ତ୍ୱ ହେବା ଉଚିତ ।

(୪)

## ଏକକାଳୀନ ଏବଂ ଆନୁକ୍ରମିକ ଶିକ୍ଷାଦାନ

ଆଧୁନିକ ତାଲିମର ଅତି ବିଶେଷ ମନ୍ତବ୍ୟର ବିଷୟ ଯାହାକି ଭାରତରେ ପରୋକ୍ଷ ବା ବ୍ୟତିରେକୀ ପ୍ରମାଣରୂପେ (reductio absurdum) ଅନୁମୋଦିତ, ତାହା ହେଲା ବିଭିନ୍ନ ବିଷୟର କିଛି କିଛି ଅଂଶ ଶିକ୍ଷାଦେବାର (teaching by snippets) ଅଭ୍ୟାସ । ଅନ୍ୟ ବହୁ ବିଷୟ ସହିତ ଗୋଟିଏ ବିଷୟର ଥରକେ ଅଳ୍ପ ମାତ୍ରାରେ ଶିକ୍ଷା ଦିଆଯାଏ, ତାହାର ଫଳସ୍ୱରୂପ ଦେଖାଯାଏ ଯେ ଯେଉଁ ବିଷୟ ଗୋଟିଏ ବର୍ଷରେ ଖୁବ୍ ଭଲଭାବେ ଶିକ୍ଷା କରାଯାଇ ପାରନ୍ତା ତାହାକୁ ସାତ ବର୍ଷରେ ଅତି ଖରାପ ଭାବରେ ଶିକ୍ଷା କରାଯାଏ ଏବଂ ଖଣ୍ଡିତ ଓ ଅପୂର୍ଣ୍ଣ ଜ୍ଞାନ ଦ୍ୱାରା ପରିବେଷିତ ହୋଇ ଛାତ୍ର ଅପ୍ରସ୍ତୁତ ଭାବେ ଶିକ୍ଷା ସମାପ୍ତ କରିଥାଏ, ମାନବ ଜ୍ଞାନର କୌଣସି ବିଶିଷ୍ଟ ବିଭାଗରେ ଦକ୍ଷ ହୋଇପାରେ ନାହିଁ । ଜାତୀୟ ପରିଷଦ ଦ୍ୱାରା ଗୃହୀତ ଶିକ୍ଷା-ବ୍ୟବସ୍ଥା ହେଲା ଏକ ଉଭୟଚର ଦ୍ୱିପ୍ରକୃତିବିଶିଷ୍ଟ ପ୍ରାଣୀ ସଦୃଶ । ଏହି ପଦ୍ଧତିରେ ଶିକ୍ଷାଦାନର ପ୍ରାରମ୍ଭରେ ଓ ମଝିରେ ଏକ ସଙ୍ଗେ ବିଭିନ୍ନ ବିଷୟର କିଛି କିଛି ଅଂଶ ଶିକ୍ଷାଦେବାର ଅଭ୍ୟାସକୁ ଅଭିବୃଦ୍ଧ କରିବାର ଏବଂ ଶେଷରେ ହଠାତ୍ ଏହାକୁ ପରିବର୍ତ୍ତିତ କରି ଉଚ୍ଚଧରଣର ବିଶେଷଜ୍ଞତା ପ୍ରଦାନ କରିବାର ପ୍ରୟାସ କରାଯାଏ । ଏହା ଠିକ୍ କୌଣସି ତ୍ରିଭୁଜର ଶୀର୍ଷବିନ୍ଦୁକୁ ଭୂମିରେ ରଖି ତାହା ଛିଡ଼ାହୋଇ ରହିବ ବୋଲି ଆଶା କରିବା ସଦୃଶ ଏକ ବିଷୟ ।

ଶିକ୍ଷାଦାନର ପ୍ରାଚୀନ ବ୍ୟବସ୍ଥା ଥିଲା ଏକ ସଙ୍ଗେ ଗୋଟିଏ ବା ଦୁଇଟି ବିଷୟରେ ଉତ୍ତମ ଓ ପୁଙ୍ଖାନୁପୁଙ୍ଖ ଜ୍ଞାନଦାନ କରିବା ଏବଂ ତପ୍ରେ

ଅନ୍ୟ ବିଷୟ ଦିଗରେ ଅଗ୍ରସର ହେବା ଯାହାକି ନିଶ୍ଚିତରୂପେ ଆଧୁନିକ ବ୍ୟବସ୍ଥା ଅପେକ୍ଷା ଏକ ଅଧିକ ଯୁକ୍ତିସଙ୍ଗତ ବ୍ୟବସ୍ଥା ଥିଲା । ଯଦିଓ ଏହା ଏକସଙ୍ଗେ ବିଭିନ୍ନ ବିଷୟରେ ଜ୍ଞାନଦାନ କରିପାରୁ ନ ଥିଲା ତଥାପି ଏହା ଏକ ଗଭୀରତର, ମହତ୍ତର ଏବଂ ବାସ୍ତବତର ସଂସ୍କୃତି ଥିଲା । ସାଧାରଣ ଆଧୁନିକ ମନର ଅଗଭୀରତା, ଅପ୍ରାସଙ୍ଗିକ ଲଘୁତା ଏବଂ ଚପଳ ପରିବର୍ତ୍ତନଶୀଳତାର ଆଧିକ୍ୟର କାରଣ ହେଲା ଏକସଙ୍ଗେ ବିଭିନ୍ନ ବିଷୟରୁ କିଛି କିଛି ଅଂଶ ଶିକ୍ଷାଦେବାର ଦୋଷଯୁକ୍ତ ପଦ୍ଧତି । ପୁରାତନ ବ୍ୟବସ୍ଥାର ବିରୋଧରେ ନିଶ୍ଚିତରୂପେ ଯେଉଁ ଗୋଟିଏ ଦୋଷ ଆରୋପ କରାଯାଇ-ପାରେ ତାହା ହେଲା ଏହି ଯେ ବହୁ ଆଗରୁ ଶିକ୍ଷା କରାଯାଉଥିବା ବିଷୟ-ବସ୍ତୁ, ପରବର୍ତ୍ତୀ ସ୍ତରର ଅଧ୍ୟୟନବେଳେ ମନରୁ ବିସ୍ମୃତ ହୋଇଯାଇପାରେ । କିନ୍ତୁ ପ୍ରାଚୀନ ଶିକ୍ଷାବିତ୍‌ମାନେ ସ୍ମୃତିଶକ୍ତିର ଅଭିବୃଦ୍ଧି ନିମିତ୍ତ ଯେଉଁ ଚମତ୍କାର ତାଲିମ ଦେଉଥିଲେ ତାହା ଏହି ଦୋଷକୁ ଦୂରୀଭୂତ କରିପାରୁ ଥିଲା । ଭବିଷ୍ୟତର ଶିକ୍ଷାରେ ଆମେ ଆମକୁ ପ୍ରାଚୀନ କିଂବା ଅଧୁନାତନ ବ୍ୟବସ୍ଥାରେ ଆବଦ୍ଧ କରି ରଖିବୁ ନାହିଁ, କିନ୍ତୁ ଜ୍ଞାନାର୍ଜନ ନିମିତ୍ତ କେବଳ ପୂର୍ଣ୍ଣତମ ତଥା ଦ୍ରୁତତମ ଉପାୟ ମନୋନୟନ କରିବୁ ।

ଆଧୁନିକ ଶିକ୍ଷାଦାନ-ବ୍ୟବସ୍ଥାର ସପକ୍ଷରେ ଯୁକ୍ତିରୂପେ କୁହାଯାଇଛି ଯେ ଶିଶୁମାନଙ୍କର ମନୋଯୋଗ ସହଜରେ କ୍ଳାନ୍ତ ହୋଇପଡ଼େ ଏବଂ ଗୋଟିଏ ନିର୍ଦ୍ଦିଷ୍ଟ ବିଷୟର ଦୀର୍ଘ ଉପଯୋଗ ଫଳରେ ଯେଉଁ ଚାପ ପଡ଼ିବା କଥା ତାହାଦ୍ୱାରା ଶିଶୁମନ ତହିଁରେ ପୀଡ଼ିତ ହୁଏ ନାହିଁ । ବାରଂବାର ବିଷୟବସ୍ତୁର ପରିବର୍ତ୍ତନ ଦ୍ୱାରା ମନକୁ ବିଶ୍ରାମ ମିଳେ । ଏଠାରେ ସ୍ୱଭାବତଃ ପ୍ରଶ୍ନ ଉଠେ : ଆଧୁନିକ ଯୁଗର ଶିଶୁମାନେ ପ୍ରାଚୀନ କାଳର ଶିଶୁମାନଙ୍କ ଅପେକ୍ଷା କ'ଣ ଏତେ ଭିନ୍ନ, ଏବଂ ଯଦି ତାହାହିଁ ହୁଏ ତେବେ ସେମାନଙ୍କୁ ଦୀର୍ଘ ସମୟ ସକାଶେ ମନୋବିବେଶ କରିବା ନିମିତ୍ତ ନିରୁତ୍ସାହିତ କରି ରଖିବା ଦ୍ୱାରା ସେମାନେ ଏପରି ହୋଇ ନାହାନ୍ତି କି ? ଏକଥା ଠିକ୍ ଯେ

ଏକ ଅତି ଛୋଟ ଶିଶୁ ବାସ୍ତବରେ ନିଜକୁ କୌଣସି ବିଷୟରେ ଦୀର୍ଘ ସମୟ ସକାଶେ ନିବିଷ୍ଟ କରି ପାରିବ ନାହିଁ, କିନ୍ତୁ ଏକଥା ମଧ୍ୟ ବୁଝିବାକୁ ହେବ ଯେ କୌଣସି ଅତି ଛୋଟ ଶିଶୁ କୌଣସି ପ୍ରକାର ବିଦ୍ୟାଳୟ-ଶିକ୍ଷାଦାନ ନିମିତ୍ତ ଅନୁପଯୁକ୍ତ । କୌଣସି ପ୍ରକାର ବିଧିବଦ୍ଧ ଅଧ୍ୟୟନ ନିମିତ୍ତ ଶିଶୁମାନଙ୍କର ବୟସ ଅନ୍ତତଃ ସାତ ବା ଆଠ ବର୍ଷ ହେବା ଉଚିତ । ଏବଂ ଏହି ବୟସରେ ଶିଶୁର ଯଦି ବିଶେଷ ଆଗ୍ରହ ଥାଏ ତେବେ ସେ ଯଥେଷ୍ଟ ମାତ୍ରାରେ ଏକାଗ୍ର ହେବାକୁ ସମର୍ଥ ହେବ । ସର୍ବୋପରି ଆଗ୍ରହହିଁ ଏକାଗ୍ରତାର ଭିତ୍ତି । ଆମେ ଶିଶୁର ପାଠ୍ୟ ବିଷୟକୁ ଅତି ଆଗ୍ରହଶୂନ୍ୟ ଏବଂ ବିତୃଷ୍ଣାଜନକ କରିପକାଉ, ଶିକ୍ଷାଦାନର ଭିତ୍ତି ହୋଇଉଠେ କଠୋର ଓ ବାଧ୍ୟତାମୂଳକ, ତା'ପରେ ଆମେ ଶିଶୁର ଅସ୍ଥିର ଅମନୋଯୋଗିତା ସମ୍ବନ୍ଧରେ ଅଭିଯୋଗ କରୁ ! ପ୍ରଚଳିତ ଅସ୍ୱାଭାବିକ ବ୍ୟବସ୍ଥା ସ୍ଥାନରେ ଶିଶୁକୁ ଏକ ସ୍ୱାଭାବିକ ସ୍ୱୟଂଶିକ୍ଷାପଦ୍ଧତିରେ ଶିକ୍ଷା କରିବାର ସୁଯୋଗ ଦିଆଗଲେ ଶିଶୁର ଅକ୍ଷମତା ସମ୍ବନ୍ଧରେ ଅଭିଯୋଗ କରିବାର ଆଉ କୌଣସି ଅବସର ରହିବ ନାହିଁ । ଏକ ଶିଶୁ, ଠିକ୍ ବୟସ୍କମାନବ ପରି, ଯଦି କୌଣସି ବିଷୟରେ ଆଗ୍ରହୀ ହୋଇଉଠେ ତେବେ ସେହି ବିଷୟକୁ ଅସଂପୂର୍ଣ୍ଣ ରୂପେ ଛାଡ଼ି ନ ଦେଇ ସଂପୂର୍ଣ୍ଣ କରିବା ପର୍ଯ୍ୟନ୍ତ ତହିଁରେ ଲାଗିରହେ । ଶିଶୁକୁ ସୋପାନ ପରେ ସୋପାନ ଆଗେଇ ନେବା, ଅଧ୍ୟୟନର ଯାହାକିଛି ତା'ର ସମ୍ମୁଖକୁ ଆସେ ତାହାକୁ ସଂପୂର୍ଣ୍ଣରୂପେ ଆୟତ୍ତାଧୀନ କରିବା ପର୍ଯ୍ୟନ୍ତ ଆଗ୍ରହୀ ଏବଂ ଅଭିନିବିଷ୍ଟ କରାଇବାହିଁ ଶିକ୍ଷାଦାନର ଯଥାର୍ଥ କୌଶଳ ।

ଶିକ୍ଷକର ସର୍ବପ୍ରଥମ ମନୋଯୋଗ ଶିକ୍ଷାର ମାଧ୍ୟମ ଓ ଉପକରଣ ଉପରେ ଦିଆଯିବା ଆବଶ୍ୟକ ଏବଂ ଯେପର୍ଯ୍ୟନ୍ତ ଏଗୁଡ଼ିକ ପୂର୍ଣ୍ଣାଙ୍ଗ ନ ହୋଇଛି ସେପର୍ଯ୍ୟନ୍ତ ନିୟମିତ ଉପଦେଶ ଦେଇ ବହୁବିଧ ବିଷୟର ଶିକ୍ଷାଦାନ କରିବା କେବଳ ସମୟ ଓ ଶକ୍ତିର ଅପଚୟ ମାତ୍ର ।

ଯେତେବେଳେ ମାନସିକ ଉପକରଣଗୁଡ଼ିକ କୌଣସି ଏକ ଭାଷାକୁ ସହଜରେ ଓ ଶୀଘ୍ର ଆୟତ୍ତ କରିବାକୁ ବିଶେଷ ଭାବେ ବିକଶିତ ହୁଅନ୍ତି, ସେତେବେଳେହିଁ ତାହାକୁ ଅନ୍ୟାନ୍ୟ ଭାଷା ସମ୍ବନ୍ଧରେ ଧାରଣା ଦେବାର ପ୍ରକୃଷ୍ଟ ସମୟ ଆସିଥାଏ, କିନ୍ତୁ ସେତେବେଳେ ନୁହେଁ, ଯେତେବେଳେ ତାକୁ ଯାହାକିଛି ଶିକ୍ଷା ଦିଆଯାଏ ସେ କେବଳ ଆଂଶିକ ଭାବେ ବୁଝିପାରେ ଏବଂ ବହୁ ପରିଶ୍ରମ କରି ମଧ ଅପୂର୍ଣ୍ଣ ଭାବେ ଆୟତ୍ତ କରିପାରେ । ଅଧିକନ୍ତୁ ଯେ ନିଜର ମାତୃଭାଷାକୁ ଆୟତ୍ତ କରିପାରିଛି ସେ ଅନ୍ୟ ଭାଷାକୁ ଆୟତ୍ତ କରିବାକୁ ଆବଶ୍ୟକ ସୁବିଧା ପାଇଥାଏ । ନିଜ ମାତୃଭାଷାରେ ସନ୍ତୋଷଜନକ ବିକାଶ ନ କରି, ଭାଷାତାତ୍ତ୍ୱିକ ଜ୍ଞାନ ଦ୍ୱାରା ଅନ୍ୟାନ୍ୟ ଭାଷାକୁ ଆୟତ୍ତ କରିବା ଅସମ୍ଭବ । ପର୍ଯ୍ୟବେକ୍ଷଣ, ବିଚାର, ଯୁକ୍ତି ଏବଂ ତୁଳନାର ମନୋବୃତ୍ତି ଯେପର୍ଯ୍ୟନ୍ତ ବିଶେଷଭାବେ ବିକଶିତ ନ ହୋଇଛି ସେପର୍ଯ୍ୟନ୍ତ ବିଜ୍ଞାନର ଅଧୟନରେ ହାତ ଦେବା ଏକ ଅନାବଶ୍ୟକ ଏବଂ ପ୍ରଶଂସାହୀନ ଶ୍ରମ ମାତ୍ର । ଅନ୍ୟାନ୍ୟ ବିଷୟର ଅଧୟନ ମଧ ଠିକ୍ ଏହିପରି ହୋଇଥାଏ ।

ମାତୃଭାଷାହିଁ ଶିକ୍ଷାର ଉପଯୁକ୍ତ ମାଧମ ଏବଂ ସେହି ସକାଶେ ଏହି ମାଧମକୁ ବିଶେଷଭାବେ ଆୟତ୍ତାଧୀନ କରିବା ପାଇଁ ଶିଶୁର ପ୍ରଥମ ଶକ୍ତିକୁ ନିୟନ୍ତ୍ରିତ କରାଯିବା ଉଚିତ । ପ୍ରାୟ ପ୍ରତ୍ୟେକ ଶିଶୁର ରହିଛି କଳ୍ପନା-ଶକ୍ତି, କିଛି କହିବାର ପ୍ରବୃତ୍ତି, ଅଭିନୟ-କ୍ଷମତା, ଭାବ ଓ ଅଭିରୁଚିର ଏକ ସମ୍ପଦ । ଏହିସବୁକୁ ଜାତିର ସାହିତ୍ୟ ଓ ଇତିହାସ ଦିଗରେ ଆଗ୍ରହାନ୍ୱିତ କରାଯିବା ଉଚିତ । ନିର୍ବୋଧ ଏବଂ ଶୁଷ୍କ ବନାନ, ପୁସ୍ତକ-ପଠନ, ନିରାନନ୍ଦ ଓ କୃତଜ୍ଞତାହୀନ କଠିନ କାର୍ଯ୍ୟ ପରିବର୍ତ୍ତେ ଶିଶୁକୁ ତା'ର ସାହିତ୍ୟର ବିଶେଷ ଚିତ୍ତାକର୍ଷକ ଅଂଶ, ତାହାର ଚତୁଃପାର୍ଶ୍ୱରେ ଏବଂ ପଶ୍ଚାତରେ ଥିବା ଜୀବନ-ଚିତ୍ର ସହିତ ଦ୍ରୁତ ଉନ୍ନତିଶୀଳ ସ୍ତର ମଧଦେଇ ପରିଚିତ କରାଇବା ଉଚିତ । ଏବଂ ସେସବୁ ତାହାର ସମ୍ମୁଖରେ ଏପରିଭାବେ ଉପସ୍ଥାପିତ କରାଇବା

ଉଚିତ ଯାହାଫଳରେ ମୁଁ ଶିଶୁର ଯେଉଁସବୁ ଗୁଣ କଥା କହିଛି ସେଗୁଡ଼ିକ ଦ୍ୱାରା ବିଶେଷ ଆଦୃତ ଏବଂ ମର୍ମସ୍ପର୍ଶୀ ହେବ । ଏହି ସମୟରେ ଅନ୍ୟ ସକଳ ଅଧ୍ୟୟନ ମାନସିକ କ୍ରିୟାକଳାପ ଏବଂ ନୈତିକ ଚରିତ୍ରର ପୂର୍ଣ୍ଣତା ନିମିତ୍ତ ନିୟୋଜିତ ହେବା ଉଚିତ । ଏତିକିବେଳେ ଇତିହାସ, ବିଜ୍ଞାନ, ଦର୍ଶନ, କଳା ଇତ୍ୟାଦି ବିଷୟର ଏକ ଭିତ୍ତି ସ୍ଥାପିତ ହେବା ଉଚିତ, କିନ୍ତୁ ଏକ ଜବରଦସ୍ତି ଏବଂ ଆନୁଷ୍ଠାନିକ ଭାବରେ ନୁହେଁ । ପ୍ରତ୍ୟେକ ଶିଶୁ ଚିତ୍ତାକର୍ଷକ କାହାଣୀ ଶୁଣିବାକୁ ଭଲପାଏ, ବୀରତ୍ୱକୁ ସମ୍ମାନ ଦେଖାଏ ଏବଂ ନିଜ ଦେଶକୁ ପ୍ରେମ କରେ । ଏହିସବୁ ଗୁଣ ପ୍ରତି ତା' ମଧ୍ୟରେ ଆକର୍ଷଣ ସୃଷ୍ଟିକରାଅ ଏବଂ ସେହିସବୁ ମାଧ୍ୟମରେ ତାହାର ଅଜାଣତରେ ସେ ଜାତିର ଇତିହାସର ଜୀବନ୍ତ ଏବଂ ମାନବୀୟ ଗୁଣସବୁକୁ ଆୟତ୍ତ କରୁ । ପ୍ରତ୍ୟେକ ଶିଶୁ ଏକ ପ୍ରଶ୍ନ କର୍ତ୍ତା, ଏକ ଅନୁସନ୍ଧାନକାରୀ, ଏକ ବିଶ୍ଳେଷଣକାରୀ ଏବଂ ପୁଙ୍ଖାନୁପୁଙ୍ଖ ପରୀକ୍ଷାକାରୀ । ଏହିସବୁ ଗୁଣ ପ୍ରତି ତାହାର ଦୃଷ୍ଟି ଆକର୍ଷଣ କରାଅ ଓ ତାହାର ଅଜାଣତରେ ସେ ବୈଜ୍ଞାନିକର ଯଥାର୍ଥ ମନୋବୃତ୍ତି ଏବଂ ଆବଶ୍ୟକ ମୌଳିକ ଜ୍ଞାନ ଆହରଣ କରୁ । ପ୍ରତ୍ୟେକ ଶିଶୁର ଏକ ଅତୃପ୍ତ ଜ୍ଞାନଗତ କୌତୂହଳ ରହିଛି ଏବଂ ଦାର୍ଶନିକ ଅନୁସନ୍ଧାନ ପ୍ରତି ରହିଛି ଏକ ପ୍ରବଣତା । ଏହିସବୁର ସଦ୍‌ବ୍ୟବହାର କରି ଜଗତ୍ ଓ ନିଜ ସମ୍ବନ୍ଧରେ ଏକ ଯଥାର୍ଥ ଜ୍ଞାନ ଆହରଣ ନିମିତ୍ତ ଶିଶୁକୁ ଧୀରେ ଧୀରେ ଆକର୍ଷଣ କର । ପ୍ରତ୍ୟେକ ଶିଶୁର ଅନୁକରଣ ତଥା କଳ୍ପନାମୂଳକ ଶକ୍ତିର ଏକ ସ୍ୱାଭାବିକ ପ୍ରତିଭା ରହିଛି । ଶିଶୁ ମଧ୍ୟରେ କଳାକାର ମନୋବୃତ୍ତିର ଏକ ଭିତ୍ତିଗଠନ ନିମିତ୍ତ ଏହି ଗୁଣର ସଦ୍‌ବ୍ୟବହାର କର ।

ବିଶ୍ୱ-ପ୍ରକୃତିକୁ ତାହାର ସ୍ୱାଭାବିକ ପନ୍ଥାରେ କାର୍ଯ୍ୟ କରିବାକୁ ସୁଯୋଗ ଦିଆଗଲେ ତାହା ଆମ୍ଭମାନଙ୍କୁ ଯେଉଁସବୁ ଉପହାର ପ୍ରଦାନ କରିଛି ସେସବୁର ଯଥାର୍ଥ ଉପକାର ଆମ୍ଭେମାନେ ପାଇପାରିବା ।

ମାନବସମାଜ ଶିଶୁଗଣଙ୍କୁ ଶିକ୍ଷାଦାନ କରିବାରେ ପ୍ରକୃତିର ପ୍ରକ୍ରିୟାକୁ ବ୍ୟର୍ଥ ଏବଂ ବାଧାଦାନ କରୁଛି ଏବଂ ଏହା କରିବା ଦ୍ୱାରା ଏହାର ନିଜ ଅଗ୍ରଗତିର ଓ ଦ୍ରୁତତାରେ ପ୍ରତିରୋଧ ଓ ବ୍ୟାଘାତ ସୃଷ୍ଟି କରୁଛି । ସୁଖର କଥା, ବର୍ତ୍ତମାନ ସୁଷ୍ଠତର ଧାରଣାସବୁ ବଳବତ୍ତର ହେବାକୁ ଯାଉଛି । କିନ୍ତୁ ଏପର୍ଯ୍ୟନ୍ତ ଉପାୟ ଖୋଜି ବାହାର କରାଯାଇ ନାହିଁ । ଅତୀତ ତାହାର ସମସ୍ତ ପୂର୍ବସଂସ୍କାର ଓ ଭ୍ରାନ୍ତି ସହ ଆମର ଚତୁର୍ଦ୍ଦିଗରେ ଘୂରିବୁଲୁଛି ଏବଂ ଆମ୍ଭମାନଙ୍କୁ ଛାଡ଼ି ଯିବ ନାହିଁ; ଏହା ଆମ୍ଭମାନଙ୍କ ମୌଳିକ ପ୍ରୟାସ ମଧ୍ୟରେ ପ୍ରବେଶ କରୁଛି ଯଦ୍ଦ୍ୱାରା ସର୍ବଜ୍ଞାନଧାରିଣୀ ଜଗନ୍ମାତାଙ୍କର ପରିଚାଳନା ମଧ୍ୟକୁ ଫେରିଯାଇ ହେବ । ସ୍ୱଷ୍ଟତର ଜ୍ଞାନଗ୍ରହଣ କରି ତାହାକୁ ନିର୍ଭୟରେ ସମୃଦ୍ଧିଲାଭ ଦିଗରେ ପ୍ରୟୋଗ କରିବା ନିମିତ୍ତ ଆମ୍ଭମାନଙ୍କର ସାହସ ଆବଶ୍ୟକ । ବିଭିନ୍ନ ବିଷୟର କିଛି କିଛି ଅଂଶ ଶିକ୍ଷା ଦେବାର (teaching by snippets) ପଦ୍ଧତିକୁ ଅସ୍ୱଷ୍ଟ ସନ୍ତାପର ଅପ୍ରୟୋଜନୀୟ କୋଠରି ମଧ୍ୟକୁ ନିର୍ବାସିତ କରିବାକୁ ହେବ । ସର୍ବପ୍ରଥମ କାର୍ଯ୍ୟ ହେବ ଶିଶୁକୁ ଜୀବନ, କର୍ମ ଓ ଜ୍ଞାନ ଦିଗରେ ଆଗ୍ରହୀ କରାଇବା; ଅତ୍ୟନ୍ତ ପୁଙ୍ଖାନୁପୁଙ୍ଖ ଭାବେ ତାହାର ଜ୍ଞାନାର୍ଜନର ଉପକରଣ-ଗୁଡ଼ିକୁ ବିକଶିତ କରାଇବା, ସେ ଯେଉଁ ଭାଷା ବ୍ୟବହାର କରେ ତହିଁରେ ତାହାକୁ ଦକ୍ଷତା ପ୍ରଦାନ କରିବା । ଏହା ଫଳରେ ପରବର୍ତ୍ତୀ କାଳରେ ସେ ଯେଉଁ ଦ୍ରୁତତାର ସହିତ ଶିକ୍ଷାଲାଭ କରିବ ତାହା ନିୟମିତ ଅଧ୍ୟୟନର ଯେକୌଣସି ପ୍ରକାର ବିଳମ୍ବକୁ ପରିପୂରଣ କରିବ ଏବଂ ଦେଖାଯିବ ଯେ ସେ ବର୍ତ୍ତମାନ ଅଳ୍ପ କେତେକ ବିଷୟକୁ ଖରାପ ଭାବେ ଶିକ୍ଷାକରିବା ସ୍ଥାନରେ ଅନେକ ବିଷୟକୁ ପୁଙ୍ଖାନୁପୁଙ୍ଖତାର ସହ ଭଲ ଭାବରେ ଶିକ୍ଷା କରିପାରିବ ।

(୪)

# ଇନ୍ଦ୍ରିୟସମୂହର ତାଲିମ

ଜ୍ଞାନାର୍ଜନରେ ସହାୟକ ଛ'ଟି ଇନ୍ଦ୍ରିୟ ଅଛନ୍ତି : ଦର୍ଶନେନ୍ଦ୍ରିୟ, ଶ୍ରବଣେନ୍ଦ୍ରିୟ, ଘ୍ରାଣେନ୍ଦ୍ରିୟ, ସ୍ପର୍ଶେନ୍ଦ୍ରିୟ, ରସନେନ୍ଦ୍ରିୟ ଏବଂ ମାନସେନ୍ଦ୍ରିୟ । ଶେଷ ଇନ୍ଦ୍ରିୟ ମନ ବ୍ୟତୀତ ଅନ୍ୟ ଇନ୍ଦ୍ରିୟଗୁଡ଼ିକ ବହିର୍ମୁଖୀ ଏବଂ ଶାରୀରିକ ସ୍ନାୟୁ ଓ ଇନ୍ଦ୍ରିୟଗୁଡ଼ିକର ଶେଷାଂଶରେ ଥିବା ଅଙ୍ଗଗୁଡ଼ିକ ଯଥା : ଚକ୍ଷୁ, କର୍ଣ୍ଣ, ନାସିକା, ତ୍ୱକ୍ ଏବଂ ଜିହ୍ୱା ମଧ୍ୟଦେଇ ବାହାରୁ ଚିନ୍ତାର ବିଷୟବସ୍ତୁ ସଂଗ୍ରହ କରନ୍ତି । ଚିନ୍ତାର ସହାୟକ ହିସାବରେ ଇନ୍ଦ୍ରିୟଗୁଡ଼ିକର ପୂର୍ଣ୍ଣତା ସାଧନ ହେଉଛି ଶିକ୍ଷକମାନଙ୍କର ମନୋଯୋଗର ପ୍ରଥମ ବିଷୟଗୁଡ଼ିକ ମଧ୍ୟରୁ ଏକତମ । ଇନ୍ଦ୍ରିୟଗୁଡ଼ିକଠାରୁ ଆମ୍ଭେମାନେ ଯେଉଁ ଦୁଇଟି ଜିନିଷ ଚାହୁଁ ତାହା ହେଲା ନିର୍ଭୁଲତା ଏବଂ ଅନୁଭୂତିଶୀଳତା । ପ୍ରଥମେ ଆମେ ବୁଝିବା ଆବଶ୍ୟକ ଯେ ଏହି ନିର୍ଭୁଲତା ଏବଂ ଅନୁଭୂତିଶୀଳତା ସକାଶେ କି କି ପ୍ରତିବନ୍ଧକ ରହିଛି ଯାହାଫଳରେ ସେଗୁଡ଼ିକର ଦୂରୀକରଣ ନିମିତ୍ତ ସର୍ବୋତ୍ତମ ଉପାୟ ଅବଲମ୍ବନ କରାଯାଇ ପାରିବ । ଯେଉଁମାନେ ପୂର୍ଣ୍ଣତା ସକାଶେ ଅଭୀପ୍ସା କରନ୍ତି ସେହିମାନେହିଁ ଏହି ଅପୂର୍ଣ୍ଣତାର କାରଣ ବୁଝିବା ଆବଶ୍ୟକ ।

ଇନ୍ଦ୍ରିୟଗୁଡ଼ିକ ସେମାନଙ୍କର ନିର୍ଭୁଲତା ଓ ଅନୁଭୂତିଶୀଳତା ନିମିତ୍ତ ଅନୁଭୂତି-ପ୍ରେରଣର ଗତିପଥ ସ୍ନାୟୁଗୁଡ଼ିକର ପ୍ରତିବନ୍ଧକଶୂନ୍ୟ କ୍ରିୟାକଳାପ ଏବଂ ଗ୍ରହଣକାରୀ ମନର ନିଷ୍କ୍ରିୟ ସ୍ୱୀକୃତି ଉପରେ ନିର୍ଭର କରନ୍ତି । ଅଙ୍ଗଗୁଡ଼ିକ ନିଜେ ସେମାନଙ୍କ କାର୍ଯ୍ୟ ସଂପୂର୍ଣ୍ଣ ଠିକ୍‌ଭାବେ କରନ୍ତି । ଚକ୍ଷୁ ଯଥାର୍ଥ ରୂପ ଦର୍ଶନ କରେ, କର୍ଣ୍ଣ ଠିକ୍‌ଭାବେ ଶବ୍ଦଗ୍ରହଣ କରେ, ଜିହ୍ୱା ପ୍ରକୃତ ସ୍ୱାଦଗ୍ରହଣ କରେ, ଚର୍ମ ଠିକ୍‌ଭାବେ ସ୍ପର୍ଶକରେ, ନାସିକା

ନିର୍ଭୁଲଭାବେ ଆଘ୍ରାଣ କରେ । ଏହା ସହଜରେ ବୁଝାଯାଇପାରେ ଯଦି ଆମେ ଏକ ପ୍ରାମାଣିକ ଉଦାହରଣ-ରୂପେ ଚକ୍ଷୁର କାର୍ଯ୍ୟ ଅଧ୍ୟୟନ କରୁ । ଦେଖାଯିବ ଯେ ଅକ୍ଷିପଟ ଉପରେ ସ୍ୱୟଂକ୍ରିୟଭାବେ ଏକ ପ୍ରତିଛବି ପୁନରୁତ୍ପାଦିତ ହୋଇଥାଏ; ଯଦି ଏହାର ଯଥୋଚିତ ନିର୍ଦ୍ଧାରଣରେ କିଛି ତ୍ରୁଟି ଦେଖାଯାଏ ତେବେ ଏହା ଯନ୍ତ୍ରର ଦୋଷ ନୁହେଁ, ଅନ୍ୟକିଛି ଏହାର କାରଣ ହୋଇପାରେ ।

ସ୍ନାୟୁପ୍ରବାହ ମଧ୍ୟରେ କେଉଁଠି ତ୍ରୁଟି ରହିଥାଇପାରେ । ସ୍ନାୟୁଗୁଡ଼ିକ କେବଳ ଗତିପଥ ବ୍ୟତୀତ ଅନ୍ୟକିଛି ନୁହନ୍ତି । ବିଭିନ୍ନ ଇନ୍ଦ୍ରିୟ ଦ୍ୱାରା ଯେଉଁ ଅନୁଭୂତି ପ୍ରେରଣ କରାଯାଏ ତାକୁ ପରିବର୍ତ୍ତିତ କରିବା ପାଇଁ ସ୍ନାୟୁଗୁଡ଼ିକର ନିଜର କୌଣସି ଶକ୍ତି ନାହିଁ । କିନ୍ତୁ ଏହି ଅନୁଭୂତିପ୍ରେରଣର ପଥ ବାଧାପ୍ରାପ୍ତ ହୋଇପାରେ ଏବଂ ସେହି ବାଧା ଅନୁଭୂତି-ପ୍ରେରଣର ପୂର୍ଣ୍ଣତା ବା ସଠିକତାକୁ ବିକୃତ କରି ଦେଇପାରେ; କିନ୍ତୁ ଆବଶ୍ୟକ ଅନୁସାରେ ଓ ସ୍ୱୟଂକ୍ରିୟ ଭାବରେ ପୂର୍ଣ୍ଣରୂପେ ଯେପରି ଇନ୍ଦ୍ରିୟ ନିକଟରେ ପହଞ୍ଚିବାର କଥା ସେଥିରେ କୌଣସି ବ୍ୟାଘାତ ଘଟାଇ ପାରେ ନାହିଁ, ବିକୃତି ଘଟେ ଯେତେବେଳେ ଏହା ସ୍ନାୟୁ ମଧ୍ୟଦେଇ ମନରେ ଯାଇ ପହଞ୍ଚେ । ଏହାର ଏକମାତ୍ର ବ୍ୟତିକ୍ରମ ଘଟେ ଯଦି ଯନ୍ତ୍ର ହିସାବରେ ଇନ୍ଦ୍ରିୟର କୌଣସି ଶାରୀରିକ ତ୍ରୁଟି ଥାଏ । ତେବେ ତାହା ଶିକ୍ଷାବିତ୍ ବା ଶିକ୍ଷକଙ୍କର ବିଷୟବସ୍ତୁ ନୁହେଁ, ତାହା ଡାକ୍ତରଙ୍କର ଦେଖିବା କଥା ।

ଯଦି ଏପରି ବାଧା ଆସେ ଯଦ୍ଦ୍ୱାରା ମନରେ ଅନୁଭୂତି ଏକେବାରେ ପହଞ୍ଚିପାରେ ନାହିଁ,. ତେବେ ଇନ୍ଦ୍ରିୟଗୁଡ଼ିକର ଅପର୍ଯ୍ୟାପ୍ତ ଅନୁଭୂତିଶୀଳତାହିଁ ତାହାର ପରିଣାମ ହୋଇଥାଏ । ଯେତେବେଳେ ଇନ୍ଦ୍ରିୟ ମଧ୍ୟରେ କୌଣସି ଶାରୀରିକ କ୍ଷତି ବା ତ୍ରୁଟି ନ ଥାଏ ସେତେବେଳେ ଦୃଷ୍ଟି, ଶ୍ରୁତି, ଆଘ୍ରାଣ, ସ୍ପର୍ଶ ଓ ସ୍ୱାଦ ଅନୁଭୂତିରେ ତ୍ରୁଟି ଏବଂ ଜଡ଼ତା ବା ଅନୁଭୂତିହୀନତାର ନିରାମୟ କରାଯାଇପାରେ । ଯାହାକିଛି ବାଧା ଥାଏ

ତାହାର ଦୂରୀକରଣ ଏବଂ ଅନୁଭୂତିଶୀଳତାରେ ଯାହା ତ୍ରୁଟି ଥାଏ ସ୍ନାୟୁମଣ୍ଡଳର ଶୁଦ୍ଧୀକରଣ ଦ୍ୱାରା ତାହାର ପ୍ରତିକାର କରାଯାଇପାରେ । ଏହି ପ୍ରତିକାର ଅତି ସରଳ ଧରଣର, ଯାହା ହେଉଛି ଶ୍ୱାସ-ପ୍ରଶ୍ୱାସର ନିୟନ୍ତ୍ରଣ ଏବଂ ବିଭିନ୍ନ କାରଣ ଓ ଲକ୍ଷ୍ୟ ନେଇ ଏହା ବର୍ତ୍ତମାନ ଇଉରୋପରେ ବିଶେଷ ଜନପ୍ରିୟ ହେଉଛି । ଏହି ପ୍ରଣାଳୀ ନିଶ୍ଚିତରୂପେ ସ୍ନାୟୁପଥର ତ୍ରୁଟିଶୂନ୍ୟ ତଥା ବାଧାହୀନ କ୍ରିୟାକଳାପକୁ ପୁନର୍ବ୍ୟବସ୍ଥିତ କରେ ଏବଂ ଯଦି ଭଲଭାବେ ଓ ସଂପୂର୍ଣ୍ଣରୂପେ ଏହା କରାଯାଏ, ତେବେ ଏହା ଦ୍ୱାରା ଇନ୍ଦ୍ରିୟସମୂହର କ୍ରିୟାକଳାପ ଅତି ଉଚ୍ଚ ଧରଣର ହୋଇଥାଏ । ଏହି ପଦ୍ଧତିକୁ ଯୌଗିକ ନିୟମରେ 'ନାଡ଼ି-ଶୁଦ୍ଧି' ବା ସ୍ନାୟୁ-ଶୁଦ୍ଧୀକରଣ କୁହାଯାଏ ।

ଅନୁଭୂତିର ପ୍ରବାହ-ପଥ(ସ୍ନାୟୁ)ରେ ଯେଉଁ ପ୍ରତିବନ୍ଧକ ଦେଖାଦିଏ ତାହାଦ୍ୱାରା ଅନୁଭୂତି-ପ୍ରେରଣ ପୂର୍ଣ୍ଣତଃ ବନ୍ଦ ହୋଇଯାଏ ନାହିଁ । ଅତି ଅଳ୍ପମାତ୍ରାରେ ହେଲେ ବି ତାହା ସକ୍ରିୟ ଥାଏ, କିନ୍ତୁ ଅନୁଭୂତି ବିକୃତ ହେବାର ଦେଖାଯାଏ । ଏହାର ଏକ ଜଣାଶୁଣା ଉଦାହରଣ ହେଲା ଇନ୍ଦ୍ରିୟର କ୍ରିୟାକଳାପରେ ଭୟ ବା ଅତି ସତର୍କତାର ପ୍ରଭାବ । ଆକସ୍ମିକ ଭାବେ ଭୟଭୀତ ହୋଇଥିବା ଘୋଡ଼ା ରାସ୍ତାରେ ଯିବାବେଳେ ବସ୍ତା ବା ସେହିପରି କିଛି ଜିନିଷ ପଡ଼ିଥିଲେ ତାକୁ ଏକ ଭୟଙ୍କର ଜୀବନ୍ତ ବସ୍ତୁ ବୋଲି ମନେକରେ; କୌଣସି ଭୟଭୀତ ବ୍ୟକ୍ତି ଏକ ଦଉଡ଼ି ଦେଖିଲେ ତାକୁ ସାପ ବୋଲି ଏବଂ କୌଣସି ଦୋଳାୟମାନ ପର୍ଦା ଦେଖିଲେ ତାକୁ ଭୂତ ବୋଲି ମନେକରେ । ସ୍ନାୟୁମଣ୍ଡଳର ବିଭିନ୍ନ କାର୍ଯ୍ୟକଳାପ ଯୋଗୁଁ ଯେଉଁ ବିକୃତି ଦେଖାଯାଏ ତାହାର କାରଣ ହେଲା ସ୍ନାୟୁ-ପଥରେ କେତେକ ପ୍ରକାର ଆବେଗମୂଳକ ବ୍ୟତିବ୍ୟସ୍ତତାର ପ୍ରକ୍ରିୟା । ଏହିସବୁ ବିକୃତିର ଏକମାତ୍ର ପ୍ରତିକାର ହେଲା ସ୍ନାୟୁମଣ୍ଡଳର ନୀରବତା ଓ ସ୍ଥିରତାର ଅଭ୍ୟାସ । 'ନାଡ଼ି-ଶୁଦ୍ଧି' ବା 'ସ୍ନାୟୁ-ଶୁଦ୍ଧି' ଦ୍ୱାରା ମଧ୍ୟ ଏହାର ପ୍ରତିକାର କରାଯାଇପାରେ ଯାହାକି ସମସ୍ତ

ସ୍ନାୟୁମଣ୍ଡଳକୁ ଶାନ୍ତ ରଖେ, ଅନ୍ତରର ସମସ୍ତ ପ୍ରକ୍ରିୟାକୁ ଏକ ଉଦ୍ଦେଶ୍ୟମୂଳକ ସ୍ଥିରତା ପ୍ରଦାନ କରେ, ଏବଂ ମନର ଶୁଦ୍ଧୀକରଣ ନିମିତ୍ତ ପ୍ରସ୍ତୁତିମୂଳକ କାର୍ଯ୍ୟ କରେ ।

ସ୍ନାୟୁ-ପଥ ଯଦି ସ୍ଥିର ଏବଂ ପରିଷ୍କାର ଥାଏ ତେବେ ଅନୁଭୂତି-ପ୍ରେରଣ ସକାଶେ କେବଳ ମନରୁ ବା ମନ ମଧ୍ୟଦେଇ ବାଧା-ବିଘ୍ନର ସମ୍ଭାବନା ରହିପାରେ । ବର୍ତ୍ତମାନ 'ମନସ୍' ବା ଷଷ୍ଠ ଇନ୍ଦ୍ରିୟ ମଧ୍ୟ ନିଜେ ଅନୁଭୂତି ପ୍ରେରଣର ଏକ ଗତିପଥ, ମସ୍ତିଷ୍କ-ଶକ୍ତି ବା ବୁଦ୍ଧି ସହ ସମ୍ପର୍କ ସ୍ଥାପନ ନିମିତ୍ତ ଏକ ସଂଯୋଗସୂତ୍ର । ଏହି ବାଧାବିଘ୍ନ ଊର୍ଦ୍ଧ୍ୱରୁ ବା ନିମ୍ନରୁ ଘଟିପାରେ । ବାହାରୁ ଯେଉଁସବୁ ସଂବାଦ ମସ୍ତିଷ୍କକୁ ଆସେ ତାହା ପ୍ରଥମେ ଇନ୍ଦ୍ରିୟର ବହିର୍ଭାଗରେ ଗୃହୀତ ହୁଏ ଏବଂ ତା'ପରେ ସ୍ନାୟୁମଣ୍ଡଳର ଅନ୍ୟ ପ୍ରାନ୍ତସ୍ଥ 'ଚିତ୍ତ'ରେ ବା ନିଷ୍କ୍ରିୟ ସ୍ମୃତିରେ ପୁନରୁତ୍ପାଦିତ ହୁଏ । ଦୃଷ୍ଟି, ଶବ୍ଦ, ଆଘ୍ରାଣ, ସ୍ପର୍ଶ ଓ ସ୍ୱାଦର ସମସ୍ତ ପ୍ରତିରୂପ ସେହିଠାରେହିଁ ଗଚ୍ଛିତ ରହେ ଏବଂ 'ମନସ୍' ସେସବୁକୁ 'ବୁଦ୍ଧି' ନିକଟକୁ ପ୍ରେରଣ କରେ । 'ମନସ୍' ହେଉଛି ଏକ ସଙ୍ଗରେ ଏକ ଜ୍ଞାନେନ୍ଦ୍ରିୟ ଏବଂ ଅନୁଭୂତିର ଏକ ଗତିପଥ । ଇନ୍ଦ୍ରିୟ ଭାବରେ ଏହା ଅନ୍ୟାନ୍ୟ ଇନ୍ଦ୍ରିୟ ସଦୃଶ ସ୍ୱୟଂସଂପୂର୍ଣ୍ଣ; ଅନୁଭୂତିର ଗତିପଥ ହିସାବରେ ଏଥିରେ ବାଧାବିଘ୍ନର ସମ୍ଭାବନା ଥାଏ ଯାହାଫଳରେ ବ୍ୟାଘାତ ବା ବିକୃତି ଘଟିଥାଏ ।

ଜ୍ଞାନେନ୍ଦ୍ରିୟ ହିସାବରେ ମନ ବାହାରରୁ ଏବଂ ଅନ୍ତରରୁ ପ୍ରତ୍ୟକ୍ଷ ଚିନ୍ତାର ଧାରଣାଗୁଡ଼ିକୁ ଗ୍ରହଣ କରେ । ସେହିସବୁ ଧାରଣାଗୁଡ଼ିକ ନିଜେ ସଂପୂର୍ଣ୍ଣଭାବେ ଠିକ୍, କିନ୍ତୁ ବୁଦ୍ଧି ନିକଟକୁ ସେମାନେ ଯେଉଁସବୁ ବିବରଣୀ ପଠାନ୍ତି ତାହା ସେଠାରେ ଆଦୌ ପହଞ୍ଚି ନ ପାରେ ବା ଏପରି ବିକୃତଭାବେ ପହଞ୍ଚିପାରେ ଯଦ୍ୱାରା ସେଠାରେ ମିଥ୍ୟା ବା ଆଂଶିକ ମିଥ୍ୟା ଧାରଣାର ସୃଷ୍ଟି ହୁଏ । ମନରେ ଯେଉଁ ବ୍ୟାଘାତ ସୃଷ୍ଟି ହୁଏ ତାହା ଚକ୍ଷୁ, କର୍ଣ୍ଣ, ନାସିକା, ତ୍ୱକ୍ ଏବଂ ଜିହ୍ୱାର ସମ୍ବାଦ-ପ୍ରେରଣରେ ସହାୟତା କରୁଥିବା

ଧାରଣାକୁ ପ୍ରଭାବିତ କରେ, କିନ୍ତୁ ଏଠାରେ ଏହା ଅତି ଅଳ୍ପ ମାତ୍ରାରେ ଶକ୍ତିଶାଳୀ । ମନର ପ୍ରତ୍ୟକ୍ଷ ଧାରଣା ଉପରେ ଏହାର ପରିଣାମ ଚରମ ଶକ୍ତିଶାଳୀ ଏବଂ ଏହା ଭ୍ରାନ୍ତିର ପ୍ରଧାନ ଉତ୍ସ ହୋଇଥାଏ । ପ୍ରଥମତଃ ଚିନ୍ତାରୁହିଁ ମନ ପ୍ରତ୍ୟକ୍ଷ ଧାରଣା ନେଇଥାଏ କିନ୍ତୁ ଆକୃତି, ଶବ୍ଦ ଏବଂ ବାସ୍ତବରେ ଅନ୍ୟ ଯେଉଁ ସମସ୍ତ ବସ୍ତୁ ନିମିତ୍ତ ଜ୍ଞାନେନ୍ଦ୍ରିୟ ଉପରେ ନିର୍ଭର କରିବାକୁ ମନ ପସନ୍ଦ କରେ ତାହାରିଠାରୁ ମଧ୍ୟ ଧାରଣା ନିଏ । ମନର ଏହି ଅନୁଭୂତି-ଶୀଳତାର ପୂର୍ଣ୍ଣ ବିକାଶକୁ ଯୌଗିକ ପଦ୍ଧତିରେ 'ସୂକ୍ଷ୍ମଦୃଷ୍ଟି' ବା ପ୍ରତିରୂପର ସୂକ୍ଷ୍ମଗ୍ରହଣ ବୋଲି କୁହାଯାଏ । ଶବ୍ଦ ବା ସଂକେତର ବିନା ବ୍ୟବହାରରେ ଭାବଧାରାର ଯୋଗାଯୋଗ (telepathy), ଅତୀନ୍ଦ୍ରିୟ ଦୃଷ୍ଟି (clairvoyance), ଅତୀନ୍ଦ୍ରିୟ ଶ୍ରବଣ (clairaudience), ଭବିଷ୍ୟତରେ କିଛି ଅମଙ୍ଗଳ ଘଟିବାର ପୂର୍ବ ଅନୁଭୂତି (presentiment), ଚିନ୍ତା-ପଠନ (thought-reading), ଚରିତ୍ର-ପଠନ (character-reading) ଏବଂ ଆହୁରି ଅନେକ ଆଧୁନିକ ଆବିଷ୍କାର ହେଲା ମନର ଅତି ପୁରାତନ ଶକ୍ତିସବୁ ଯାହାକୁ କି ଏପର୍ଯ୍ୟନ୍ତ ଅବିକଶିତ ଭାବରେ ଛାଡ଼ିଦିଆଯାଇଛି ଏବଂ ସେହିସବୁ ହେଉଛନ୍ତି 'ମନସ୍'ର ଅନ୍ତର୍ଗତ । ଏହି ଷଷ୍ଠ ଇନ୍ଦ୍ରିୟର ବିକାଶକୁ କେବେହେଁ ମାନୁଷୀ-ତାଲିମ୍‌ର ଅଙ୍ଗୀଭୂତ କରାଯାଇ ନାହିଁ । ଭବିଷ୍ୟତ୍ ଯୁଗରେ ଏହା ନିଃସନ୍ଦେହ ଭାବରେ ମନୁଷ୍ୟ-ଯନ୍ତ୍ରର ଆବଶ୍ୟକ ପ୍ରାଥମିକ ତାଲିମ୍‌ର ସ୍ଥାନ ଗ୍ରହଣ କରିବ । ଇତି ମଧ୍ୟରେ ଏପରି କୌଣସି କାରଣ ନାହିଁ ଯେଉଁଥିସକାଶେ ବୁଦ୍ଧିକୁ ସଠିକ ସମ୍ବାଦ ଦେବା ପାଇଁ ମନକୁ ତାଲିମ ଦିଆ ନ ଯିବ ଏବଂ ଏହା କରାଗଲେ ଆମର ଚିନ୍ତା ପୂର୍ଣ୍ଣଧାରଣା ସହ ନ ହେଲେ ମଧ୍ୟ ସଂପୂର୍ଣ୍ଣ ଠିକ୍ ଭାବେ ଅଗ୍ରସର ହୋଇପାରିବ ।

ଆମର ପ୍ରଥମ ପ୍ରତିବନ୍ଧକ ସ୍ନାୟବିକ ଆବେଗକୁ ସ୍ନାୟୁମଣ୍ଡଳର ଶୁଦ୍ଧୀକରଣ ଦ୍ୱାରା ଦୂର କରାଯାଇ ପାରିବ । ଦ୍ୱିତୀୟ ପ୍ରତିବନ୍ଧକ ହେଲା ଆବେଗଗୁଡ଼ିକ ନିଜେ, ଯେଉଁଗୁଡ଼ିକ କି ମୂଳ ଧାରଣାସବୁକୁ ବିକୃତ

କରିପକାନ୍ତି । ଏହି ବିକୃତି ପ୍ରେମ ଦ୍ୱାରା ଘଟିପାରେ, ଘୃଣା ଦ୍ୱାରା ଘଟିପାରେ, ଯେକୌଣସି ଆବେଗ ବା ଆକାଙ୍କ୍ଷା ଏହାର ଶକ୍ତି ଏବଂ ଆତିଶଯ୍ୟ ଅନୁସାରେ ଧାରଣାର ପ୍ରବାହକୁ ବିକୃତ କରିପାରେ । ଏହି ବାଧା-ବିଘ୍ନକୁ କେବଳ ଆବେଗର ନିୟନ୍ତ୍ରଣ ଏବଂ ନୈତିକ ଅଭ୍ୟାସର ଶୁଦ୍ଧୀକରଣ ଦ୍ୱାରା ଦୂର କରାଯାଇ ପାରେ । ଏହା ନୈତିକ ତାଲିମର ଏକ ଅଂଶ ଏବଂ ବର୍ତ୍ତମାନ ସକାଶେ ଏ ସମ୍ବନ୍ଧୀୟ ବିଚାର-ଆଲୋଚନାକୁ ସ୍ଥଗିତ ରଖାଯାଇପାରେ । ପରବର୍ତ୍ତୀ ବାଧାବିଘ୍ନ ହେଲା 'ଚିତ୍ତ' ବା ନିଷ୍କ୍ରିୟ ସ୍ମୃତିରେ ପୂର୍ବରୁ ଗଠିତ ବା ବଦ୍ଧମୂଳ ହୋଇଥିବା ଚିନ୍ତାର ସଂସର୍ଗ (association)ର ହସ୍ତକ୍ଷେପ । ଆମ୍ଭମାନଙ୍କର ପ୍ରକୃତିର ବସ୍ତୁସକଳ ପ୍ରତି ଦୃଷ୍ଟିପାତ କରିବାର ଏକ ଅଭ୍ୟାସଗତ ପଦ୍ଧତି ଓ ରକ୍ଷଣଶୀଳ ତାମସିକତା ରହିଛି ଯାହାକି ଆମେ ଅଭ୍ୟସ୍ତ ଥିବା ପଦ୍ଧତିର ସାଦୃଶ୍ୟ ଓ ଆକୃତିରେ ଯେକୌଣସି ନୂତନ ଅଭିଜ୍ଞତାକୁ ବହିଷ୍କାର କରେ । କେବଳ ଅଧିକ ବିକଶିତ ମନସବୁହିଁ ନୂତନ ଅଭିଜ୍ଞତାର ନୂତନତା ବିରୋଧରେ କୌଣସି ଅଚେତନ ପକ୍ଷପାତିତ୍ୱ ବ୍ୟତୀତ ପ୍ରଥମ ଧାରଣାଗୁଡ଼ିକୁ ଗ୍ରହଣ କରିପାରନ୍ତି । ଉଦାହରଣସ୍ୱରୂପ ଯାହାକିଛି ଘଟୁଛି, ଆମେ ଯଦି ତା'ର ଏକ ଯଥାର୍ଥ ଧାରଣା ଲାଭ କରୁ– ଏବଂ ତାହା ସତ୍ୟ ବା ମିଥ୍ୟା ଯାହାହେଉ ପଛକେ, ତାହା ଉପରେ ଆମେ ଅଭ୍ୟାସଗତ ଭାବରେ କାର୍ଯ୍ୟକରୁ – ଏବଂ ଯଦି ଆମ୍ଭେମାନେ ଅଭ୍ୟସ୍ତଭାବେ ଯାହା ଆଶା କରିଥାଉ ତାହା ଅପେକ୍ଷା ଏହା ଭିନ୍ନ ହୁଏ, ତେବେ ପୁରୁଣା ଚିନ୍ତା-ସଂସର୍ଗ ଏହାକୁ 'ଚିତ୍ତ'ରେ ସାକ୍ଷାତ କରେ ଏବଂ ବୁଦ୍ଧି ନିକଟକୁ ଏକ ପରିବର୍ତ୍ତିତ ବିବରଣୀ ପଠାଏ ଯହିଁରେ ହୁଏତ ନୂତନ ଅଭିଜ୍ଞତାଟି ପୁରାତନ ଅଭିଜ୍ଞତା ଦ୍ୱାରା ଚାପାପ୍ରାପ୍ତ ହୁଏ ଏବଂ ଲୁଚିଯାଏ କିଂବା ତାହା ସହ ମିଶ୍ରିତ ହୋଇଯାଏ । ଏହି ବିଷୟରେ ଆହୁରି ଆଗେଇବାକୁ ହେଲେ ଆମକୁ ଗଭୀର ଓ ପୁଙ୍ଖାନୁପୁଙ୍ଖ ଭାବରେ ମନସ୍ତତ୍ତ୍ୱ ମଧ୍ୟରେ ପ୍ରବେଶ କରିବାକୁ ହେବ । ଏହି ବିଶେଷ ଉଦାହରଣଟିହିଁ

ବର୍ତ୍ତମାନ ପାଇଁ ଯଥେଷ୍ଟ ହେବ । ଚିତ୍ତ-ଶୁଦ୍ଧି ବା ଚିତ୍ତରେ ଗଠିତ ମାନସିକ ଏବଂ ନୈତିକ ଅଭ୍ୟାସର ଶୁଦ୍ଧୀକରଣ ବ୍ୟତୀତ ଏହି ପ୍ରତିବନ୍ଧକରୁ ମୁକ୍ତ ହେବା ଅସମ୍ଭବ । ଏହା ଯୋଗର ଏକ ପ୍ରାଥମିକ ପ୍ରକ୍ରିୟା ଏବଂ ପୁରାତନ ବ୍ୟବସ୍ଥାର ବିଭିନ୍ନ ଉପାୟରେ ଏହା ଫଳପ୍ରଦ ହେଉଥିଲା, କିନ୍ତୁ ଆଧୁନିକ ଶିକ୍ଷା-ବ୍ୟବସ୍ଥାରେ ଏହାର କୌଣସି ସ୍ଥାନ ନାହିଁ ବୋଲି ବିବେଚିତ ହେଉଛି ।

ତେଣୁ ଏହା ସ୍ପଷ୍ଟ ଯେ ଯେପର୍ଯ୍ୟନ୍ତ ଆମ୍ଭେମାନେ ପୁରାତନ ବ୍ୟବସ୍ଥାର କେତେକ ସୂତ୍ରକୁ ପୁନର୍ବାର ଫେରି ନ ଆସିଛୁ ସେପର୍ଯ୍ୟନ୍ତ ଆମକୁ ଏହି ସମସ୍ତ ବିଶୃଙ୍ଖଳାର ଉତ୍ସକୁ ବଜାୟ ରଖିବାରେ ସନ୍ତୁଷ୍ଟ ରହିବାକୁ ହେବ । ଏକ ଯଥାର୍ଥ ଜାତୀୟ ଶିକ୍ଷାବ୍ୟବସ୍ଥା କେବେ ବି ଏହିପରି ବିଶେଷ ଗୁରୁତ୍ୱପୂର୍ଣ୍ଣ ବିଷୟରେ ୟୁରୋପୀୟ ଧାରଣା ଦ୍ୱାରା ନିୟନ୍ତ୍ରିତ ହେବାକୁ ଚାହେଁ ନାହିଁ । ଏବଂ ଏପରି ଏକ ଅତି ସରଳ ଓ ପ୍ରୟୋଜନୀୟ ପ୍ରକ୍ରିୟା ରହିଛି ଯାହାକୁ ଅତି ସହଜରେ ଆମ ବ୍ୟବସ୍ଥାର ଅଙ୍ଗୀଭୂତ କରାଯାଇପାରେ ।

ଆମ୍ଭମାନଙ୍କ ସଂକଳ୍ପ ଓ ସଂଯମର ବହିର୍ଭୂତ ନିଷ୍କ୍ରିୟ ସ୍ମୃତିର ଗତିବେଗ ଦ୍ୱାରା ଉତ୍‌ଥିତ ଚିନ୍ତାନୁଭୂତିର ଅସ୍ଥିର ଉଚ୍ଛ୍ୱାସର ଶାନ୍ତକରଣହିଁ ଏହି ପଦ୍ଧତିର ଅନ୍ତର୍ଭୁକ୍ତ । ଏହି ଶାନ୍ତ ଅବସ୍ଥା ପୁରାତନ ସଂସର୍ଗ ଓ ମିଥ୍ୟା ଧାରଣାର ଅବରୋଧ ମଧ୍ୟରୁ ବୁଦ୍ଧିକୁ ମୁକ୍ତ କରେ । ନିଷ୍କ୍ରିୟ ସ୍ମୃତିର ଭଣ୍ଡାର ମଧ୍ୟରୁ କେବଳ ଯାହାହିଁ ଆବଶ୍ୟକ ତାହାକୁ ନିର୍ବାଚନ କରିବା ନିମିତ୍ତ ଏହା ବୁଦ୍ଧିକୁ ଶକ୍ତି ପ୍ରଦାନ କରେ, ସ୍ୱୟଂକ୍ରିୟଭାବେ ଯଥାର୍ଥ ଧାରଣା ଲାଭ କରିବାରେ ଅଭ୍ୟସ୍ତ କରେ ଏବଂ କେଉଁ ସଂସ୍କାର ବା ସଂସର୍ଗକୁ ଗଠିତ ବା ପରିତ୍ୟକ୍ତ କରିବାକୁ ହେବ ସେସମ୍ବନ୍ଧରେ 'ଚିତ୍ତ'କୁ ନିର୍ଦ୍ଦେଶ ଦେବାପାଇଁ ବୁଦ୍ଧିକୁ ସକ୍ଷମ କରେ । ପାର୍ଥକ୍ୟ-ନିରୂପଣ, ବାଛବିଚାର, ନିର୍ବାଚନ, ବ୍ୟବସ୍ଥାକରଣ— ଏହିସବୁ ହେଲା ବୁଦ୍ଧିର ଯଥାର୍ଥ କାର୍ଯ୍ୟ । କିନ୍ତୁ ଯେପର୍ଯ୍ୟନ୍ତ 'ଚିତ୍ତ-ଶୁଦ୍ଧି' ନ ହୋଇଛି ସେପର୍ଯ୍ୟନ୍ତ ଏହି କାର୍ଯ୍ୟ ସଂପୂର୍ଣ୍ଣ ଓ ସଠିକଭାବେ କରିବା ପରିବର୍ତ୍ତେ ଏହା ନିଜେ ଅପୂର୍ଣ୍ଣ ଓ ଦୂଷିତ ହୋଇ ରହେ ଏବଂ

ମାନସ-ପଥର ବିଶୃଙ୍ଖଳା ସହ ମିଥ୍ୟା ବିଚାର, ମିଥ୍ୟା କଳ୍ପନା, ମିଥ୍ୟା ସ୍ମୃତି, ମିଥ୍ୟା ପର୍ଯ୍ୟବେକ୍ଷଣ, ମିଥ୍ୟା ତୁଳନା, ବୈଷମ୍ୟ ଓ ସାଦୃଶ୍ୟ, ମିଥ୍ୟା ସିଦ୍ଧାନ୍ତ, କୌଣସି ବିଶେଷ ଘଟଣାରୁ ସାଧାରଣ ସିଦ୍ଧାନ୍ତରେ ଉପନୀତ ହେବାର ଯୁକ୍ତି-ପ୍ରଣାଳୀ (induction), ଏବଂ ଅନୁମାନ ଆଦି ଯୋଗ କରେ । ବୁଦ୍ଧିର ମୁକ୍ତି, ବିଶୁଦ୍ଧୀକରଣ ଏବଂ ନିର୍ଭୁଲ କାର୍ଯ୍ୟ ନିମିତ୍ତ 'ଚିତ୍ତ'ର ବିଶୁଦ୍ଧୀକରଣ ଏକାନ୍ତ ଆବଶ୍ୟକ ।

(୬)

## ଅଭ୍ୟାସଦ୍ୱାରା ଇନ୍ଦ୍ରିୟାନୁଭୂତିର ବିକାଶ

ଜ୍ଞାନ-ଆହରଣକାରୀ ହିସାବରେ ଇନ୍ଦ୍ରିୟସମୂହର ଅନିପୁଣତାର ଅନ୍ୟ ଏକ କାରଣ ହେଉଛି ସେସବୁର ବ୍ୟବହାରର ସ୍ୱଳ୍ପତା । ଆମ୍ଭେମାନେ କୌଣସି ବସ୍ତୁକୁ ବିଶେଷଭାବେ ମନୋଯୋଗ ଓ ନିବିଡ଼ତା ସହ ଲକ୍ଷ୍ୟ କରୁ ନାହିଁ । ଅନେକ ସମୟରେ ଦୃଷ୍ଟି, ଶବ୍ଦ, ଗନ୍ଧ, ସ୍ପର୍ଶ ବା ସ୍ୱାଦର ଉପଲବ୍ଧିର ସୁଯୋଗ ମିଳିଲେ ମଧ୍ୟ ଆମ୍ଭମାନଙ୍କ ଅମନୋଯୋଗିତା ହେତୁ ସେସବୁ ସୁଯୋଗ ବ୍ୟର୍ଥ ହୁଏ । ଗ୍ରହଣକାରୀ ଯନ୍ତ୍ରଗୁଡ଼ିକର ଏହି ତାମସିକ ଜଡ଼ତା ନିଃସନ୍ଦେହରେ ବୁଦ୍ଧିର ଅମନୋଯୋଗିତା ଯୋଗୁଁ ଘଟିଥାଏ । ତେଣୁ ଏହାର ଯଥାର୍ଥ ସମାଧାନ ବୌଦ୍ଧିକ କ୍ରିୟାକଳାପର ଉପଯୁକ୍ତ ତାଲିମ ଫଳରେ ସମ୍ଭବ ବୋଲି ବୋଧ ହୋଇପାରେ, କିନ୍ତୁ ଏହାକୁ ଏଠାରେ ଏପରିଭାବେ ଦେଖିବା ବ୍ୟାବହାରିକ ଦୃଷ୍ଟିରୁ ସୁବିଧାଜନକ ହେଲେ ମଧ୍ୟ ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ଏହା ସଂପୂର୍ଣ୍ଣ ଠିକ୍ ନୁହେଁ । ଛାତ୍ର ତାହାର ଚତୁଃପାର୍ଶ୍ୱର ଦୃଶ୍ୟ, ଶବ୍ଦ ପ୍ରଭୃତିକୁ ଗ୍ରହଣ କରିବା, ସେଗୁଡ଼ିକ ମଧ୍ୟରେ ଥିବା ପ୍ରଭେଦ ନିର୍ଣ୍ଣୟ କରିବା, ସେଗୁଡ଼ିକର ପ୍ରକୃତି, ଗୁଣ ଏବଂ ଉତ୍ସକୁ ଲକ୍ଷ୍ୟ କରିବା ନିମିତ୍ତ ଅଭ୍ୟସ୍ତ ହେବା ଏବଂ ଚିତ୍ତରେ ସେଗୁଡ଼ିକୁ ସ୍ଥିର କରି ରଖିବା ଆବଶ୍ୟକ ଯାହା ଫଳରେ ସେଗୁଡ଼ିକ ସର୍ବଦା ସ୍ମୃତିର ଆବାହନବେଳେ ଉତ୍ତର ଦେବା ସକାଶେ ପ୍ରସ୍ତୁତ ରହିବେ ।

ଏହା ପୁଙ୍ଖାନୁପୁଙ୍ଖ ପରୀକ୍ଷା ଦ୍ୱାରା ପ୍ରମାଣିତ ହୋଇଛି ଯେ କେବଳ ସ୍ମୃତି ଏବଂ ଇନ୍ଦ୍ରିୟଗୁଡ଼ିକର ବ୍ୟବହାରରେ ଅବହେଳା ଯୋଗୁଁ ମନୁଷ୍ୟମାନଙ୍କ ମଧ୍ୟରେ ପର୍ଯ୍ୟବେକ୍ଷଣ-ପ୍ରବୃତ୍ତି ଖୁବ୍ ଅପୂର୍ଣ୍ଣଭାବେ ବିକଶିତ

ହୋଇଥାଏ । ବାରଜଣ ବ୍ୟକ୍ତି, ଯେଉଁମାନେ ଦୁଇଘଣ୍ଟା ପୂର୍ବରୁ କୌଣସି ଘଟଣା ପ୍ରତ୍ୟକ୍ଷଭାବେ ଦେଖିଛନ୍ତି, ସେମାନଙ୍କୁ ସେମାନଙ୍କ ସ୍ମୃତିରୁ ଘଟଣାଟିକୁ ଲିପିବଦ୍ଧ କରିବାକୁ ଦିଆଯାଉ । ପ୍ରତ୍ୟେକଙ୍କ ବିବରଣୀରେ କେତେକ ପାର୍ଥକ୍ୟ ଦେଖାଯିବ ଏବଂ ବାସ୍ତବ ଘଟଣାରୁ ମଧ୍ୟ ସେମାନଙ୍କ ବିବରଣୀ କେତେକାଂଶରେ ଭିନ୍ନ ହେବ । ଏହି ଅପୂର୍ଣ୍ଣତାରୁ ରକ୍ଷା ପାଇବା ନିମିତ୍ତ ଭ୍ରାନ୍ତିକୁ ଦୂର କରିବା ଅନେକ ସମୟସାପେକ୍ଷ । କିନ୍ତୁ ଇନ୍ଦ୍ରିୟଗୁଡ଼ିକୁ ସଂପୂର୍ଣ୍ଣ ଠିକ୍ ଭାବରେ କାର୍ଯ୍ୟ କରିବା ନିମିତ୍ତ ତାଲିମ ଦେବା ଦ୍ୱାରା ଏହା ସମ୍ଭବ ହୋଇପାରିବ । ଯଦି ଇନ୍ଦ୍ରିୟଗୁଡ଼ିକ ଜାଣନ୍ତି ଯେ ବୁଦ୍ଧି ସେମାନଙ୍କଠାରୁ ଏହା ଆଶାକରେ ଏବଂ ଘଟଣାଗୁଡ଼ିକୁ ସେଗୁଡ଼ିକର ଯଥାର୍ଥ ସ୍ଥାନ ଓ ଶୃଙ୍ଖଳା ସହ ସ୍ମୃତି ମଧ୍ୟରେ ରଖାଯାଏ ତେବେ ଏହାର ସମ୍ପାଦନ ନିମିତ୍ତ ଇନ୍ଦ୍ରିୟଗୁଡ଼ିକ ଯଥେଷ୍ଟ ତତ୍ପର ହୋଇପାରନ୍ତି ।

ଜ୍ଞାନ-ଆହରଣର ଏକ ବିଶେଷ ଉପାଦାନ ହେଲା ମନୋଯୋଗ, ଯାହାର ଗୁରୁତ୍ୱ ସର୍ବଦା ସ୍ୱୀକାର କରାଯାଇଛି । ସ୍ମୃତିଶକ୍ତି ଓ ଯଥାଯଥ ବୋଧର ପ୍ରଥମ ସର୍ତ୍ତ ହେଲା ମନୋଯୋଗ । ଛାତ୍ରଠାରେ ଯେଉଁ ଶୃଙ୍ଖଳାର ଆବଶ୍ୟକତା ରହିଛି ତା'ର ପ୍ରଥମ ଉପାଦାନ ହେଲା ସେ ନିଜେ ଯାହା କରୁଛି ତା' ଉପରେ ମନୋଯୋଗୀ ହେବା, ଏବଂ ଏହା ସହଜରେ ଲାଭ କରାଯାଇପାରେ, ମୁଁ ଯେପରି ପ୍ରସ୍ତାବ ଦେଇଛି, ଯଦି ମନୋଯୋଗର ବିଷୟବସ୍ତୁକୁ ଚିତ୍ତାକର୍ଷକ କରାଯାଏ । କୌଣସି ଏକମାତ୍ର ବିଷୟ ଉପରେଏହି ମନୋଯୋଗକୁ ଏକାଗ୍ରତା କୁହାଯାଏ । ଯାହା ବି ହେଉ, ବେଳେ ବେଳେ ଏକକାଳୀନ ଅନେକ ବସ୍ତୁ ଉପରେ ଏକାଗ୍ର ହେବା ଯେ ଅନିବାର୍ଯ୍ୟ ହୋଇଥାଏ, ଏହି ସତ୍ୟକୁ ପ୍ରାୟ ଉପେକ୍ଷା କରାଯାଇଥାଏ । ଲୋକେ ଯେତେବେଳେ ଏକାଗ୍ରତା ବିଷୟରେ କହନ୍ତି ସେତେବେଳେ ସେମାନେ ତାହାର ଅର୍ଥ କରନ୍ତି : ଏକ ସମୟରେ କେବଳ ଗୋଟିଏ ବିଷୟ ଉପରେ ମନକୁ କେନ୍ଦ୍ରୀଭୂତ କରିବା । କିନ୍ତୁ ଏକ ସମୟରେ ଦୁଇଟି,

ତିନୋଟି ଏପରିକି ଅନେକ ବିଷୟ ଉପରେ ଏକାଗ୍ର ହେବା ମଧ୍ୟ ସମ୍ଭବପର । ଯେତେବେଳେ କୌଣସି ଘଟଣା ଘଟିଥାଏ ସେତେବେଳେ ତାହା ଏକ ସମୟରେ ଏକାଧିକ ଘଟଣାର ସମାବେଶ କିଂବା ଏକ ସମୟରେ ବିଭିନ୍ନ ପରିସ୍ଥିତିର ଏକ ମିଳନ ହୋଇପାରେ ଯେପରିକି ଏକ ଦୃଶ୍ୟ, ଏକ ଶବ୍ଦ, ଏକ ସ୍ପର୍ଶ କିଂବା କେତେଗୁଡ଼ିଏ ଦୃଶ୍ୟ, କେତେଗୁଡ଼ିଏ ଶବ୍ଦ, କେତେଗୁଡ଼ିଏ ସ୍ପର୍ଶର ଏକ ସମୟରେ ବା ନିର୍ଦ୍ଦିଷ୍ଟ ଅଳ୍ପ ସମୟ ମଧ୍ୟରେ ସଂଘଟନ । ମନର ପ୍ରବୃତ୍ତି ହେଲା ଗୋଟିଏ ବିଷୟ ଉପରେ ନିଜକୁ ଆବଦ୍ଧ କରିବା ଏବଂ କେତେକ ବିଷୟକୁ ଅସ୍ପଷ୍ଟଭାବେ ଲକ୍ଷ୍ୟ କରିବା, ଅନ୍ୟ କେତେକକୁ ଆଦୌ ଲକ୍ଷ୍ୟ ନ କରିବା କିଂବା ଯଦି ମନକୁ ସବୁ ବିଷୟ ଉପରେ ଏକାଗ୍ର ହେବାକୁ ବାଧ୍ୟ କରାଯାଏ ତେବେ ହତବୁଦ୍ଧି ହୋଇ କୌଣସି ଗୋଟିଏ ବିଷୟକୁ ମଧ୍ୟ ଏହା ସଂପୂର୍ଣ୍ଣ ମନୋଯୋଗୀ ହୋଇ ଲକ୍ଷ୍ୟ କରିପାରେ ନାହିଁ । ତଥାପି ଏହାର ପ୍ରତିକାର କରାଯାଇପାରେ ଏବଂ ବିଭିନ୍ନ ପରିସ୍ଥିତି ବା ଘଟଣା ଉପରେ ଏପରି ସମାନଭାବେ ମନୋଯୋଗ କରାଯାଇପାରେ ଯଦ୍ଦ୍ୱାରା ପ୍ରତ୍ୟେକ ପରିସ୍ଥିତି ବା ଘଟଣାକୁ ପୂର୍ଣ୍ଣ ଏବଂ ସଠିକଭାବେ ପର୍ଯ୍ୟବେକ୍ଷଣ ଓ ସ୍ମରଣ କରିବା ସମ୍ଭବ ହୁଏ । ଏହା କେବଳ ଅଭ୍ୟାସ ବା ଅବିଚଳ ସ୍ୱାଭାବିକ ଅଭ୍ୟାସର ବିଷୟ ।

ଏହା ମଧ୍ୟ ବିଶେଷଭାବେ ବାଞ୍ଛନୀୟ ଯେ ଚକ୍ଷୁ ତାହାର କ୍ରିୟାକଳାପର ବିଭିନ୍ନ ବିଷୟ ସହିତ ସମ୍ପର୍କରେ ଆସିବାବେଳେ ନିର୍ଭୁଲତା ସମ୍ବନ୍ଧରେ ନିଶ୍ଚିତ ହେବା ନିମିତ୍ତ ହସ୍ତ ସେଥିରେ ସାହାଯ୍ୟ କରିବା ସକାଶେ ସମର୍ଥ ହେବା ଉଚିତ । ଏହାର ଆବଶ୍ୟକତା ଏତେ ସୁସ୍ପଷ୍ଟ ଏବଂ ଏହା ଏତେ ଅନିର୍ବାର୍ଯ୍ୟଭାବେ ଆବଶ୍ୟକ ଯେ ଏ ସମ୍ବନ୍ଧେ ବେଶୀ ସମୟ ଚିନ୍ତା କରିବା ଅନାବଶ୍ୟକ । ମନର ବିସ୍ମୃତି ଓ ଭ୍ରାନ୍ତିର ଆବିଷ୍କାର କରିବା ଏବଂ ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ ପ୍ରତି ମନୋଯୋଗୀ ହେବା ଓ ଯାହା ଦର୍ଶନ କରାଯାଇଛି ତାହାକୁ ସଠିକଭାବେ ଲିପିବଦ୍ଧ କରିବା ନିମିତ୍ତ ଦେଖିଥିବା

ବସ୍ତୁର ହସ୍ତ ଦ୍ୱାରା ଅନୁକରଣ-ଅଭ୍ୟାସର ଆବଶ୍ୟକତା ରହିଛି । ହସ୍ତଦ୍ୱାରା ଅନୁକରଣହିଁ ପର୍ଯ୍ୟବେକ୍ଷଣର ସଠିକତାକୁ ନିଶ୍ଚିତ କରେ । ଅଙ୍କନ (drawing)ର ପ୍ରଥମ ବ୍ୟବହାରଗୁଡ଼ିକ ମଧ୍ୟରୁ ଏହା ଏକତମ ଏବଂ ଏହି ବିଷୟର ଶିକ୍ଷାଦାନକୁ ଇନ୍ଦ୍ରିୟସମୂହର ତାଲିମ ନିମିତ୍ତ ଏକ ଅତ୍ୟାବଶ୍ୟକ ଅଙ୍ଗରେ ପରିଣତ କରିବା ସକାଶେ ଏହାହିଁ ଯଥେଷ୍ଟ ।

(୭)

# ମାନସିକ ବୃତ୍ତିସମୂହର ତାଲିମ

ମନର ଯେଉଁ ପ୍ରଥମ ଗୁଣାବଳୀକୁ ବିକଶିତ କରାଇବାକୁ ହେବ ସେଗୁଡ଼ିକୁ ପର୍ଯ୍ୟବେକ୍ଷଣର ଶ୍ରେଣୀଭୁକ୍ତ କରାଯାଇପାରେ । ଆମେ କେତେକ ବସ୍ତୁକୁ ଦେଖୁ ଏବଂ ଆଉ କେତେକକୁ ନ ଦେଖିଲା ପରି ଅଗ୍ରାହ୍ୟ କରୁ । ଏପରିକି ଆମେ ଯାହାକିଛି ଦେଖୁ ତହିଁରୁ ଅତି ସାମାନ୍ୟ କିଛି ପର୍ଯ୍ୟବେକ୍ଷଣ କରୁ । କୌଣସି ବସ୍ତୁ ସମ୍ବନ୍ଧରେ ସାଧାରଣ ଅନୁଭୂତି ହେଉଛି ସାଧାରଣତଃ ଦ୍ରୁତ ଅର୍ଦ୍ଧମନୋଯୋଗୀ ଦୃଷ୍ଟିନିକ୍ଷେପରୁ ଯାହା ଧାରଣା କରାଯାଏ । ଏକ ନିବିଡ଼ତର ମନୋଯୋଗ ଦ୍ୱାରା କୌଣସି ବସ୍ତୁକୁ ତାହାର ଚତୁର୍ଦ୍ଦିଗସ୍ଥ ବସ୍ତୁରାଜିଠାରୁ ସ୍ୱତନ୍ତ୍ର ରୂପେ ବିଚାର କରି ତାହାର ସ୍ଥାନ, ରୂପ, ପ୍ରକୃତିର ନିର୍ଦ୍ଧାରଣ କରାଯାଏ । କୌଣସି ବସ୍ତୁ ସମ୍ବନ୍ଧେ ମୁଖ୍ୟ ଇନ୍ଦ୍ରିୟତ୍ରୟ (ଚକ୍ଷୁ, ନାସା ଓ କର୍ଣ୍ଣ) ଦ୍ୱାରା ଯେଉଁ ସମସ୍ତ ଜ୍ଞାନ ଆହରଣ କରାଯାଇପାରେ, ପର୍ଯ୍ୟବେକ୍ଷଣର ସମସ୍ତ ବୃତ୍ତିର କେନ୍ଦ୍ରୀକରଣ ଦ୍ୱାରା ତାହାହିଁ ଲାଭ କରାଯାଏ; କିଂବା ବସ୍ତୁଟିକୁ ଯଦି ଆମେ ସ୍ପର୍ଶ ବା ଆସ୍ୱାଦନ କରିପାରୁ ତେବେ ପଞ୍ଚେନ୍ଦ୍ରିୟ ଦ୍ୱାରା ବସ୍ତୁର ଯେଉଁସବୁ ପ୍ରକୃତି ଓ ଗୁଣ ଜଣା ଯାଇପାରେ, ଆମେ ସେସବୁକୁ ଜାଣିପାରୁ । ଯେଉଁମାନେ ସ୍ପଷ୍ଟ ଇନ୍ଦ୍ରିୟର ବ୍ୟବହାର କରିପାରନ୍ତି, ଉଦାହରଣସ୍ୱରୂପ କବି, ଚିତ୍ରକର ଓ ଯୋଗୀ ଇତ୍ୟାଦି, ସେମାନେ ସାଧାରଣ ପର୍ଯ୍ୟବେକ୍ଷକ ଦ୍ୱାରା ଯେଉଁସବୁ ଅଧିକ ଜ୍ଞାନ ଗ୍ରହଣ କରାଯାଇ ନ ପାରେ ତାହା ମଧ୍ୟ ସଂଗ୍ରହ କରିପାରନ୍ତି । ବୈଜ୍ଞାନିକ ତନ୍ନତନ୍ନ ପରୀକ୍ଷା କରି ପୁଙ୍ଖାନୁପୁଙ୍ଖ ପର୍ଯ୍ୟବେକ୍ଷଣ ଦ୍ୱାରା ସମ୍ଭବପର ବିଷୟସବୁ ନିର୍ଦ୍ଧାରଣ କରି ପାରନ୍ତି, ଏବଂ ଏହା ସ୍ପଷ୍ଟ ଯେ ଏହାର ଭିତ୍ତି ହେଲା

ମନୋଯୋଗ, ଯାହାକି ହୋଇପାରେ ନିବିଡ଼ କିଂବା ନିବିଡ଼ ତଥା ପୁଙ୍ଖାନୁପୁଙ୍ଖ । ଏପରିକି କୌଣସି ବସ୍ତୁ ଉପରେ ଏକ ଦୃଷ୍ଟି ପକାଇ ସେସମ୍ବନ୍ଧରେ ଅନେକ ତଥ୍ୟ ସଂଗ୍ରହ କରାଯାଇପାରେ ଯଦି ଆମର ମନୋଯୋଗକୁ କେନ୍ଦ୍ରୀଭୂତ କରିବାର ଓ ସାତ୍ତ୍ୱିକ ଗ୍ରହଣଶୀଳତାର ଅଭ୍ୟାସ ଥାଏ । ଶିକ୍ଷକଙ୍କୁ ଯାହା ପ୍ରଥମେ କରିବାକୁ ହେବ ତାହା ହେଲା ଛାତ୍ରମାନଙ୍କୁ ସେମାନଙ୍କ ମନୋଯୋଗକୁ କେନ୍ଦ୍ରୀଭୂତ କରିବା ନିମିତ୍ତ ଅଭ୍ୟସ୍ତ କରାଇବା ।

ଆମେ ଏକ ଫୁଲର ଉଦାହରଣ ନେଇପାରୁ । ଫୁଲଟିକୁ ଅଯତ୍ନ ଓ ଅମନୋଯୋଗ ସହକାରେ ନ ଦେଖି ଏବଂ ତାହାର ଗନ୍ଧ, ରୂପ ଓ ରଙ୍ଗ ସମ୍ବନ୍ଧେ ଏକ ଆକସ୍ମିକ ଉପରଠାଉରିଆ ଧାରଣା ନ କରି ସେ ଫୁଲଟିକୁ ଭଲଭାବେ ଜାଣିବାକୁ – ମନରେ ସଠିକ୍‌ଭାବେ ଫୁଲର ରଙ୍ଗର ମାତ୍ରା, ଅଦ୍‌ଭୁତ ଔଜ୍ଜ୍ୱଲ୍ୟ, ଗନ୍ଧର ଯଥାଯଥ ତୀବ୍ରତା, ବକ୍ରତାର ସୌନ୍ଦର୍ଯ୍ୟ ଏବଂ ରୂପର ପରିକଳ୍ପନା ସମ୍ବନ୍ଧେ ମନୋନିବେଶ କରିବାକୁ ତାହାକୁ (ଛାତ୍ରକୁ) ଉତ୍ସାହିତ କରିବା ଉଚିତ । ନିଜର ସ୍ପର୍ଶ ଦ୍ୱାରା ଫୁଲଟିର ଗଠନରୀତି ଓ ଅସାଧାରଣତା ସମ୍ବନ୍ଧରେ ସେ ନିଶ୍ଚିତ ହେବ । ତପ୍‌ରେ ଫୁଲଟିକୁ ଖଣ୍ଡ ଖଣ୍ଡ କରି ଛିଣ୍ଡାଇବାକୁ ହେବ ଏବଂ ପର୍ଯ୍ୟବେକ୍ଷଣର ସମାନ ସାବଧାନତା ସହ ଫୁଲର ଗଠନକୁ ପରୀକ୍ଷା କରାଯିବ । ଏହିସବୁକୁ ବାଧ୍ୟତାମୂଳକ କାର୍ଯ୍ୟର ଚାପା ହିସାବରେ କରିବା ଉଚିତ ନୁହେଁ, କିନ୍ତୁ କରିବାକୁ ହେବ କୌଶଳ ସହିତ ଉପଯୁକ୍ତ ପ୍ରଶ୍ନ ଦ୍ୱାରା ଶିକ୍ଷାର୍ଥୀର ଆଗ୍ରହ ସୃଷ୍ଟି କରିବାର ଲକ୍ଷ୍ୟ ନେଇ ଯାହାକି ତାକୁ ପ୍ରାୟ ତାହାର ଅଜାଣତରେ ଗୋଟିଏ ପରେ ଗୋଟିଏ ଅଂଶ ହୋଇ ସମଗ୍ର ବିଷୟଟିକୁ ଦକ୍ଷତା ସହ ଆୟତ୍ତ କରିନେବା ପର୍ଯ୍ୟନ୍ତ ପର୍ଯ୍ୟବେକ୍ଷଣ ଓ ପରୀକ୍ଷା କରିଚାଲିବା ନିମିତ୍ତ ଆକୃଷ୍ଟ କରିବ ।

ଏହାର ପରବର୍ତ୍ତୀ ଆବଶ୍ୟକୀୟ ଗୁଣାବଳି ହେଉଛି ସ୍ମରଣଶକ୍ତି ଓ ବିଚାରଶକ୍ତି, ଏବଂ ସେସବୁକୁ ଶିକ୍ଷାର୍ଥୀର ଅଜାଣତରେ ଉତ୍ସାହିତ କରିବା ଉଚିତ । ଗୋଟିଏ ପାଠ୍ୟ ବିଷୟକୁ ସ୍ମରଣ ରଖିବା ନିମିତ୍ତ ଛାତ୍ର ତାହାକୁ

ବାରଂବାର ପୁନରାବୃତ୍ତି କରିବା ଅନୁଚିତ । ତାହା ସ୍ମରଣଶକ୍ତିକୁ ତାଲିମ କରିବାର ଏକ ଯାନ୍ତ୍ରିକ, କଷ୍ଟଦାୟକ ଓ ନିର୍ବୋଧ ପନ୍ଥା । ଛାତ୍ର ହସ୍ତରେ ସେହିପ୍ରକାର ଅନ୍ୟ ଏକ ଫୁଲ ଦେବା ଉଚିତ ଏବଂ ସମାନ ଯତ୍ନର ସହ ସେ ସେଥିରେ ମନୋଯୋଗ ଦେବା ଉଚିତ, କିନ୍ତୁ ଦୁଇ ଫୁଲ ମଧ୍ୟରେ ଥିବା ସାମଞ୍ଜସ୍ୟ ଓ ପାର୍ଥକ୍ୟକୁ ଲକ୍ଷ୍ୟ କରିବାର ସ୍ୱୀକୃତ ଉଦ୍ଦେଶ୍ୟ ସହିତ ତାହା କରାଯିବା ଆବଶ୍ୟକ । ପ୍ରତ୍ୟହ ବାରଂବାର ଏହି ଅଭ୍ୟାସ କରିବା ଦ୍ୱାରା ସ୍ମରଣ ଶକ୍ତି ସ୍ୱାଭାବିକ ଭାବରେ ତାଲିମପ୍ରାପ୍ତ ହେବ । କେବଳ ସେତିକି ନୁହେଁ, ଏହାଦ୍ୱାରା ତୁଳନା ଓ ବୈଷମ୍ୟ ପ୍ରଦର୍ଶନର ମାନସିକ କେନ୍ଦ୍ରଗୁଡ଼ିକ ମଧ୍ୟ ବିକଶିତ ହେବେ । ଶିକ୍ଷାର୍ଥୀ ଏକ ଅଭ୍ୟାସରୂପେ ବସ୍ତୁଗୁଡ଼ିକ ମଧ୍ୟରେ ଥିବା ସାମଞ୍ଜସ୍ୟ ଓ ପାର୍ଥକ୍ୟର ପର୍ଯ୍ୟବେକ୍ଷଣ କରିବାକୁ ଆରମ୍ଭ କରିବ । ଏହି ବୃତ୍ତି ଓ ଅଭ୍ୟାସର ପୂର୍ଣ୍ଣ ଅଭିବୃଦ୍ଧି ନିମିତ୍ତ ଶିକ୍ଷାର୍ଥୀକୁ ଉତ୍ସାହିତ କରିବାକୁ ଶିକ୍ଷକ ସମସ୍ତ ପ୍ରକାର ପ୍ରଯତ୍ନ କରିବେ । ଏକହି ସମୟରେ, ବିଭିନ୍ନ ପ୍ରଜାତି (species) ଏବଂ ମହାଜାତି (genus)ର ବିଧିବିଧାନସମୂହ ଶିକ୍ଷାର୍ଥୀର ମନରେ ଉଦୟ ହେବାକୁ ଆରମ୍ଭ କରିବ ଏବଂ ତରୁଣ ବିକାଶଶୀଳ ମନର ଅନୁସରଣ ଓ ତାହାକୁ ପଥପ୍ରଦର୍ଶନ କରିବା ଦ୍ୱାରା ବିଜ୍ଞାନସମ୍ମତ ଅଭ୍ୟାସ ଓ ମନୋବୃତ୍ତି ଏବଂ ବିଜ୍ଞାନସମ୍ମତ ଜ୍ଞାନର ମୌଳିକ ତଥ୍ୟସମୂହକୁ ଅଳ୍ପ ସମୟ ମଧ୍ୟରେ ତାହାର ସ୍ଥାୟୀ ଉପକରଣଗୁଡ଼ିକର ଅଂଶରେ ପରିଣତ କରାଯାଇପାରେ । ବିଭିନ୍ନ ନାମ ଏବଂ ଶୁଷ୍କ ଧରାବନ୍ଧା ଜ୍ଞାନାର୍ଜନ ଯାହାକି ଅନ୍ଧମୁଖସ୍ଥର ପ୍ରାରମ୍ଭ ଏବଂ ଯାହାକୁ ପ୍ରାକୃତିକ ଓ ସତେଜ ଏବଂ କୃତ୍ରିମ ଅଭ୍ୟାସ ଦ୍ୱାରା ନଷ୍ଟଭ୍ରଷ୍ଟ ହୋଇ ନ ଥିବା ସୁସ୍ଥ ମାନବମନ ଘୃଣାକରେ, ତାହାଦ୍ୱାରା ମନକୁ ଭାରାକ୍ରାନ୍ତ ନ କରି ପୁଷ୍ପ, ପତ୍ର, ଗୁଳ୍ମ ଓ ବୃକ୍ଷରାଜିର ପର୍ଯ୍ୟବେକ୍ଷଣ ଓ ତୁଳନା ଦ୍ୱାରା ଉଦ୍ଭିଦବିଦ୍ୟା ସମ୍ବନ୍ଧୀୟ ଜ୍ଞାନର ଭିତ୍ତିସ୍ଥାପନ କରାଯାଇପାରେ । ସେହି ଏକହିଁ ପ୍ରଣାଳୀରେ ନକ୍ଷତ୍ରମାନଙ୍କୁ ପର୍ଯ୍ୟବେକ୍ଷଣ କରି ଜ୍ୟୋତିର୍ବିଜ୍ଞାନ; ମୃତ୍ତିକା, ପ୍ରସ୍ତର ଇତ୍ୟାଦିର ପର୍ଯ୍ୟବେକ୍ଷଣ ଦ୍ୱାରା

ଭୂବିଦ୍ୟା; କୀଟପତଙ୍ଗ ଓ ପଶୁପକ୍ଷୀମାନଙ୍କର ପର୍ଯ୍ୟବେକ୍ଷଣ ଦ୍ୱାରା କୀଟତତ୍ତ୍ୱ ଓ ପ୍ରାଣୀତତ୍ତ୍ୱର ଭିତ୍ତିସ୍ଥାପନ କରାଯାଇପାରେ । ଅଳ୍ପ କିଛିକାଳ ପରେ, କୌଣସି ଧରାବନ୍ଧା ଶିକ୍ଷାଦାନ ବ୍ୟତୀତ କିଂବା ମନ ମଧ୍ୟରେ କୌଣସି ସୂତ୍ର (formula) ବା ପୁସ୍ତକଗତ ଜ୍ଞାନକୁ ଠୁଳ ନ କରି ପରୀକ୍ଷାନିରୀକ୍ଷାର ଆନନ୍ଦଦାୟକ ପର୍ଯ୍ୟବେକ୍ଷଣ ଦ୍ୱାରା ରସାୟନ ବିଦ୍ୟାର ଅଧ୍ୟୟନ ଆରମ୍ଭ କରାଯାଇପାରେ । ଏପରି କୌଣସି ବିଜ୍ଞାନଗତ ବିଷୟ ନାହିଁ ଯାହାକୁ ବିଭିନ୍ନ ଶ୍ରେଣୀର ବସ୍ତୁର ପର୍ଯ୍ୟବେକ୍ଷଣ, ତୁଳନା, ସ୍ମରଣ ଏବଂ ବିଚାର କରିବା ସକାଶେ ବିଭିନ୍ନ ବୃତ୍ତିକୁ ତାଲିମ କରିବା ଦ୍ୱାରା ପୂର୍ଣ୍ଣତଃ ପ୍ରାକୃତିକ ପନ୍ଥାରେ ପ୍ରାଥମିକ ଶିଶୁ ଅବସ୍ଥାରେ ଆୟତ୍ତ କରାଯାଇ ନ ପାରେ । ଏହା ସହଜରେ ଏବଂ ଛାତ୍ରର ମନରେ ଚରମ ଗ୍ରହଣଶୀଳ ଆଗ୍ରହ ସହ ସଂପାଦନ କରାଯାଇପାରେ । ଯଦି ଥରେ ଏହି ଅଭିରୁଚି ସୃଷ୍ଟି କରାଯାଇପାରେ, ତେବେ ଛାତ୍ର ତାହାର ଅବସର ସମୟରେ ତରୁଣସୁଲଭ ଉତ୍ସାହ ସହିତ ଏହାକୁ ଅନୁସରଣ କରିବ ବୋଲି ଆସ୍ଥା ରଖାଯାଇପାରେ । ପରବର୍ତ୍ତୀ କାଳରେ ତାହାକୁ ଶ୍ରେଣୀଗୃହ ମଧ୍ୟରେ ସବୁକିଛି ଶିକ୍ଷା ଦେବାର ଆବଶ୍ୟକତାକୁ ଏହା ଦୂର କରିପାରେ ।

ଅନ୍ୟାନ୍ୟ ବୃତ୍ତି ସହ ସ୍ୱାଭାବିକଭାବେ ବିଚାରଶକ୍ତିର ତାଲିମ ଦିଆଯାଇପାରେ । ପ୍ରତ୍ୟେକ ପଦକ୍ଷେପରେ ଛାତ୍ରକୁ ସ୍ଥିର କରିବାକୁ ହେବ ଯେ ଯଥାର୍ଥ ଧାରଣା, ପରିମାପ, ରଙ୍ଗ, ଶବ୍ଦ ଓ ଗନ୍ଧର ପସନ୍ଦ କ'ଣ ଏବଂ ଅଯଥାର୍ଥ କ'ଣ । ଅଧିକାଂଶ ସମୟରେ ଯେଉଁ ବିଚାର ଓ ପାର୍ଥକ୍ୟନିରୂପଣ କରାଯିବ ତାହା ଅତିମାତ୍ରାରେ ସୂକ୍ଷ୍ମ ଓ ସୁନ୍ଦର ହେବାକୁ ହେବ । ପ୍ରଥମେ ଅନେକ ଭୁଲଭ୍ରାନ୍ତି ହେବ, କିନ୍ତୁ ଶିକ୍ଷାର୍ଥୀକୁ ଶିଖାଇବାକୁ ହେବ ଯେ ପରିଣାମ ପ୍ରତି ଆସକ୍ତ ନ ହୋଇ ନିଜର ବିଚାର ଉପରେ ଆସ୍ଥା ରଖିବାକୁ ହେବ । ଦେଖାଯିବ ଯେ, ଯଥାର୍ଥ ବିଚାର ନିମିତ୍ତ ଅଭୀପ୍ସା ବା ଆହ୍ୱାନ ଅନୁଯାୟୀ ତାହା ଶୀଘ୍ର ଆସି ଉପସ୍ଥିତ ହେବ; ତାହା ସମସ୍ତ

ତ୍ରୁଟିକୁ ସ୍ପଷ୍ଟତଃ ଜାଣିପାରିବ ଏବଂ ସଠିକ୍ ଓ ପୁଙ୍ଖାନୁପୁଙ୍ଖ ଭାବରେ ବିଚାର କରିବାକୁ ଆରମ୍ଭ କରିବ । ଶ୍ରେଷ୍ଠ ପନ୍ଥା ହେଲା ଅନ୍ୟମାନଙ୍କ ବିଚାର ସହିତ ନିଜ ବିଚାରକୁ ତୁଳନା କରିବାରେ ଅଭ୍ୟସ୍ତ ହେବା । ଯେତେବେଳେ ଛାତ୍ରର କୌଣସି ଭୁଲ ହେବ, ସର୍ବପ୍ରଥମେ ତାକୁ ତାହା ଜଣାଇଦେବାକୁ ହେବ ଯେ ସେ କେତେଦୂର ଠିକ୍ ଥିଲା ଏବଂ କେଉଁ କାରଣରୁ ସେହି ଭୁଲ୍ ଘଟିଲା; ତା'ପରେ ନିଜର ସେହି ଠିକ୍ ଏବଂ ଭୁଲ୍‌ଗୁଡ଼ିକୁ ଲକ୍ଷ୍ୟ କରିବା ନିମିତ୍ତ ଛାତ୍ରକୁ ଉତ୍ସାହିତ କରିବାକୁ ହେବ । ଯେତେଥର ତାହାର ବିଚାର ଠିକ୍ ହେବ, ସେତେଥର ସେଥିପ୍ରତି ସ୍ପଷ୍ଟତଃ ଏବଂ ଉତ୍ସାହର ସହିତ ତାହାର ଦୃଷ୍ଟିକୁ ଆକର୍ଷଣ କରିବାକୁ ହେବ ଯାହା ଫଳରେ ସେଥିରେ ତା'ର ଦୃଢ଼ ବିଶ୍ୱାସ ଜାତ ହେବ ।

ତୁଳନା କରିବା ତଥା ବୈଷମ୍ୟ ପ୍ରଦର୍ଶନ କରିବା ସମୟରେ ଅନ୍ୟ ଯେଉଁ ଏକ କେନ୍ଦ୍ର ନିଶ୍ଚିତରୂପେ ବିକଶିତ ହେବ, ତାହା ହେଲା ଆଂଶିକ ସାଦୃଶ୍ୟନିର୍ଦ୍ଧାରଣର କେନ୍ଦ୍ର । ଶିକ୍ଷାର୍ଥୀ ଅପରିହାର୍ଯ୍ୟରୂପେ ସାଦୃଶ୍ୟଗୁଡ଼ିକୁ ଗ୍ରହଣ କରିବ ଏବଂ ସଦୃଶ ବସ୍ତୁମାନଙ୍କ ମଧ୍ୟସ୍ଥ ସାଦୃଶ୍ୟ ସମ୍ବନ୍ଧେ ଯୁକ୍ତି କରିବ । ଏହି ବୃତ୍ତିଟିର ସୀମିତତା ଓ ଭ୍ରାନ୍ତି ଲକ୍ଷ୍ୟ କରିବା ସଙ୍ଗେ ସଙ୍ଗେ ଏହି ବୃତ୍ତିଟିକୁ ବ୍ୟବହାର କରିବା ନିମିତ୍ତ ଛାତ୍ରକୁ ଉତ୍ସାହିତ କରିବାକୁ ହେବ । ଏହି ଭାବରେ ଛାତ୍ର ଯଥାର୍ଥ ସାଦୃଶ୍ୟନିର୍ଦ୍ଧାରଣର ଅଭ୍ୟାସ ସୃଷ୍ଟି କରିବାକୁ ତାଲିମପ୍ରାପ୍ତ ହେବ ଯାହାକି ଜ୍ଞାନାର୍ଜନରେ ଏକ ଅତ୍ୟାବଶ୍ୟକ ସହାୟକ ।

ପ୍ରତ୍ୟକ୍ଷ ଯୁକ୍ତି କରିବାର ଶକ୍ତି ବ୍ୟତୀତ ଅନ୍ୟ ଯେଉଁ ବୃତ୍ତିଟିକୁ ଆମେ ଏପର୍ଯ୍ୟନ୍ତ ବାଦ୍ ଦେଇଛୁ ତାହା ହେଉଛି କଳ୍ପନାଶକ୍ତି । ଏହା ଏକ ବିଶେଷ ଗୁରୁତ୍ୱପୂର୍ଣ୍ଣ ଏବଂ ଅତ୍ୟାବଶ୍ୟକ ଉପକରଣ । ଏହାକୁ ତିନି ପ୍ରକାର କାର୍ଯ୍ୟରେ ବିଭକ୍ତ କରାଯାଇପାରେ । ମାନସିକ ଚିତ୍ରକଳ୍ପର ଗଠନ; ଚିନ୍ତା ଓ ଚିତ୍ରକଳ୍ପ ଆଦିର ସୃଷ୍ଟି କରିବାର ଶକ୍ତି ଏବଂ ବର୍ତ୍ତମାନ ଉପସ୍ଥିତ ରହିଥିବା ଚିନ୍ତା ଓ ଚିତ୍ରକଳ୍ପ ଆଦିର ଅନୁକରଣ ବା ନୂତନ ସଂଯୋଗ ଓ ସମଷ୍ଟୀକରଣ; ବିଭିନ୍ନ ବସ୍ତୁରେ ଅନ୍ତର୍ନିହିତ ଆତ୍ମସ୍ୱରୂପର, ସୌନ୍ଦର୍ଯ୍ୟର, ମନୋହାରିତାର

ମହାନତାର ପ୍ରଚ୍ଛନ୍ନ ଇଙ୍ଗିତର ଏବଂ ଜଗଦ୍‌ବ୍ୟାପୀ ଆବେଗର ଓ ଆଧ୍ୟାତ୍ମିକ ଜୀବନର ସମାଦର । ବୃତ୍ତିସମୂହର ତାଲିମ ଯାହା ବାହ୍ୟ ବସ୍ତୁର ପର୍ଯ୍ୟବେକ୍ଷଣ ଓ ତୁଳନା କରେ, ତାହା ଯେପରି ଗୁରୁତ୍ୱପୂର୍ଣ୍ଣ ଏହା ମଧ୍ୟ ସବୁପ୍ରକାରେ ସେହିପରି ଗୁରୁତ୍ୱପୂର୍ଣ୍ଣ । କିନ୍ତୁ ତାହା ଏକ ସ୍ୱତନ୍ତ୍ର ଓ ପୂର୍ଣ୍ଣତର ଅନୁଶୀଳନ ଦାବି କରେ ।

ମାନସିକ ବୃତ୍ତିଗୁଡ଼ିକ ପ୍ରଥମେ ବିଭିନ୍ନ ବସ୍ତୁ ଉପରେ ପ୍ରଯୋଜ୍ୟ ହେବା ଆବଶ୍ୟକ, ତତ୍ପରେ ବିଭିନ୍ନ ଭାଷା ଓ ଭାବ ଉପରେ ତାହାର ପ୍ରୟୋଗ କରାଯିବା ଉଚିତ । ଭାଷା ସହିତ ଆମର ବ୍ୟବହାରରେ ଅତ୍ୟଧିକ ଉଦାସୀନତା ପ୍ରଦର୍ଶନ ଏବଂ କଥାବାର୍ତ୍ତା ନିମିତ୍ତ ଏକ ସୌନ୍ଦର୍ଯ୍ୟବୋଧର ଅଭାବହିଁ ବୁଦ୍ଧିକୁ ଦୁର୍ବଳ କରିପକାଏ ଏବଂ ଏହାର କାର୍ଯ୍ୟକାରୀ ସତ୍ୟ ଓ ସୌନ୍ଦର୍ଯ୍ୟକୁ ସୀମିତ କରେ । ଶବ୍ଦର ବିନ୍ୟାସପ୍ରଣାଳୀ, ଉଚ୍ଚାରଣ ଓ ଭାବକୁ ସମ୍ୟକ୍ ରୂପେ ଲକ୍ଷ୍ୟ କରିବାକୁ ମନ ପ୍ରଥମେ ଅଭ୍ୟସ୍ତ ହେବା ଉଚିତ; ତତ୍ପରେ ସାଦୃଶ୍ୟ ଓ ପାର୍ଥକ୍ୟ ଦୃଷ୍ଟିରୁ ଅନ୍ୟାନ୍ୟ ଶବ୍ଦର ସଦୃଶ ବିନ୍ୟାସପ୍ରଣାଳୀ ସହିତ ତାହାର ବିନ୍ୟାସପ୍ରଣାଳୀକୁ ତୁଳନା କରିବାକୁ ହେବ, ଏହିଭାବେ ବ୍ୟାକରଣଗତ ବୋଧର ଭିତ୍ତି ଗଠନ କରିବାକୁ ହେବ । ତତ୍ପରେ ବିଭିନ୍ନ ସଦୃଶଶବ୍ଦଗୁଡ଼ିକର ଭାବର ସୁନ୍ଦର ଓ ସୂକ୍ଷ୍ମ ପରିବର୍ତ୍ତନ ମଧ୍ୟରେ ଏବଂ ବିଭିନ୍ନ ବାକ୍ୟର ଗଠନ ଓ ଛନ୍ଦ ମଧ୍ୟରେ ପାର୍ଥକ୍ୟ ନିର୍ଦ୍ଧାରଣ କରିବାକୁ ହେବ ଏବଂ ଏହିରୂପେ ସାହିତ୍ୟିକ ଓ ବାକ୍ୟଗଠନଗତ ବୃତ୍ତିର ଭିତ୍ତି ଗଠନ କରିବାକୁ ହେବ । ଏହିସବୁକୁ କୌଣସି ଧରାବନ୍ଧା ନିୟମରେ ନ କରି ଛାତ୍ରର କୌତୂହଳ ଓ ଆଗ୍ରହ ଆକର୍ଷଣ କରି ଏବଂ କୌଣସି ନିର୍ଦ୍ଦିଷ୍ଟ ଶିକ୍ଷାଦାନ ବା ସୂତ୍ର ଘୋଷିବାର ପ୍ରଣାଳୀକୁ ଅନୁସରଣ ନ କରି କରିବାକୁ ହେବ । ଯଥାର୍ଥ ଜ୍ଞାନ ତାହାର ଭିତ୍ତି ପ୍ରତିଷ୍ଠା କରେ ଅଧ୍ୟାତ୍ମ ବସ୍ତୁ ବା 'ଅର୍ଥ'ରେ ଏବଂ କେବଳ ଯେତେବେଳେ ଏହା ଅଧ୍ୟାତ୍ମ ବସ୍ତୁକୁ ଆୟତ୍ତାଧୀନ କରେ, ସେତେବେଳେହିଁ ଏହାର ଜ୍ଞାପନ ବା ଅଭିବ୍ୟକ୍ତି ରୂପାୟିତ ହେବାକୁ ଆରମ୍ଭ କରେ ।

(୮)

## ଯୁକ୍ତିସଙ୍ଗତ ବୃତ୍ତିର ତାଲିମ

ଯୁକ୍ତିସଙ୍ଗତ ବିଚାରବୁଦ୍ଧିର ତାଲିମ ନିଶ୍ଚିତରୂପେ ସେହିସବୁ ଶକ୍ତିର ତାଲିମକୁ ଅନୁସରଣ କରିବା ଆବଶ୍ୟକ ଯେଉଁସବୁ ଶକ୍ତି ସେହିସବୁ ବିଷୟବସ୍ତୁକୁ ସଂଗ୍ରହ କରେ ଯାହାକୁ ନେଇ ଯୁକ୍ତିସଙ୍ଗତ ବିଚାରବୁଦ୍ଧି କାର୍ଯ୍ୟ କରିବା ଆବଶ୍ୟକ । କେବଳ ସେତିକି ନୁହେଁ, ମନ ବିଭିନ୍ନ ଭାବଗୁଡ଼ିକ ସହ ସଫଳ ଭାବେ ବ୍ୟବହାର କରିବା ପୂର୍ବରୁ, ତାହାକୁ ଶବ୍ଦଗୁଡ଼ିକ ସହ ବ୍ୟବହାର କରୁଥିବା ବୃତ୍ତିର କେତେକ ପରିମାଣରେ ବିକାଶ ଘଟାଇବାକୁ ହେବ । ପ୍ରଶ୍ନ ହେଉଛି ଥରେ ଏହି ପ୍ରାଥମିକ କାର୍ଯ୍ୟ କରାଗଲା ପରେ, ପ୍ରତିଜ୍ଞା (premises) ଗୁଡ଼ିକୁ ନେଇ ଠିକ୍ ଭାବେ ଚିନ୍ତା କରିବା ପାଇଁ କେଉଁ ସର୍ବୋତ୍ତମ ଉପାୟରେ ଶିଶୁକୁ ଶିକ୍ଷା ଦେବାକୁ ହେବ । କାରଣ ଏହି ପ୍ରତିଜ୍ଞାଗୁଡ଼ିକ ବ୍ୟତୀତ ଯୁକ୍ତିସଙ୍ଗତ ବୁଦ୍ଧିବୃତ୍ତି ଅଗ୍ରସର ହୋଇପାରିବ ନାହିଁ । ହୁଏତ ଏହା କୌଣସି ତଥ୍ୟରୁ ଅନ୍ୟ କୌଣସି ସିଦ୍ଧାନ୍ତକୁ ବା ପୂର୍ବରୁ ଗଠିତ ସିଦ୍ଧାନ୍ତରୁ ଏକ ନୂତନ ସିଦ୍ଧାନ୍ତକୁ ଅଥବା କୌଣସି ଗୋଟିଏ ତଥ୍ୟରୁ ଅନ୍ୟ ତଥ୍ୟକୁ ଅନୁମାନ କରେ । ଏହା ହୁଏତ କୌଣସି ସାଧାରଣ ନିୟମରେ ଉପନୀତ କରାଏ (induce) ବା ସିଦ୍ଧାନ୍ତ କରେ(deduce) ବା କେବଳ ଅନୁମାନ କରେ(infer) । ଉଦାହରଣସ୍ୱରୂପ, ମୁଁ ଦିନ ପରେ ଦିନ ସୂର୍ଯ୍ୟୋଦୟ ଦେଖେ, ତହିଁରୁ ମୁଁ ସିଦ୍ଧାନ୍ତ କରେ ଯେ ଏକ ଅଳ୍ପ ବା ବେଶୀ ମଧ୍ୟବର୍ତ୍ତୀକାଳୀନ ଅନ୍ଧକାର ପରେ ଏକ ନିୟମ ହିସାବରେ ପ୍ରତ୍ୟହ ସୂର୍ଯ୍ୟୋଦୟ ଘଟେ । ମୁଁ ନିଶ୍ଚିତ କରିସାରିଛି ଯେ ଯେଉଁଠାରେ ଧୂଆଁ ଅଛି, ସେଠାରେ ନିଆଁ ଅଛି । ବାସ୍ତବ ଘଟଣାର ପର୍ଯ୍ୟବେକ୍ଷଣରୁ ମୁଁ ଏହି

ସାଧାରଣ ନିୟମରେ ଉପନୀତ ହୋଇଛି । ମୁଁ ସିଦ୍ଧାନ୍ତ କରେ ଯେ ଧୂଆଁର ଏକ ନିର୍ଦ୍ଦିଷ୍ଟ ଅବସ୍ଥାରେ ତାହା ପଛରେ ନିଆଁ ଥାଏ । ମୁଁ ଅନୁମାନ କରେ ଯେ କୌଣସି ବ୍ୟକ୍ତି କୌଣସି ଏକ ନିର୍ଦ୍ଦିଷ୍ଟ ପରିସ୍ଥିତିରେ କୌଣସି ନା କୌଣସି କାରଣରୁ ସେହି ନିଆଁହିଁ ଜାଳିଥିବ । କିନ୍ତୁ ମୁଁ ଏହା ସିଦ୍ଧାନ୍ତ କରିପାରିବି ନାହିଁ ଯେହେତୁ ନିଆଁ ସର୍ବଦା ମନୁଷ୍ୟ ଦ୍ୱାରା ଜଳାଯାଇ ଉତ୍ପନ୍ନ ହୋଇ ନ ଥାଏ; ଏହା କୌଣସି ଆଗ୍ନେୟଗିରିର ଅଗ୍ନ୍ୟୁତ୍ପାତ ଫଳରେ ବା ବିଦ୍ୟୁତ୍-ସଂଘର୍ଷ ଫଳରେ ବା ନିକଟବର୍ତ୍ତୀ କୌଣସି ପ୍ରକାର ସଂଘର୍ଷ ଫଳରେ ଉତ୍ପନ୍ନ ଅଗ୍ନିକଣାରୁ ଜାତ ହୋଇଥାଇପାରେ ।

କୌଣସି ଯୁକ୍ତିକୁ ସଂଶୋଧନ କରିବା ନିମିତ୍ତ ତିନୋଟି ଉପାଦାନ ଆବଶ୍ୟକ : ପ୍ରଥମତଃ ଯେଉଁ ଘଟଣା ବା ସିଦ୍ଧାନ୍ତରୁ ମୁଁ ଆରମ୍ଭ କରେ ତାହାର ସଠିକତା; ଦ୍ୱିତୀୟତଃ ଯେଉଁ ସ୍ୱୀକୃତ ସତ୍ୟରୁ ମୁଁ ଆରମ୍ଭ କରେ ତାହାର ପରିପୂର୍ଣ୍ଣତା ତଥା ସଠିକତା; ତୃତୀୟତଃ ସମାନ ଘଟଣା ବା ତଥ୍ୟରୁ ଅନ୍ୟ ସମ୍ଭବ ବା ଅସମ୍ଭବ ସିଦ୍ଧାନ୍ତଗୁଡ଼ିକର ପରିତ୍ୟାଗ । ଯୁକ୍ତିସଙ୍ଗତ କାରଣଗୁଡ଼ିକରେ ଭ୍ରାନ୍ତି ଉତ୍ପନ୍ନ ହୋଇପାରେ ଆଂଶିକଭାବେ ଏହି ସର୍ତ୍ତଗୁଡ଼ିକର ଦୃଢ଼ତାରେ ପରିହାର୍ଯ୍ୟ ଅବହେଳା ବା କୋହଳତା ଫଳରେ, ଆଂଶିକଭାବେ ସମସ୍ତ ତଥ୍ୟର ସଠିକତା ଲାଭ କରିବାର ଅସୁବିଧା ହେତୁ, ଆହୁରି ବିଶେଷଭାବେ, ସମସ୍ତ ତଥ୍ୟକୁ ପୂର୍ଣ୍ଣତଃ ଲାଭ କରିବାର ଅସୁବିଧା ହେତୁ, ଏବଂ ସବୁଠାରୁ ଅଧିକ ଭାବରେ ଯେଉଁ ଗୋଟିଏ ସିଦ୍ଧାନ୍ତ ଯଥାର୍ଥରେ ସତ୍ୟ ତାହା ବ୍ୟତୀତ ଅନ୍ୟ ସମ୍ଭାବ୍ୟ ସିଦ୍ଧାନ୍ତଗୁଡ଼ିକର ପରିତ୍ୟାଗର ଚରମ ଅସୁବିଧା ହେତୁ । ଏକ ପ୍ରଭାବଶାଳୀ ନିୟମ ହିସାବରେ ମାଧ୍ୟାକର୍ଷଣ ସୂତ୍ରର ସାର୍ବଜନୀନତା ଅପେକ୍ଷା ଅନ୍ୟ କୌଣସି ତଥ୍ୟ ଅଧିକ ସଂପୂର୍ଣ୍ଣ ଭାବରେ ପ୍ରତିଷ୍ଠିତ ବୋଲି ଅନୁମିତ ହୁଏ ନାହିଁ, ତଥାପି ଏହା ସହିତ ଅସମଞ୍ଜସ ଗୋଟିଏ ମାତ୍ର ନୂତନ ତଥ୍ୟ ଏହି ଅନୁମିତ ସାର୍ବଜନୀନତାକୁ ବିପର୍ଯ୍ୟସ୍ତ କରିଦେବ ଏବଂ ଏତାଦୃଶ ତଥ୍ୟସମୂହ ବିଦ୍ୟମାନ । ଯାହା

ହେଉନା କାହିଁକି, ବିଶେଷ ସତର୍କତା ଦ୍ୱାରା ଭୁଲ୍‌ଭ୍ରାନ୍ତିଗୁଡ଼ିକୁ ନ୍ୟୂନତମ ପରିମାଣକୁ କମାଇ ଦିଆଯାଇପାରେ ।

ଯୁକ୍ତିସଙ୍ଗତ ବୁଦ୍ଧିବୃତ୍ତିକୁ ତାଲିମ କରିବାର ସାଧାରଣ ଅଭ୍ୟାସ ହେଲା ଯୁକ୍ତିବିଜ୍ଞାନର ଶିକ୍ଷା ଦେବା । ଏହା ହେଲା ଅତିପ୍ରଚଳିତ ଭ୍ରାନ୍ତିର ଏକ ଉଦାହରଣ ଯାହାଦ୍ୱାରା ପ୍ରତ୍ୟକ୍ଷ ବିଷୟବସ୍ତୁର ଶିକ୍ଷା ପରିବର୍ତ୍ତେ ବିଷୟବସ୍ତୁର ପୁସ୍ତକଗତ ଜ୍ଞାନହିଁ ଶିକ୍ଷାର ଲକ୍ଷ୍ୟରୂପେ ଗ୍ରହଣ କରାଯାଏ । ଯୁକ୍ତି ଓ ଏହାର ଭ୍ରାନ୍ତି ସମ୍ବନ୍ଧରେ ଅଭିଜ୍ଞତା ମନକୁ ଦିଆଯିବା ଉଚିତ ଏବଂ ଏସବୁ ସ୍ୱତଃ କିପରି କାର୍ଯ୍ୟ କରନ୍ତି, ତାହାହିଁ ପର୍ଯ୍ୟବେକ୍ଷଣ ଦ୍ୱାରା ଶିକ୍ଷା ଦେବା ଉଚିତ । ଏହି ଶିକ୍ଷା ଉଦାହରଣରୁ ଆରମ୍ଭ କରି ସୂତ୍ରକୁ (rule) ଏବଂ ସୂତ୍ରଗୁଡ଼ିକର ସମ୍ମିଳିତ ସୁସାମଞ୍ଜସ୍ୟରୁ ଆରମ୍ଭ କରି ବିଷୟବସ୍ତୁର ଆନୁଷ୍ଠାନିକ ବିଜ୍ଞାନ-ଶିକ୍ଷାକୁ ଅଗ୍ରସର ହେବା ଉଚିତ, କିନ୍ତୁ ଆନୁଷ୍ଠାନିକ ବିଜ୍ଞାନରୁ ଆରମ୍ଭ କରି ସୂତ୍ରକୁ ଏବଂ ସୂତ୍ରରୁ ଆରମ୍ଭ କରି ଉଦାହରଣକୁ ଅଗ୍ରସର ହେବା ଉଚିତ ନୁହେଁ ।

ପ୍ରଥମ ପଦକ୍ଷେପ ହେଲା, କାରଣ ଓ ପରିଣାମକୁ ଚିହ୍ନିତ କରି ତଥ୍ୟସବୁରୁ ସିଦ୍ଧାନ୍ତସବୁ ଗ୍ରହଣ କରିବାରେ ସ୍ୱୟଂ ତରୁଣ ମନକୁ ଆଗ୍ରହଶୀଳ କରାଇବା । ତା'ପରେ ଏହାର ସଫଳତା ଓ ବିଫଳତା ଏବଂ ସଫଳତା ଓ ବିଫଳତାର କାରଣସବୁକୁ ଲକ୍ଷ୍ୟ କରିବା ନିମିତ୍ତ ଏହାକୁ ବାଟ ଦେଖାଇବାକୁ ହେବ; ତଥ୍ୟର ଯେଉଁ ଅଯଥାର୍ଥତାରୁ ତାହା ଆରମ୍ଭ କଲା, ଯେଉଁ ଅପରିମିତ ତଥ୍ୟସବୁରୁ ସିଦ୍ଧାନ୍ତ ଗ୍ରହଣ କରିବାରେ ଏହା ଚଞ୍ଚଳତା ଦେଖାଇଲା, ଏକ ସିଦ୍ଧାନ୍ତ ଯାହା ଅସମ୍ଭବ, ଯାହା ସ୍ୱୀକୃତ ସତ୍ୟ ଦ୍ୱାରା ଆଂଶିକଭାବେ ସମର୍ଥିତ ବା ସନ୍ଦେହୋନ୍ମୁଖ, ତାହାକୁ ଗ୍ରହଣ କରିବାରେ ଏହା ଯେଉଁ ଅସାବଧାନତା ଦେଖାଇଲା, ଯେଉଁ ଆଳସ୍ୟ ବା ପୂର୍ବସଂସ୍କାର ଅନ୍ୟ ବ୍ୟାଖ୍ୟା ବା ସିଦ୍ଧାନ୍ତସବୁକୁ ବିଚାର କରିବାରେ ଅନିଚ୍ଛା ପ୍ରକାଶ କଲା । ଏହି ପନ୍ଥାରେ ଭ୍ରାନ୍ତିର ସମ୍ଭାବନାକୁ ନ୍ୟୂନତମ କରି,

ମାନୁଷୀ ଯୁକ୍ତିବିଜ୍ଞାନ ଯେତିକିମାତ୍ର ଭ୍ରାନ୍ତିକୁ ପ୍ରଶ୍ରୟ ଦେବାକୁ ଅନୁମତି ଦେଇପାରେ ସେତିକିକୁ ବାଦ୍‌ଦେଇ ଅନ୍ୟସବୁକୁ ସଠିକ୍‌ଭାବେ ବିଚାରପୂର୍ବକ ସିଦ୍ଧାନ୍ତ କରିବା ପାଇଁ ମନକୁ ତାଲିମ କରାଯାଇପାରେ । ପ୍ରଚଳିତ ଯୁକ୍ତିବିଜ୍ଞାନର ଶିକ୍ଷାକୁ ଅତି ଅଳ୍ପ କାଳ ମଧ୍ୟରେ ସହଜରେ ଆୟତ୍ତ କରିପାରିବା ପର୍ଯ୍ୟନ୍ତ ଏକ ପରବର୍ତ୍ତୀ କାଳକୁ ସ୍ଥଗିତ ରଖାଯାଇପାରେ, ଯେହେତୁ ସେତେବେଳେ ଏହା କଷ୍ଟକର ନ ହୋଇ ଛାତ୍ର ନିମିତ୍ତ ହୋଇଉଠିବ ପୂର୍ଣ୍ଣତଃ ସୁପରିଜ୍ଞାତ ଏକ କଳାବିଦ୍ୟାକୁ କେବଳ ପ୍ରଣାଳୀବଦ୍ଧ କରିବା ।

# ବୁଦ୍ଧିଗତ ଶିକ୍ଷା

ଶ୍ରୀଅରବିନ୍ଦଙ୍କ ପୁରାତନ ପାଣ୍ଡୁଲିପିଗୁଡ଼ିକ ମଧ୍ୟରୁ (ବରୋଦାରେ ଥିବା ସମୟରେ : ୧୮୯୩-୧୯୦୬) ଏହି ଅସଂପୂର୍ଣ୍ଣ ପ୍ରବନ୍ଧଟି ଆବିଷ୍କୃତ ହୋଇଥିଲା । ପ୍ରବନ୍ଧଟିର ପ୍ରଥମ ବାକ୍ୟରୁ ସ୍ପଷ୍ଟ ଜଣାପଡ଼େ ଯେ ଏହି ଅନୁକ୍ରମରେ ଅନ୍ୟ କେତେକ ପ୍ରବନ୍ଧ ଲିଖିତ ହୋଇଥିଲା । କିନ୍ତୁ ଏପର୍ଯ୍ୟନ୍ତ ସେଗୁଡ଼ିକର କୌଣସି ସନ୍ଧାନ ମିଳି ନାହିଁ । "Sri Aurobindo and the Mother on Education" ପୁସ୍ତକରେ ପ୍ରକାଶିତ "Education Intellectual" ନାମକ ଅସଂପୂର୍ଣ୍ଣ ପ୍ରବନ୍ଧର ଏହି ଓଡ଼ିଆ ଅନୁବାଦ ଏଠାରେ ଉପସ୍ଥାପିତ କରାଗଲା ।

ପ୍ରଥମେ ଏହି ଅନୁବାଦ 'ନବଜ୍ୟୋତି' ପତ୍ରିକାର ନଭେମ୍ବର, ୧୯୭୮ ଏବଂ ଫେବ୍ରୁଆରି-ଏପ୍ରିଲ, ୧୯୭୯ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ଏଠାରେ କେତେକ ପରିବର୍ତ୍ତନ ସହ ତାହା ପ୍ରକାଶିତ ହୋଇଛି ।

# ବୁଦ୍ଧିଗତ ଶିକ୍ଷା

ଯେଉଁ ବୁଦ୍ଧିଗତ ଶିକ୍ଷା ଶାରୀରିକ ତାଲିମ ଓ ଚରିତ୍ରର ନୈତିକ ଉନ୍ନତି ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ନ ହେଲେ ବି ନିଶ୍ଚିତ ଭାବରେ ଏକ ବୃହତ୍ତର ଓ କଠିନତର ବିଷୟ, ଆମେ ବର୍ତ୍ତମାନ ଶିକ୍ଷାର ସେହି ଅଂଶ ଉପରେ ଆଲୋଚନା କରିବା । ଭାରତୀୟ ବିଶ୍ୱବିଦ୍ୟାଳୟର ଶିକ୍ଷାବ୍ୟବସ୍ଥା ନିଜକୁ ସଂପୂର୍ଣ୍ଣଭାବେ ଶିକ୍ଷାର ଏହି ଶାଖା ମଧ୍ୟରେ ସୀମାବଦ୍ଧ କରି ରଖିଛି ଏବଂ ଅନେକେ ଭାବୁଥିବେ ଯେ ଏହା ଶିକ୍ଷାର ଯେଉଁ ଏକମାତ୍ର ଶାଖାକୁ ବାଛି ନେଇଛି ତାହାର ସେହି ସସୀମତା ଉପରେ ଶକ୍ତିର ଏକାଗ୍ରତାକୁ ନିଶ୍ଚୟ ବିଶେଷ ଦକ୍ଷତା ଓ ପୁଙ୍ଖାନୁପୁଙ୍ଖତା ସହ ପ୍ରୟୋଗ କରାଯାଉଥିବ । କିନ୍ତୁ ଦୁର୍ଭାଗ୍ୟବଶତଃ ବିଷୟଟି ଏହିପରି ନୁହେଁ । ଏହି ଶିକ୍ଷାପଦ୍ଧତି ଯେଉଁ ଶାରୀରିକ ତାଲିମର ବ୍ୟବସ୍ଥା କରେ ତାହାକୁ ଯଦି କୁହାଯାଏ ନିକୃଷ୍ଟ ଏବଂ ଯେଉଁ ନୈତିକ ତାଲିମ ଦିଆଯାଏ ତାହା ପ୍ରାୟ କିଛି ନୁହେଁ ବା ଶୂନ୍ୟ, ତେବେ ଦିଆଯାଉଥିବା ମାନସିକ ତାଲିମକୁ କୁହାଯିବ ପରିମାଣରେ ସ୍ୱଳ୍ପ ଏବଂ ଗୁଣରେ ମୂଲ୍ୟହୀନ । ସାଧାରଣତଃ ଲୋକେ କହନ୍ତି ଯେ, ଯେହେତୁ ଚାକିରି ବା ଜୀବନ-ନିର୍ବାହର ବୃତ୍ତିକୁ ଶିକ୍ଷାର ଉଦ୍ଦେଶ୍ୟରୂପେ ରଖାଯାଇଛି, ତେଣୁ ଅବସ୍ଥା ଏହିପରିହିଁ ହୋଇଛି । ମୋର ବିଶ୍ୱାସ ହୁଏ ଯେ ଏହା ଏକ ମସ୍ତବଡ଼ ଭ୍ରାନ୍ତି । ଚାକିରି କରିବାକୁ ହେଲେ କୌଣସି ଡିଗ୍ରୀ ଆବଶ୍ୟକ ଏବଂ ତେଣୁ ଲୋକେ ଡିଗ୍ରୀ ପାଇବାକୁ ଚେଷ୍ଟା କରନ୍ତି । ଭଲ କଥା ! ତେବେ ଏହା ସେହିପରିହିଁ ଥାଉ । କିନ୍ତୁ ଜଣେ ଛାତ୍ରକୁ ଡିଗ୍ରୀ ଲାଭ କରିବାକୁ ହେଲେ, ଆମକୁ ଏକଥା ଏକାନ୍ତ ଆବଶ୍ୟକ ବୋଲି ଦେଖିବାକୁ ହେବ ଯେ ତାକୁ ଉତ୍ତମ ଶିକ୍ଷା ଲାଭ କରିବାକୁ ହେବ । ଏହି ଉଦ୍ଦେଶ୍ୟ ଲାଭ କରିବା ନିମିତ୍ତ ଯଦି ଏକ ମୂଲ୍ୟହୀନ ଶିକ୍ଷାହିଁ ଯଥେଷ୍ଟ ହୁଏ, ଏବଂ ଏକ ଉତ୍ତମ ଶିକ୍ଷାର

ଏକାନ୍ତ ଆବଶ୍ୟକତା ନ ରହେ, ତେବେ ଏହା ସ୍ପଷ୍ଟ ଯେ ଛାତ୍ର ଯାହାକୁ ଅନାବଶ୍ୟକ ବୋଲି ମନେକରେ ତାହା ଲାଭ କରିବା ନିମିତ୍ତ ନିଜ ଉପରକୁ କୌଣସି ବିଶେଷ ଅସୁବିଧା ଓ ଶକ୍ତି-ପ୍ରୟୋଗରେ ପରିବର୍ତ୍ତନ ନେଇ ଆସିବାକୁ ଚାହିଁବ ନାହିଁ । କିନ୍ତୁ ଏହି ଅବସ୍ଥାକୁ ବଦଳାଇ ଦିଅ, ସଂସ୍କୃତି ଓ ଯଥାର୍ଥ ବିଜ୍ଞାନକୁ ଏକାନ୍ତ ଆବଶ୍ୟକ ବୋଲି ସ୍ୱୀକାର କର, ତେବେ ଦେଖାଯିବ ଯେ ଏହି ଏକହିଁ ଆକର୍ଷଣୀୟ ଉଦ୍ଦେଶ୍ୟ, ଯାହା ବର୍ତ୍ତମାନ ତାକୁ ଏକ ମନ୍ଦ ଶିକ୍ଷାରେ ସନ୍ତୁଷ୍ଟ ରହିବାକୁ ପ୍ରବର୍ତ୍ତାଏ, ତାହା ତାକୁ ସଂସ୍କୃତି ଏବଂ ଯଥାର୍ଥ ବିଜ୍ଞାନ ଦିଗରେ ପ୍ରଚେଷ୍ଟା ନିମିତ୍ତ ବାଧ କରିବ । ବ୍ୟାବହାରିକ ଜୀବନର ମନୁଷ୍ୟରୂପେ ଆମ୍ଭେମାନେ ଜାଣି ରଖିବା ଆବଶ୍ୟକ ଯେ ଜ୍ଞାନ ନିମିତ୍ତ ଜ୍ଞାନର ଅର୍ଜନ ସକାଶେ ଖାଣ୍ଟି ଉତ୍ସାହ କେବଳ ଅସାଧାରଣ ମନୁଷ୍ୟମାନଙ୍କ ମଧ୍ୟରେ କିଂବା ଅସାଧାରଣ ଯୁଗରେହିଁ କାର୍ଯ୍ୟକାରୀ ହୋଇଥାଏ । ସଭ୍ୟ ଦେଶମାନଙ୍କରେ ଶିକ୍ଷା ସକାଶେ ପ୍ରବର୍ତ୍ତନାରୂପେ ଜ୍ଞାନାର୍ଜନ ନିମିତ୍ତ ଏକ ସାଧାରଣ ଇଚ୍ଛା ତିଷ୍ଠିରହେ କିନ୍ତୁ ବିଶେଷ ଭାବରେ ତାହା ସହିତ ସ୍ଥୂଳତର ଅନୁଭୂତିସବୁ ମିଶି ରହିଥାଏ ଯେ ସମାଜରେ ନିଜର ଉଚ୍ଚସ୍ଥାନ ବଜାୟ ରଖିବା କିଂବା କେତେକ ଲାଭଜନକ ବା ସମ୍ମାନାସ୍ପଦ କାର୍ଯ୍ୟ ବା ପେଶାରେ କୃତକାର୍ଯ୍ୟ ହେବା ନିମିତ୍ତ ଜ୍ଞାନ ଆବଶ୍ୟକ । ଭାରତରେ ଆମ୍ଭେମାନେ ଏତେ ବର୍ବର ହୋଇଉଠିଛୁ ଯେ ଜ୍ଞାନ ନିମିତ୍ତ କୌଣସି ନିଃସ୍ୱାର୍ଥପର ଆଗ୍ରହ ବ୍ୟତୀତ ସ୍ଥୂଳତମ ଉପଯୋଗବାଦୀ ଉଦ୍ଦେଶ୍ୟ ସହିତହିଁ ଆମେ ଆମର ଶିଶୁମାନଙ୍କୁ ବିଦ୍ୟାଳୟକୁ ପଠାଇଥାଉ; କିନ୍ତୁ ଆମେ ଯେଉଁ ଶିକ୍ଷା ଗ୍ରହଣ କରୁ ତାହାହିଁ ଏଥି ନିମିତ୍ତ ଦାୟୀ । କେହି ବି ଏକ ମନ୍ଦ ଶିକ୍ଷା ନିମିତ୍ତ ନିଃସ୍ୱାର୍ଥପର ଉତ୍ସାହ ପୋଷଣ କରିପାରେ ନାହିଁ, ଏହା କେବଳ ଜୀବନରେ କେତେକ ବ୍ୟାବହାରିକ ପରିଣତିର ଉପାୟରୂପେ ଗଣ୍ୟ ହୋଇପାରେ । କିନ୍ତୁ ଶିକ୍ଷାକୁ ଉତ୍ତମ, ପୁଙ୍ଖାନୁପୁଙ୍ଖ ଏବଂ ଆଗ୍ରହଦାୟକ କରାଯାଉ, ସ୍ୱାଭାବିକରୂପେ ମନରେ ଜ୍ଞାନ ପ୍ରତି

ପ୍ରେମ ଜାଗ୍ରତ ହେବ ଏବଂ ଅଧିକତର ସ୍ୱାର୍ଥପର ଉଦ୍ଦେଶ୍ୟ ସହିତ ଏହା ମିଶ୍ରିତ ହୋଇ ସେସବୁର ପରିବର୍ତ୍ତନ କରିବ ।

ତେଣୁ ଅନିଷ୍ଟର ଉତ୍ସ ସମ୍ବନ୍ଧରେ ଆମେ ଯେଉଁ ଅଭିଯୋଗ କରୁଛୁ ତାହା ଆଉକିଛି ଭିନ୍ନ ବିଷୟ; ଏହା ଏକ ମୌଳିକ ଓ ଶୋଚନୀୟ ଭ୍ରାନ୍ତି ଯାହାଦ୍ୱାରା ଆମେ ଏହି ଦେଶରେ ଶିକ୍ଷାକୁ ତଥ୍ୟ ଆହରଣ ବୋଲି ଭୁଲ୍ ବୁଝିଛୁ ଏବଂ ଜ୍ଞାନକୁ ଏକ ଅସାଧାରଣ ରୂପେ ସଂକୀର୍ଣ୍ଣ ଓ ଅନୁଦାର ଭାବରେ ବ୍ୟାଖ୍ୟା କରିଛୁ । ଛାତ୍ରକୁ ତଥ୍ୟପ୍ରଦାନ କରିବା ଏକାନ୍ତ ଆବଶ୍ୟକ, କିନ୍ତୁ ତାହାଠାରୁ ଆହୁରି ଅଧିକ ଆବଶ୍ୟକ ହେଉଛି ତାହା ମଧ୍ୟରେ ଜ୍ଞାନର ଶକ୍ତି ସୃଜନ କରିବା । ଜଣେ ବଢ଼େଇକୁ କିପରି ଭାବେ ମେଜ, ଚଉକି ଓ ଆଲମାରି ପ୍ରଭୃତି ତିଆରି କରିବାକୁ ହେବ ଏବଂ ଏପରିକି ତାହାର କାରିଗରୀ ନିମିତ୍ତ କି କି ଯନ୍ତ୍ରପାତି ଆବଶ୍ୟକ ହେବ ସେସବୁ ନ ଶିଖାଇ ତାକୁ କେବଳ କାଷ୍ଠସଂଗ୍ରହ ନିମିତ୍ତ କିପରି ବୃକ୍ଷ-କର୍ତ୍ତନ କରିବାକୁ ହେବ ତାହା ଶିଖାଇବା ଆଦୌ ଭଲ ଶିଳ୍ପ-ଶିକ୍ଷା ହେବ ନାହିଁ । ତଥାପି, ଆମର ଶିକ୍ଷାବ୍ୟବସ୍ଥା ଠିକ୍ ଏହାହିଁ କରେ । ଏହା ସ୍ମୃତିଶକ୍ତିକୁ ତାଲିମ କରେ ଏବଂ ଛାତ୍ରକୁ ତଥ୍ୟ ତଥା ଖରାପମାନର ଏକ କଳ୍ପନାର ଭଣ୍ଡାର ଯୋଗାଇଦିଏ । ସ୍ମୃତିଶକ୍ତି ହେଉଛି କାଠୁରିଆର କୁରାଢ଼ି ଏବଂ ସେ ଯେଉଁ ଭଣ୍ଡାର ଲାଭ କରେ ତାହା ହେଉଛି ଗଛ କାଟିବା ସମୟରେ ସେ ଯେଉଁ କାଠ ସଂଗ୍ରହ କରିଛି । ସେ ଏତିକି କରିବା ପରେ ବିଶ୍ୱବିଦ୍ୟାଳୟ ତାକୁ କହେ, ‘‘ଆମେ ଏବେ ଘୋଷଣା କରୁଛୁ – ତୁମେ ବଢ଼େଇ କାମରେ ଉପାଧି ଲାଭ କରିଛ, ଆମେ ତୁମକୁ ଏକ ଉତ୍ତମ ଓ ତୀକ୍ଷ୍ଣ କୁରାଢ଼ି ଦେଲୁ ଏବଂ ତୁମ ବଢ଼େଇକାମ ଆରମ୍ଭ କରିବା ସକାଶେ କିଛି ଭଲ କାଠ ଯୋଗାଇ ଦେଇଛୁ । ହେ ତରୁଣ, ତୁମେ ବର୍ତ୍ତମାନ ଆଗେଇ ଚାଲ, ପୃଥିବୀପୃଷ୍ଠରେ ଅନେକ ଅରଣ୍ୟ ରହିଛି ଏବଂ ଅରଣ୍ୟ-ରକ୍ଷୀ କର୍ମଚାରୀ ଯଦି କିଛି ବାଧା ନ ଦିଅନ୍ତି ତେବେ ତୁମେ ମନଇଛା ଗଛକାଟି କାଠ ସଂଗ୍ରହ କରିପାର ।’’

ବର୍ତ୍ତମାନ ଯେଉଁ ଛାତ୍ରଟି ଏହିସବୁ ସରଞ୍ଜାମ ନେଇ ଆଗେଇଚାଲେ ସେ ଜଣେ ବଡ଼ କାଠ-ବ୍ୟବସାୟୀ ହୋଇପାରେ, କିନ୍ତୁ ସେ ଯଦି ଅସାଧାରଣ ଭାବେ ବୁଦ୍ଧିମାନ୍ ହୋଇ ନ ଥାଏ ତେବେ ସେ କେବେ ବି ଜଣେ ମଧ୍ୟମ ଧରଣର ବଢ଼େଇ ହୋଇପାରିବ ନାହିଁ। ବର୍ତ୍ତମାନ ଏହି ତୁଳନାମୂଳକ ବିଷୟରୁ ବାସ୍ତବ କ୍ଷେତ୍ରକୁ ଫେରି ଆସିଲେ ଆମେ ଦେଖିବା ଯେ ମହାବିଦ୍ୟାଳୟର ଜଣେ ସ୍ନାତକ ଜଣେ ଭଲ କିରାଣି, ଜଣେ ସାଧାରଣ ଓକିଲ ବା ଜଣେ ଚଳଣୀୟ ଡାକ୍ତର ହୋଇପାରେ କିନ୍ତୁ ସେ ଯଦି ଅସାଧାରଣ ପ୍ରତିଭାଶାଳୀ ହୋଇ ନ ଥାଏ, ସେ କେବେ ବି ଜଣେ ବଡ଼ ଶାସକ ବା ବଡ଼ ଆଇନ୍‌ବ୍ୟବସାୟୀ ବା ଡାକ୍ତରୀ ବିଦ୍ୟାରେ ଜଣେ ବଡ଼ ଧରଣର ଓସ୍ତାଦ୍ ହୋଇପାରିବ ନାହିଁ। ଏହି ଉଚ୍ଚପଦର କାର୍ଯ୍ୟଗୁଡ଼ିକ କେବଳ ୟୁରୋପୀୟମାନଙ୍କ ଦ୍ୱାରା ସାଧିତ ହୋଇପାରିବ ବା ସେହିସବୁ ଉଚ୍ଚପଦରେ କେବଳ ସେହିମାନେହିଁ ଅଧିଷ୍ଠିତ ହୋଇପାରିବେ। ଯଦି ଜଣେ ଭାରତୀୟ ସେମାନଙ୍କର ସମକକ୍ଷ ହେବାକୁ ଇଚ୍ଛା କରେ ତେବେ ତାକୁ ସେହି ଉଚ୍ଚ ଧରଣର ଜ୍ଞାନ, ମୌଳିକ ବିଜ୍ଞାନ ଓ ଗଭୀର ସଂସ୍କୃତିର ବାତାବରଣରେ ନିଃଶ୍ୱାସ ମାରିବାକୁ ସମୁଦ୍ର ଉପରେ ହଜାର ହଜାର ମାଇଲ ଅତିକ୍ରମ କରି ଯିବାକୁ ହେବ। ତାହା ସତ୍ତ୍ୱେ ବି, ସେ କ୍ୱଚିତ୍ କୃତକାର୍ଯ୍ୟ ହୋଇଥାଏ, କାରଣ ସେହି ବାତାବରଣରେ ଭଲଭାବରେ ନିଃଶ୍ୱାସ ମାରିବା ସକାଶେ ତାହାର ଶ୍ୱାସଯନ୍ତ୍ର ଅତି ଦୁର୍ବଳ ଓ ଅକ୍ଷମ।

ତେଣୁ ପ୍ରଥମ ମୌଳିକ ଭ୍ରାନ୍ତି ହେଲା ସଂଗ୍ରହଶୀଳ ସ୍ମୃତିଶକ୍ତିର ଏବଂ ତଥ୍ୟସମୂହର ସଂଗ୍ରହ ନିମିତ୍ତ ତାଲିମ ମଧ୍ୟରେ ନିଜକୁ ସୀମାବଦ୍ଧ ରଖିବା ଏବଂ ବିଚାରଶକ୍ତି, ତୁଳନା ଓ ପ୍ରଭେଦୀକରଣର ଶକ୍ତି ଏବଂ ପ୍ରକାଶ-ଶକ୍ତି,— ଏହି ତିନୋଟି ମହାନ୍ ଶକ୍ତିର ବ୍ୟବହାର (କୌଶଳପୂର୍ଣ୍ଣ ପ୍ରୟୋଗ) ସମ୍ବନ୍ଧେ ତାଲିମ ଦେବାରେ ଅବହେଳା କରିବା। ଆଦିମ ସ୍ତରର ମନୁଷ୍ୟମାନଙ୍କ ଊର୍ଦ୍ଧ୍ୱ ସ୍ତରରେ ଥିବା ସମସ୍ତ ମନୁଷ୍ୟଙ୍କ ମଧ୍ୟରେ ଏହି

ଶକ୍ତିଗୁଡ଼ିକ କେତେକ ପରିମାଣରେ ଉପସ୍ଥିତ ଏବଂ ଏପରିକି ଆଦିମ ମନୁଷ୍ୟମାନଙ୍କ ମଧ୍ୟରେ ବି ଏହା ପ୍ରାଥମିକ ଅବସ୍ଥାରେ ଦେଖାଯାଏ । କିନ୍ତୁ ଏହି ଶକ୍ତିଗୁଡ଼ିକ ବିଶେଷତଃ ସଭ୍ୟ ଦେଶମାନଙ୍କର ଉଚ୍ଚତର ଶ୍ରେଣୀର ମନୁଷ୍ୟମାନଙ୍କ ମଧ୍ୟରେ, ବହୁ ଶତାବ୍ଦୀ ଧରି ଶିକ୍ଷାପ୍ରାପ୍ତ ହୋଇ ଆସିଥିବା ଯେକୌଣସି ଦେଶର ବ୍ୟକ୍ତିମାନଙ୍କଠାରେ ବିକଶିତ ଅବସ୍ଥାରେ ଦେଖାଯାଏ । କିନ୍ତୁ ନିଜ ପ୍ରକୃତିରେ ଯେତେ ଉଚ୍ଚତରଭାବେ ବିକଶିତ ହେଲେ ମଧ୍ୟ ଏହି ଶକ୍ତିଗୁଡ଼ିକର କର୍ଷଣ ଏକାନ୍ତ ଆବଶ୍ୟକ; ଯେଉଁ ସ୍ୱାଭାବିକ ସାମର୍ଥ୍ୟ ଶିକ୍ଷାର ବାସ୍ତବ ଅପରିହାର୍ଯ୍ୟ ମୌଳିକ ବସ୍ତୁ, ତାହାର ବାହ୍ୟପ୍ରକାଶ ନିମିତ୍ତ ସେହି ଶକ୍ତିଗୁଡ଼ିକ ଦାବି କରନ୍ତି । ଯଦି ଯୌବନାବସ୍ଥାରେ ସେହି ସାମର୍ଥ୍ୟଗୁଡ଼ିକର ବହିଃପ୍ରକାଶ ନ ଘଟେ, ତେବେ ସେଗୁଡ଼ିକ ମଳିନ ହୋଇପଡ଼ନ୍ତି ଏବଂ ମଇଳା ଜମିଯିବାରୁ ଅଚଳ ହୋଇଯାଆନ୍ତି ଯାହାଫଳରେ ସେଗୁଡ଼ିକର କାର୍ଯ୍ୟକ୍ଷମତା ବନ୍ଦ ହୋଇଯାଏ; ଯଦି ବା କେଉଁଠାରେ କାର୍ଯ୍ୟ କରିବାର ଦେଖାଯାଏ, ତାହା ହୋଇଥାଏ କ୍ଷୀଣ, ସଂକୀର୍ଣ୍ଣ ଏବଂ ଆଂଶିକ ଭାବରେ । ଅବଶ୍ୟ ଅବହେଳା ଓ ନିରୁତ୍ସାହିତା ସତ୍ତ୍ୱେ କୌଣସି ଅସାଧାରଣ ପ୍ରତିଭା ନିଜର ବିଶେଷତ୍ୱକୁ ବଜାୟ ରଖିପାରେ, କିନ୍ତୁ ସମସ୍ତ ପ୍ରକାର ଯଥାର୍ଥ ସାହାଯ୍ୟ ଓ ତାଲିମ ପ୍ରାପ୍ତ ହେଲେ ତାହା ଯେପରି ଆନନ୍ଦଦାୟକ ପରିଣାମ, ସ୍ୱାଧୀନ ଏବଂ ବ୍ୟାପକ କ୍ରିୟାଶୀଳତା ଲାଭ କରିପାରିବ, ସେହି ଏକହିଁ ପ୍ରତିଭା ନିଜେ ନିଜେ ବିକଶିତ ହେଲେ ତାଦୃଶ କୃତିତ୍ୱ ହାସଲ କରିପାରିବ ନାହିଁ । କେବଳ ଜ୍ଞାନର ପରିମାଣ ଗୁରୁତ୍ୱପୂର୍ଣ୍ଣ ବିଷୟ ନୁହେଁ କିନ୍ତୁ ଯାହା ବିଶେଷ ଗୁରୁତ୍ୱପୂର୍ଣ୍ଣ ତାହା ହେଲା ଅର୍ଜିତ ଜ୍ଞାନର ସର୍ବୋତ୍ତମ ବ୍ୟବହାର । ଆମ ଶିକ୍ଷାବିତ୍‌ମାନଙ୍କର ସହଜ ଧାରଣା ହେଲା ଏହି ଯେ ଜ୍ଞାନର ପ୍ରତ୍ୟେକ ବିଭାଗରେ ଉପରଠାଉରିଆ ତଥ୍ୟସବୁ ମନକୁ ଯୋଗାଇ ଦେବାକୁ ହେବ ଏବଂ ମନକୁ ତା'ର ସୁବିଧାଜନକ ବାଟରେ ଯାଇ ନିଜେ ନିଜେ ବିକାଶ କରିବା ନିମିତ୍ତ ଛାଡ଼ିଦେବାକୁ ହେବ । କିନ୍ତୁ ଏହି ଧାରଣା ହେଉଛି

ବିଜ୍ଞାନବିରୁଦ୍ଧ, ମାନବ-ଅନୁଭୂତିର ବିରୁଦ୍ଧ ଏବଂ ସଭ୍ୟଦେଶମାନଙ୍କର ବିଶ୍ୱଜନୀନ ମତର ବିରୁଦ୍ଧ । ବାସ୍ତବିକ ବିଶିଷ୍ଟ ଗୁଣର ଅଧିକାରୀ ହୋଇଥିବା ଜାତିମାନଙ୍କର ବୌଦ୍ଧିକ ଅଧଃପତନର ଇତିହାସ ସର୍ବଦା ଏହି ତିନୋଟି ମାନସ-ଶକ୍ତିର ନିଷ୍କ୍ରିୟତା ସହିତ, ସେଗୁଡ଼ିକୁ ବାଦ୍ ଦେଇ କେବଳ ଜ୍ଞାନର ଅତ୍ୟଧିକ କର୍ଷଣ ଦ୍ୱାରା ଆରମ୍ଭ ହୋଇଥାଏ । ଏକ ଜାତି ହିସାବରେ ଆମେ ଅନେକ କିଛି ହରାଇଛୁ, ତଥାପି ବୌଦ୍ଧିକ ସତର୍କତା, କ୍ଷିପ୍ରତା ଓ ମୌଳିକତାକୁ ଆମେ ସର୍ବଦା ସୁରକ୍ଷିତ କରି ରଖିଛୁ; କିନ୍ତୁ ଏପରିକି ଏହି ସର୍ବଶେଷ ବିଶେଷ ଗୁଣଟି ବିଶ୍ୱବିଦ୍ୟାଳୟ-ବ୍ୟବସ୍ଥା ଦ୍ୱାରା ଆସନ୍ନ ବିପଦର ସମ୍ମୁଖୀନ ହେବାଭଳି ବୋଧ ହେଉଛି । ଏବଂ ଯଦି ଏହା ନଷ୍ଟ ହୁଏ, ତେବେ ଏହାକୁ ଅପୂରଣୀୟ ଅଧଃପତନ ଓ ଅନ୍ତିମ ବିନଷ୍ଟିର ଆରମ୍ଭ ବୋଲି ବୁଝିବାକୁ ହେବ ।

ତେଣୁ ସଂସ୍କାରର ସର୍ବପ୍ରଥମ ପଦକ୍ଷେପ ହେବା ଆବଶ୍ୟକ – ଆମ ଶିକ୍ଷାର ଲକ୍ଷ୍ୟ ତଥା ପଦ୍ଧତିର ଆମୂଳ ପରିବର୍ତ୍ତନ । ସକ୍ରିୟ ମାନସ ବୃତ୍ତିର ଶିକ୍ଷା ନିମିତ୍ତ ଆମେ ଆମର ଶିକ୍ଷକମାନଙ୍କୁ ସେମାନଙ୍କ ଶକ୍ତିର ନବଦଶମାଂଶ ଉତ୍ସର୍ଗ କରିବା ସକାଶେ ଅଭ୍ୟସ୍ତ କରାଇବା ଆବଶ୍ୟକ । ସେହି ସଙ୍ଗେ ସଙ୍ଗେ ନିଷ୍କ୍ରିୟ ଓ ଅନ୍ତର୍ନିହିତ ବୃତ୍ତିଗୁଡ଼ିକ – ଯାହାକୁ ଆମେ କହୁ ସ୍ମୃତି – ଏକ ସ୍ୱୀକୃତ ଓ ସୁନିର୍ଦ୍ଧାରିତ କିନ୍ତୁ ଅପ୍ରଧାନ ସ୍ଥାନ ଅଧିକାର କରିବା ଉଚିତ । ଆମର ବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟର ପରୀକ୍ଷାସବୁକୁ ସ୍ମୃତିଶକ୍ତିର ପରୀକ୍ଷଣ ନୁହେଁ, ଏହି ସକ୍ରିୟ ବୃତ୍ତିଗୁଡ଼ିକର ପରୀକ୍ଷଣ ଦିଗରେ ନିୟନ୍ତ୍ରଣ କରିବା ଆବଶ୍ୟକ । କାରଣ ଏହା ଏପରି ଏକ ଲକ୍ଷ୍ୟ ଯାହା ପାଠ୍ୟକ୍ରମର କେବଳ ପରିବର୍ତ୍ତନ ବା ପୁନର୍ବ୍ୟବସ୍ଥା ଦ୍ୱାରା ସାଧିତ ହୋଇ ପାରିବ ନାହିଁ । ଏହା ସତ୍ୟ ଯେ କେତେକ ଧୀ-ଶକ୍ତିର ବିକାଶ ନିମିତ୍ତ କେତେକ ପାଠ୍ୟ ବିଷୟ ଅନ୍ୟ କେତେକ ପାଠ୍ୟ ବିଷୟ ଅପେକ୍ଷା ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ; ଜ୍ୟାମିତି, ତର୍କବିଜ୍ଞାନ ଏବଂ ରାଜନୀତି, ଅର୍ଥନୀତି ପ୍ରଭୃତି

ପାଠ୍ୟବିଷୟ ଯଥାଯଥ ବିଚାରଶକ୍ତିର ବିକାଶ ନିମିତ୍ତ ସହାୟତା କରନ୍ତି, ଭାବପ୍ରକାଶର ଶକ୍ତିକୁ ମାର୍ଜିତ ଓ ତାଲିମପ୍ରାପ୍ତ କରିବା ନିମିତ୍ତ ଭାଷାର ଅଧ୍ୟୟନ ଦ୍ୱାରା ଗୁରୁତ୍ୱପୂର୍ଣ୍ଣ ଫଳାଫଳ ଲାଭ କରାଯାଇପାରେ; ଇତିହାସର ସୁକୌଶଳ ଅଧ୍ୟୟନ ଅପେକ୍ଷା ଅନ୍ୟ କୌଣସି ବିଷୟ ତୁଳନା ଓ ପ୍ରଭେଦନିର୍ଣ୍ଣୟର ସାମର୍ଥ୍ୟକୁ ଅଧିକ ପ୍ରସାରିତ କରିପାରେ ନାହିଁ । କିନ୍ତୁ ଭାଷା ବ୍ୟତୀତ ଅନ୍ୟ କୌଣସି ନିର୍ଦ୍ଦିଷ୍ଟ ବିଷୟ ଏତେ ଅପରିହାର୍ଯ୍ୟ ନୁହେଁ, ଏପରିକି ଅନ୍ୟ କୌଣସି ଧୀଶକ୍ତି ସହିତ ଏତେ ଐକାନ୍ତିକଭାବେ ଉପଯୋଗୀ ନୁହେଁ । ଉଦାହରଣସ୍ୱରୂପ, ଏପରି କେତେକ ବୁଦ୍ଧି ଅଛି ଯେଉଁଗୁଡ଼ିକ ଜ୍ୟାମିତିକ ସମସ୍ୟା, କିଂବା ଏପରିକି ତର୍କବିଜ୍ଞାନର ନିୟମସିଦ୍ଧ ଯୁକ୍ତିଗୁଡ଼ିକ ସହିତ କାର୍ଯ୍ୟ କରିବାରେ ନିୟମଗତଭାବେ ଅସମର୍ଥ ଏବଂ ତଥାପି ସେଗୁଡ଼ିକ ଅନ୍ୟ ବୁଦ୍ଧିଗତ କ୍ଷେତ୍ରରେ ଗଭୀର, ଦୀପ୍ତିମୟ ଏବଂ ଯଥାଯଥ ପ୍ରମାଣକାରୀ । ଯଥାର୍ଥରେ ହିସାବ-ନିରୂପଣ ବିଜ୍ଞାନ (The sciences of calculation) ବ୍ୟତୀତ ଏପରି କୌଣସି ବିଷୟ ନାହିଁ ଯାହାକି କୌଣସି ସମର୍ଥ ଶିକ୍ଷକଙ୍କ ହାତରେ ପଡ଼ିଲେ ମନର ସମସ୍ତ ସାଧାରଣ ବୃତ୍ତିଗୁଡ଼ିକର ବିକାଶ ନିମିତ୍ତ କ୍ଷେତ୍ର ଯୋଗାଇବ ନାହିଁ । ତେଣୁ ଯାହା ପ୍ରଥମ ଆବଶ୍ୟକ, ତାହା ହେଲା ବର୍ତ୍ତମାନର ଶିକ୍ଷାପଦ୍ଧତିକୁ ଆମୂଳଭାବେ ଓ ଉଦାରଭାବେ ପରିତ୍ୟାଗ କରିବା ଏବଂ ଇଉରୋପର ଅଧିକ ବିକାଶଶୀଳ ଦେଶମାନଙ୍କରେ ସାର୍ବଜନୀନ ଭାବରେ ଯେଉଁ ଶିକ୍ଷାପଦ୍ଧତି ଗୃହୀତ ହେଉଛି ତାହାକୁ ଗ୍ରହଣ କରିବା ।

କିନ୍ତୁ ଏପରିକି ତଥ୍ୟ-ଆହରଣର ଏହି ସଂକୀର୍ଣ୍ଣତର କ୍ଷେତ୍ରରେ, ଯହିଁରେ ଆମ ବ୍ୟବସ୍ଥା ସୀମାବଦ୍ଧ, ତହିଁରେ ଅତି ମାରାତ୍ମକ ଭୁଲସବୁ ରହିଛି । ବିଶୁଦ୍ଧ ଗଣିତଶାସ୍ତ୍ର (pure mathematics) ଯାହା ନିଜ ଗୋଡ଼ରେ ଏକ ଦୃଢ଼ ଭିତ୍ତି ଉପରେ ଛିଡ଼ା ହୋଇପାରେ, ତାହା ବ୍ୟତୀତ ଜ୍ଞାନକୁ ଦୁଇଟି ପ୍ରଶସ୍ତ ବିଭାଗରେ ବିଭକ୍ତ କରାଯାଇପାରେ : ବସ୍ତୁ ସମ୍ବନ୍ଧୀୟ ଜ୍ଞାନ ଏବଂ

ମାନବ ସମ୍ବନ୍ଧୀୟ ଜ୍ଞାନ, ଅର୍ଥାତ୍ ମାନବର ଚିନ୍ତା, ମାନବର କ୍ରିୟାକଳାପ, ମାନବର ପ୍ରକୃତି ଏବଂ ସାହିତ୍ୟ, ଇତିହାସ, ଦର୍ଶନ ଓ ଚାରୁକଳା ପ୍ରଭୃତି ମାନବସୃଷ୍ଟ ବିଷୟଗୁଡ଼ିକ ଯେପରି ପ୍ରାମାଣିକଭାବେ ଲିପିବଦ୍ଧ, ସୁରକ୍ଷିତ ବା ଚିତ୍ରିତ ହୋଇଛି । ପରବର୍ତ୍ତୀ ବିଭାଗଟିକୁ ହ୍ୟୁମାନିଟିଜ୍ ବା କଳା (humanities) ବା ମାନୁଷୀ ଶିକ୍ଷା ନାମରେ ଏକ ପ୍ରଶସ୍ତ କ୍ଷେତ୍ରର ଅନ୍ତର୍ଭୁକ୍ତ କରାଯାଇଛି । ପୂର୍ବେ ଉନ୍ନତ ଶିକ୍ଷା ଏହିସବୁ ମଧ୍ୟରେହିଁ ସୀମାବଦ୍ଧ ଥିଲା ଯଦିଓ ପରବର୍ତ୍ତୀ କାଳରେ ଏହା ପ୍ରସାରିତ ହୋଇ ଗଣିତଶାସ୍ତ୍ରକୁ ନିଜର ଅନ୍ତର୍ଭୁକ୍ତ କରିଥିଲା ଏବଂ ପୁନଶ୍ଚ ଅଧିକତର ପ୍ରସାରିତ ହୋଇ ଏହା ଆଧୁନିକ କାଳରେ ବିଜ୍ଞାନର କିଛି ଅଂଶକୁ ନିଜର ଅନ୍ତର୍ଭୁକ୍ତ କରିଛି । ତେଣୁ କଳା, ଗଣିତଶାସ୍ତ୍ର ଓ ବିଜ୍ଞାନ – ଏଗୁଡ଼ିକ ହେଲେ ଜ୍ଞାନ-ପରିବାରର ତିନୋଟି ଭଗିନୀ ଏବଂ ଶିକ୍ଷାର ଯେକୌଣସି ଆତ୍ମ-ସମ୍ମାନାସ୍ପଦ ପଦ୍ଧତି ଆଧୁନିକ ଯୁଗରେ ଏଗୁଡ଼ିକ ମଧ୍ୟରୁ କୌଣସି ଗୋଟିକରେ ଦକ୍ଷତାହାସଲ ସଙ୍ଗେ ସଙ୍ଗେ ସବୁଗୁଡ଼ିକ ବିଷୟରେ ଏକ ସାଧାରଣ ଜ୍ଞାନ ହାସଲର ବ୍ୟବସ୍ଥା କରିବା ଆବଶ୍ୟକ । ଏହିଠାରେହିଁ ଆମ ଶିକ୍ଷା ବ୍ୟବସ୍ଥାର ପ୍ରଥମ ମସ୍ତବଡ଼ ଭୁଲ୍ ଆରମ୍ଭ ହୁଏ । ଆମେ ଯେତେବେଳେ ଆମର ଛାତ୍ରମାନଙ୍କୁ ସବୁ ବିଷୟରେ ଜ୍ଞାନର ଏକ ଧରାବନ୍ଧା ଢଳାଇ ଲୁହା ଭଳି ପାଠ୍ୟଧାରା ମଧ୍ୟଦେଇ ଯିବାକୁ ବାଧ୍ୟ କରୁ, ସେତେବେଳେ ଆମେ ସେମାନଙ୍କୁ କୌଣସି ଗୋଟିଏ ବିଷୟରେ ବି ଯଥାର୍ଥ ଜ୍ଞାନର ଶିକ୍ଷା ଦେଉ ନାହିଁ । ଉଦାହରଣସ୍ୱରୂପ ଗଣିତଶାସ୍ତ୍ର ଏପରି ଏକ ବିଷୟ ଯହିଁରେ ଛାତ୍ରମାନଙ୍କୁ ପୁଙ୍ଖାନୁପୁଙ୍ଖ ଜ୍ଞାନ ଦେବା ଅତି କଠିନ ବ୍ୟାପାର ହେବା ଉଚିତ ନୁହେଁ, କାରଣ ଏହି ବଷୟର ଅନେକ ଧାରା ଗତାନୁଗତିକ ଏବଂ ଏହା ଏକ ଯଥାଯଥ ଓ ନିର୍ଦ୍ଧାରିତ ବିଷୟ ହୋଇଥିବାରୁ ଏଥିସକାଶେ ସାହିତ୍ୟ ଏବଂ ଇତିହାସ ଭଳି ମୌଳିକ ଚିନ୍ତା ଓ ଯଥୋଚିତ ଗୁଣଗ୍ରହଣର ଗମ୍ଭୀର ଶକ୍ତି ଆବଶ୍ୟକ ହୁଏ ନାହିଁ । ତଥାପି କଲିକତା ବା ବମ୍ବେରୁ କେମ୍ବ୍ରିଜ୍‌କୁ ଯାଉଥିବା ଗଣିତଶାସ୍ତ୍ରର

ଅଧିକାଂଶ ଦୀପ୍ତିମାନ୍ ଛାତ୍ରଙ୍କର ଅପରିବର୍ତ୍ତନୀୟ ଅନୁଭୂତି ଏହି ଯେ ସେଠାରେ ସେମାନଙ୍କ ପ୍ରଥମ ବର୍ଷର ପଢ଼ା ପରେ ସେମାନେ ପଢ଼ିଥିବା ସବୁ ପାଠ ପ୍ରାୟ ନିଃଶେଷିତ ହୋଇଯାଏ ଏବଂ ସେମାନଙ୍କୁ ସଂପୂର୍ଣ୍ଣ ନୂତନ ଏବଂ ଅପରିଚିତ ପରିଣାମ ମଧ୍ୟଦେଇ ଯିବାକୁ ହୁଏ । ଏହା ନିଶ୍ଚିତଭାବେ ଏକ ଶୋଚନୀୟ ବିଷୟ ଯେ ଭାରତରେ ଗଣିତଶାସ୍ତ୍ର ଉପରେ ଏକ ପୁଙ୍ଖାନୁପୁଙ୍ଖ ଶିକ୍ଷା ଲାଭ କରିବା ବର୍ତ୍ତମାନ ଅସମ୍ଭବ ଏବଂ ଏହା ଲାଭ କରିବାକୁ ହେଲେ କୌଣସି ବ୍ୟକ୍ତିକୁ ହଜାର ହଜାର ମାଇଲ ଯାଇ ହଜାର ହଜାର ଟଙ୍କା ଖର୍ଚ୍ଚ କରିବାକୁ ହେବ । ପୁନଶ୍ଚ, ଆମେ ଯଦି ବିଜ୍ଞାନ ପ୍ରତି ଦୃଷ୍ଟିପାତ କରୁ, ତେବେ ଆମ ଶିକ୍ଷାପଦ୍ଧତିରେ ବିଜ୍ଞାନ ସମ୍ବନ୍ଧେ ଯେଉଁ ଦୟନୀୟ ସାମାନ୍ୟ ଜ୍ଞାନ ଲାଭ କରାଯାଏ, ତାହାର ପରିଣାମ କ'ଣ ହେବ ? ଅତି ବେଶୀରେ ଏହି ଶିକ୍ଷାବ୍ୟବସ୍ଥା ଏପରି ଭଲ ଶିକ୍ଷକମାନଙ୍କୁ ଗଢ଼ିବ ଯେଉଁମାନେ ନିଜେ ଯେଉଁ ଯନ୍ତ୍ରରେ ପିଷ୍ଟ ହୋଇ ଯାଇଛନ୍ତି ଅନ୍ୟମାନଙ୍କୁ ସେହି ଯନ୍ତ୍ରରେ ପିଷ୍ଟ ହେବାରେ ସାହାଯ୍ୟ କରିବେ ।...

(ଅସଂପୂର୍ଣ୍ଣ)

# ଶରୀରଚର୍ଚ୍ଚା ସମ୍ବନ୍ଧରେ ବାଣୀ



# ଶରୀରର ପୂର୍ଣ୍ଣତା

୧୯୪୯ ମସିହା ଫେବ୍ରୁଆରି ମାସରେ ଶୁଭାରମ୍ଭ ହୋଇଥିବା ଆଶ୍ରମର ଶାରୀରିକ ଶିକ୍ଷାର ମୁଖପତ୍ର (ପରେ ଏହାର ନାମ ହେଲା 'ଶ୍ରୀଅରବିନ୍ଦ ଆନ୍ତର୍ଜାତିକ ଶିକ୍ଷାକେନ୍ଦ୍ରର ମୁଖପତ୍ର'– Bulletin of Sri Aurobindo International Centre of Education) ପାଇଁ ଶ୍ରୀଅରବିନ୍ଦ ଆଠଟି ଧାରାବାହିକ ପ୍ରବନ୍ଧ ଲେଖିଥିଲେ ଯାହା ତାଙ୍କର ଗଦ୍ୟ ରଚନାର ଶେଷ ଲେଖା ।

ଓଡ଼ିଆରେ ଅନୂଦିତ ଉଲ୍ଲିଖିତ ପ୍ରବନ୍ଧ ଦୁଇଟି ଏହି ପତ୍ରିକାର ପ୍ରଥମ ଦୁଇଟି ସଂଖ୍ୟାରେ "Message" ଓ "Perfection of the Body" ଶିରୋନାମାରେ ପ୍ରକାଶିତ ହୋଇଥିଲା । ପ୍ରଥମେ ନବଜ୍ୟୋତି କାର୍ଯ୍ୟାଳୟ ଦ୍ୱାରା ୧୯୮୦ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ''ପୃଥିବୀପୃଷ୍ଠରେ ଅତିମାନସର ଅଭିବ୍ୟକ୍ତି'' ପୁସ୍ତକରେ ଏହି ଦୁଇଟି ପ୍ରବନ୍ଧ ପ୍ରକାଶିତ ହୋଇଛି । ଏଠାରେ ସେହି ଦୁଇଟି ପ୍ରବନ୍ଧକୁହିଁ ଉପସ୍ଥାପିତ କରାଯାଇଛି ।

## ଶରୀରଚର୍ଚ୍ଚା ସମ୍ବନ୍ଧରେ ବାଣୀ

ଆଶ୍ରମର ଶରୀରଚର୍ଚ୍ଚା ସମ୍ବନ୍ଧରେ ତ୍ରୈମାସିକ ପତ୍ରିକା – ''ଶାରୀରିକ ଶିକ୍ଷାର ମୁଖପତ୍ର''ର ଏହି ସଂଖ୍ୟାଟିର ପ୍ରକାଶ ଉପଲକ୍ଷେ ମୁଁ ଏହି ପତ୍ରିକାଟିକୁ ତଥା ସଂପୃକ୍ତ ସମିତିକୁ (J.S.A.S.A.– Jeunesse Sportive de l'Ashram de Sri Aurobindo) ମୋର ଆଶୀର୍ବାଦ ଦେଉଛି । ପ୍ରସଙ୍ଗତଃ ମୁଁ ସଂକ୍ଷେପରେ ଏହିସବୁ ସମିତିର ଗଭୀର ତାତ୍ପର୍ଯ୍ୟ ଏବଂ ବିଶେଷ କରି ଜାତୀୟ ଜୀବନରେ ଏଇ ପ୍ରକାର ସଙ୍ଗଠନର ଏବଂ ଏଠାରେ ଯେଉଁ ଧରଣର ଖେଳ-କସରତ୍ ଓ ଶରୀରଚର୍ଚ୍ଚା ହେଉଛି ତା'ର ବ୍ୟାପକ ବିସ୍ତାରର ପ୍ରୟୋଜନୀୟତା ଓ ଉପଯୋଗିତା ସଂପର୍କରେ ଆଲୋଚନା କରିବି । ବାହ୍ୟ ଓ ଆପାତ ଦୃଷ୍ଟିରେ ମନେହେବ ଯେ ଏଇ ଧରଣର ଖେଳ-କସରତ୍‌କୁ ଲୋକମାନେ ଗ୍ରହଣ କରିଛନ୍ତି କେବଳ ସେମାନଙ୍କ ଆମୋଦ-ଉପଭୋଗ ନିମନ୍ତେ ବା ଏହାକୁ ଗ୍ରହଣ କରାଯାଇଛି କର୍ମ ପାଇଁ ଶରୀରର ସ୍ୱାଭାବିକ ପ୍ରବୃତ୍ତି ତଥା ଶକ୍ତିର ବ୍ୟୟ ପାଇଁ ଏକ କ୍ଷେତ୍ର ହିସାବରେ ବା ଶରୀରର ସ୍ୱାସ୍ଥ୍ୟ ଓ ସାମର୍ଥ୍ୟର ଉନ୍ନତି ଓ ସୁରକ୍ଷାର ଏକ ଉପାୟ ହିସାବରେ । କିନ୍ତୁ ଏଗୁଡ଼ିକର ପ୍ରକୃତ ତାତ୍ପର୍ଯ୍ୟ ଓ ଉପଯୋଗ ଏହା ଅପେକ୍ଷା ଅନେକ ଅଧିକ ବା ତାହାକୁ ଆହୁରି ଅଧିକତର କରାଯାଇପାରେ । ଏହା ଏପରିସବୁ ଉତ୍ତମ ଅଭ୍ୟାସ, ଶକ୍ତି ଓ ଗୁଣ ଆଦିର ବିକାଶ ପାଇଁ କ୍ଷେତ୍ର ହୋଇପାରେ ଯେଉଁଗୁଡ଼ିକ କି ଦେଶ ଓ ଜାତିର ଜନଗଣଙ୍କ ପାଇଁ,– ଯୁଦ୍ଧ ସମୟରେ ହେଉ ବା ଶାନ୍ତି ସମୟରେ ହେଉ,– ସେମାନଙ୍କର ରାଜନୈତିକ ଓ ସାମାଜିକ କାର୍ଯ୍ୟକଳାପରେ, ବିଶେଷ କରି ସାମୂହିକ ମାନବିକ ପ୍ରଚେଷ୍ଟାର କ୍ଷେତ୍ରରେ ଅତ୍ୟନ୍ତ ପ୍ରୟୋଜନୀୟ ଓ ପରମ ସହାୟକ ହୋଇଥାଏ । ଏହି ବିଭାବଟିକୁ ଆମେ ବିଷୟଟିର ଜାତୀୟ ବିଭାବ

ବୋଲି କହିପାରୁ ଏବଂ ଏହାରି ଉପରେହିଁ ମୁଁ ବିଶେଷ ଗୁରୁତ୍ୱ ଦେବାକୁ ଚାହୁଁଛି ।

ବର୍ତ୍ତମାନ, ଆମ୍ଭମାନଙ୍କ ସମୟରେ ଏହିସବୁ ଖେଳ ଓ କୁସ୍ତି କସରତ ଆଦି ଯେଉଁ ସ୍ଥାନ ଗ୍ରହଣ କରିଛି ଓ ଲୋକମାନଙ୍କ ଭିତରେ ଯେଉଁ ଆଗ୍ରହ ସୃଷ୍ଟି କରିଛି ତାହା କେବଳ ପ୍ରାଚୀନ କାଳରେ ଗ୍ରୀସ୍ ଭଳି ଦେଶମାନଙ୍କରେ ଦେଖା ଯାଇଥିଲା । ଗ୍ରୀସ୍‌ରେ ମାନବୀୟ କର୍ମର ସମସ୍ତ ଦିଗ ସମାନ ଭାବରେ ବିକଶିତ ହୋଇଥିଲା ଓ ମାନସିକ କ୍ଷେତ୍ରରେ ଶିଳ୍ପକଳା, କାବ୍ୟକବିତା ଓ ନାଟକ ଆଦିର ଯେଉଁ ଗୁରୁତ୍ୱ ଥିଲା, ଦୈହିକ କ୍ଷେତ୍ରରେ ବ୍ୟାୟାମ, ରଥଚାଳନା-ପ୍ରତିଯୋଗିତା ଏବଂ ଅନ୍ୟାନ୍ୟ ଖେଳ ଓ କୁସ୍ତି କସରତ୍ ଆଦି ପ୍ରତି ଠିକ୍ ସେହିଭଳି ଗୁରୁତ୍ୱ ଆରୋପ କରାଯାଇଥିଲା ଏବଂ ନଗର-ଶାସନର କର୍ତ୍ତୃପକ୍ଷମାନେ ଏହିସବୁର ଅନୁଷ୍ଠାନ ପ୍ରତି ବିଶେଷ ଧ୍ୟାନ ଦେଉଥିଲେ ଓ ଏଗୁଡ଼ିକୁ ଉତ୍ସାହିତ କରୁଥିଲେ । ଗ୍ରୀସ୍ ଦେଶହିଁ ଅଲିମ୍ପିକ୍ ଖେଳର ଅନୁଷ୍ଠାନକୁ ଜନ୍ମ ଦେଇଥିଲା ଏବଂ ଆଜି ଏକ ଆନ୍ତର୍ଜାତିକ ଅନୁଷ୍ଠାନରୂପେ ସେହି ଅଲିମ୍ପିକ୍ ଖେଳର ପୁନଃପ୍ରତିଷ୍ଠା ହେଉଛି ସେହି ପ୍ରାଚୀନ ଉତ୍ସାହ-ଉଦ୍ଦୀପନାର ପୁନର୍ଜାଗରଣ ଦିଗରେ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ସୂଚନା । ଏହି ଧରଣର ଆଗ୍ରହ ଓ ଉତ୍ସାହ ଆମ ନିଜ ଦେଶରେ ମଧ୍ୟ କିଛି ପରିମାଣରେ ପ୍ରସାର ଲାଭ କରିଛି ଏବଂ ଭାରତବର୍ଷ ଅଲିମ୍ପିକ୍ ଭଳି ଆନ୍ତର୍ଜାତିକ ପ୍ରତିଯୋଗିତାରେ ମଧ୍ୟ ଅଂଶଗ୍ରହଣ କରିବାକୁ ଆରମ୍ଭ କରିଦେଇଛି । ସ୍ୱାଧୀନ ଭାରତର ନବପ୍ରତିଷ୍ଠିତ ରାଷ୍ଟ୍ର ମଧ୍ୟ ଜାତୀୟ ଜୀବନର ସମସ୍ତ ଦିଗର ବିକାଶ ଦିଗରେ ଧ୍ୟାନ ଦେବା ପାଇଁ ଆରମ୍ଭ କରିଛି ଏବଂ ପୂର୍ବେ ଯେଉଁସବୁ କ୍ଷେତ୍ରରେ କାର୍ଯ୍ୟକଳାପକୁ ବେସରକାରୀ ଉଦ୍ୟୋଗ ହାତରେ ଛାଡ଼ିଦିଆ ଯାଇଥିଲା, ବର୍ତ୍ତମାନ ମନେହୁଏ ସେଗୁଡ଼ିକର ନିର୍ଦ୍ଦେଶ ଓ ପରିଚାଳନାଦିରେ ରାଷ୍ଟ୍ର ସକ୍ରିୟ ଅଂଶ ଗ୍ରହଣ କରିବ । ଉଦାହରଣସ୍ୱରୂପ ଦେଶରେ ଦୈହିକ ସ୍ୱାସ୍ଥ୍ୟ ଓ ସାମର୍ଥ୍ୟ ଗଢ଼ିତୋଳିବା ଓ

ତାହାକୁ ଅକ୍ଷୁଣ୍ଣ ରଖିବା ଦିଗରେ ଏବଂ ବିଷୟଟିର ଗୁରୁତ୍ୱ ସଂପର୍କରେ ଯେପରି ଜନସାଧାରଣ ବ୍ୟାପକ ଭାବରେ ସଚେତ ହୁଅନ୍ତି ସେଦିଗରେ ଏହା ବିଭିନ୍ନ କାର୍ଯ୍ୟକ୍ରମ ଗ୍ରହଣ କରୁଛି । ଖେଳ-କସରତ୍, ବ୍ୟାୟାମ ପ୍ରତିଷ୍ଠାନ ଏବଂ ଏହି ଧରଣର ଶରୀରଚର୍ଚ୍ଚାମୂଳକ ସମସ୍ତ କାର୍ଯ୍ୟକଳାପକୁ ଉତ୍ସାହିତ କଲେ ତାହା ଦ୍ୱାରା ଏ ଦିଗରେ ଅପରିସୀମ ସହାୟତା ମିଳିବ । ବାଲ୍ୟ, ଯୌବନ ଓ ପ୍ରାପ୍ତବୟସ୍କ ଅବସ୍ଥାରେ ଏହି ଧରଣର ଶରୀରଚର୍ଚ୍ଚାରେ ଅଂଶ ଗ୍ରହଣର ଅଭ୍ୟାସକୁ ବ୍ୟାପକ ଭାବରେ ପ୍ରସାରିତ କରାଇପାରିଲେ, ତାହା ଏକ ସମର୍ଥ, ଶକ୍ତିମାନ୍ ଓ ବଳିଷ୍ଠ ଜାତି ଗଢ଼ିତୋଳିବା ଦିଗରେ ବିପୁଳ ଭାବରେ ସହାୟତା କରିବ ।

କିନ୍ତୁ ତାହା ଯେତେ ଆବଶ୍ୟକ ହେଲେ ମଧ୍ୟ ଶରୀରର ସ୍ୱାସ୍ଥ୍ୟ, ସାମର୍ଥ୍ୟ ଓ କାର୍ଯ୍ୟଦକ୍ଷତା ପାଇଁ ଭିତ୍ତି ତିଆରି କରିବା ଅପେକ୍ଷା ଏହିସବୁ ଶରୀରଚର୍ଚ୍ଚାମୂଳକ କାର୍ଯ୍ୟକଳାପର ଅନ୍ୟ ଉଚ୍ଚତର ତାତ୍ପର୍ଯ୍ୟ ରହିଛି, ତା’ ହେଉଛି ଏହା ସଂଯମ ଓ ଶୃଙ୍ଖଳାର ବିକାଶ ଦିଗରେ ଏବଂ ସୁଦୃଢ଼ ଚରିତ୍ରଗଠନ ଦିଗରେ ସହାୟତା କରିପାରେ । ଏପରି ଅନେକ ଖେଳ ରହିଛି ଯାହାର ଭୂମିକା ଏ ଦିଗରେ ଖୁବ୍ ମୂଲ୍ୟବାନ୍, ଏହା ଅନେକ ସଦ୍‌ଗୁଣଗଠନରେ ସାହାଯ୍ୟ କରେ, କାରଣ ତହିଁରେ ପ୍ରୟୋଜନ ହୁଏ ସାହସ, କଠିନ ଶ୍ରମ, ପ୍ରବଳ କର୍ମଶକ୍ତି, ଉଦ୍ୟୋଗ କୌଶଳର ପ୍ରୟୋଗ, ସ୍ଥିର ସଂକଳ୍ପ, ଦ୍ରୁତ ସିଦ୍ଧାନ୍ତ, ଦ୍ରୁତ କର୍ମସମ୍ପାଦନ ଓ ଜରୁରୀ ଅବସ୍ଥାରେ ହଠାତ୍ କ’ଣ କରିବାକୁ ହେବ ତା’ ବୁଝିପାରିବାର ଓ ଦକ୍ଷତାର ସହିତ ତାହା ସମ୍ପନ୍ନ କରିବାର କ୍ଷମତା । ସବୁଠୁ ମୂଲ୍ୟବାନ୍ ଯେଉଁ ଫଳ ଲାଭ ହୁଏ, ତା’ ହେଉଛି ମୂଳଗତ ଓ ସହଜାତ ଶାରୀରଚେତନାର ଜାଗରଣ ଯାହାକି ମାନସିକ ଚିନ୍ତାର କୌଣସି ନିର୍ଦ୍ଦେଶ ବ୍ୟତୀତ ମଧ୍ୟ ପ୍ରୟୋଜନୀୟ କର୍ମଟିକୁ ଦେଖିପାରେ ଓ ସମ୍ପନ୍ନ କରିପାରେ; ଶରୀରରେ ଏହି ଗୁଣଟି ହେଉଛି ମନର କ୍ଷିପ୍ର ଅନ୍ତର୍ଦୃଷ୍ଟି ଓ ଇଚ୍ଛାଶକ୍ତିର ସ୍ୱତଃସ୍ଫୂର୍ତ୍ତ ତଥା ତୁରନ୍ତ

ନିଷ୍ପତ୍ତି ନେବାର କ୍ଷମତା ସଙ୍ଗେ ସମାନ । ଏହା ସଙ୍ଗେ ମଧ୍ୟ ଆଉ ଏକ ଫଳଲାଭ ବିଷୟ ଯୋଗ କରାଯାଇପାରେ । ତା' ହେଉଛି ଏକ ସୁସଙ୍ଗତିପୂର୍ଣ୍ଣ ଯଥାର୍ଥ ଅଙ୍ଗଚାଳନାର କ୍ଷମତା, ବିଶେଷ କରି ସମବେତ ଶରୀରଚର୍ଚ୍ଚାରେ ଯାହା ଲାଭ ହୁଏ ଯଥା, ଅଳ୍ପ ଶାରୀରିକ ଉଦ୍ୟମରେ ଅଧିକ ଫଳ ଲାଭ ଓ ଶକ୍ତି ଅପଚୟର ହ୍ରାସ । ତାଲିମ ପାଇ ନ ଥିବା ଶରୀରର କ୍ଷେତ୍ରରେ ସାଧାରଣତଃ ଯେଉଁସବୁ ଶିଥିଳ, ବିଶୃଙ୍ଖଳ ଓ ଶକ୍ତିର ଅପଚୟମୂଳକ ଅଙ୍ଗଚାଳନା ହୋଇଥାଏ, ମାର୍ଚ୍ଚିଂ, ଡ୍ରିଲ୍ ଆଦି ସମବେତ ଶରୀରଚର୍ଚ୍ଚା ଦ୍ୱାରା ସେଗୁଡ଼ିକୁ ସଂଶୋଧିତ କରାଯାଇ ଥାଏ । ଏହିସବୁ କାର୍ଯ୍ୟକଳାପର ଆଉ ଏକ ଅମୂଲ୍ୟ ଫଳ ହେଉଛି ଖେଳୁଆଡ଼ ମନୋଭାବର ବୃଦ୍ଧି । ଖେଳୁଆଡ଼ ମନୋଭାବରେ ଯେଉଁସବୁ ଗୁଣ ଅନ୍ତର୍ଗତ, ସେଗୁଡ଼ିକ ହେଉଛି— ସୁସ୍ଥ ସରଳ ଅକପଟତା, ସବୁ ବିଷୟରେ ଏକ ସହିଷ୍ଣୁ ଓ ବିଚାରବନ୍ତ ଭାବ, ପ୍ରତିଦ୍ୱନ୍ଦ୍ୱୀ ଓ ପ୍ରତିଯୋଗୀମାନଙ୍କ ସଂପର୍କରେ ଏକ ବନ୍ଧୁତ୍ୱପୂର୍ଣ୍ଣ ଉଚିତ ମନୋଭାବ, ଆତ୍ମସଂଯମ ଓ ଖେଳର ନିୟମଗୁଡ଼ିକର ନିଷ୍ଠାପର ପାଳନ, ନ୍ୟାୟୋଚିତ ଖେଳ, ଅସଦୁପାୟର ବର୍ଜନ, ସମଭାବ ନେଇ ଜୟ ଓ ପରାଜୟକୁ ଗ୍ରହଣ କରିବା, ବିଜୟୀ ପ୍ରତିଯୋଗୀମାନଙ୍କ ପ୍ରତି କୌଣସି ବିଦ୍ୱେଷ ବା ଅସଦିଚ୍ଛା ପୋଷଣ ନ କରିବା, ନିଯୁକ୍ତ ରେଫରୀ, ମଧ୍ୟସ୍ଥ ବା ବିଚାରକଙ୍କର ନିଷ୍ପତ୍ତିକୁ ଅକୁଣ୍ଠଚିତ୍ତରେ ମାନିନେବା । କେବଳ କ୍ରୀଡ଼ା କ୍ଷେତ୍ରରେ ନୁହେଁ, ସାଧାରଣଭାବେ ଜୀବନକ୍ଷେତ୍ରରେ ମଧ୍ୟ ଏହି ଗୁଣଗୁଡ଼ିକର ଅନେକ ମୂଲ୍ୟ ରହିଛି, କିନ୍ତୁ ଏହି ଗୁଣଗୁଡ଼ିକର ବିକାଶ ପାଇଁ ଖେଳ-କସରତ୍ ଯେପରି ସାହାଯ୍ୟ କରିପାରେ ତାହା ପ୍ରତ୍ୟକ୍ଷ ଓ ଅମୂଲ୍ୟ । କେବଳ ବ୍ୟକ୍ତିର ଜୀବନକ୍ଷେତ୍ରରେ ନୁହେଁ, ଯଦି ଜାତୀୟ ଓ ଆନ୍ତର୍ଜାତିକ ଜୀବନକ୍ଷେତ୍ରରେ ଏହି ଗୁଣଗୁଡ଼ିକର ବହୁଳ ପ୍ରତିଷ୍ଠା ହୁଏ ତେବେ ଆଜି ଆମର ଏହି ବିକ୍ଷୁବ୍ଧ ଜଗତରେ— ଯେଉଁଠି ଏହି ଗୁଣଗୁଡ଼ିକର ଠିକ୍ ବିପରୀତ ବୃତ୍ତିଗୁଡ଼ିକହିଁ ବିଶେଷ ପ୍ରାଧାନ୍ୟ ଲାଭ କରିଛି— ସେଠାରେ

ଜୀବନଧାରା ହୁଏତ ଅଧିକତର ସହଜ ଓ ସ୍ୱଚ୍ଛନ୍ଦ ହେବ ଏବଂ ଆଜି ଯେଉଁ ଜିନିଷଟି ସବୁଠୁ ଅଧିକ ପ୍ରୟୋଜନୀୟ ସେହି ଶାନ୍ତି ଓ ମୈତ୍ରୀର ଭାବ ଦିଗରେ ଏହା ଅଧିକତର ଉନ୍ମୋଚିତ ହେବ । ଆହୁରି ଅଧିକ ଗୁରୁତ୍ୱପୂର୍ଣ୍ଣ ଯେଉଁ ବିଷୟସବୁ କେତେକ ଖେଳରେ ଦରକାର ହୋଇଥାଏ ତା ହେଉଛି ଶୃଙ୍ଖଳା, ଆନୁଗତ୍ୟ, ନିୟମାନୁବର୍ତ୍ତିତା, ମିଳିତ କର୍ମର ଅଭ୍ୟାସ । ଏଗୁଡ଼ିକ ବ୍ୟତୀତ ସାଫଲ୍ୟ ଅନିଶ୍ଚିତ ବା ଅସମ୍ଭବ । ଜୀବନରେ, ବିଶେଷ କରି ଜାତୀୟ ଜୀବନରେ ଅସଂଖ୍ୟ କାର୍ଯ୍ୟ ରହିଛି ଯେଉଁଠି ସମ୍ମିଳିତ ପ୍ରଚେଷ୍ଟା ଦ୍ୱାରା କୌଣସି ସାଫଲ୍ୟ ବା ସଂଗ୍ରାମରେ ଜୟଲାଭ ବା କୌଣସି ଲକ୍ଷ୍ୟସିଦ୍ଧି ପାଇଁ ନେତୃତ୍ୱର ତଥା ନେତୃତ୍ୱକୁ ମାନି ଚଳିବାର ପ୍ରୟୋଜନ ରହିଛି । ସମସ୍ତ ପ୍ରକାର ସମ୍ମିଳିତ କର୍ମ ବା ସମଷ୍ଟିଗତ ପ୍ରଚେଷ୍ଟାରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି ନେତା ବା ଦଳପତିର ଭୂମିକା, ତା'ର ନେତୃତ୍ୱର କ୍ଷମତା ଓ ଦକ୍ଷତା, ନିଜ ଦଳର ଆସ୍ଥାଭାଜନ ହୋଇ ପାରିବାରେ ଓ ଅକୁଣ୍ଠ ଆନୁଗତ୍ୟ ପାଇ ପାରିବାରେ ତା'ର ସାମର୍ଥ୍ୟ । କିନ୍ତୁ ନିଜେ ଅନ୍ୟର ଆଦେଶ ପାଳନ କରିବାକୁ ନ ଶିଖିଲେ, ଦଳର ଅନ୍ୟମାନଙ୍କ ସଙ୍ଗେ ଏକମନ, ଏକପ୍ରାଣ ହୋଇ କାର୍ଯ୍ୟ କରିବାକୁ ନ ଶିଖିଲେ ଖୁବ୍ କମ୍ ଲୋକହିଁ ନେତୃତ୍ୱର ଏହି ଗୁଣଗୁଡ଼ିକର ବିକାଶ କରିପାରିବେ । କିନ୍ତୁ ତାଲିମ ବା ଶିକ୍ଷା ପାଇବାର ଏହି କଠୋରତା, ଆଦେଶପାଳନ ଓ ଶୃଙ୍ଖଳାନୁବର୍ତ୍ତିତାର ଏହି ଅଭ୍ୟାସର ବ୍ୟକ୍ତି-ସ୍ୱାଧୀନତା ସଙ୍ଗେ କୌଣସି ବିରୋଧ ନାହିଁ । ଅନେକ ସମୟରେ ବରଂ ବ୍ୟକ୍ତି ସ୍ୱାଧୀନତାର ଯଥାଯଥ ଉପଯୋଗ ପାଇଁ ଏହା ଆବଶ୍ୟକ ସର୍ତ୍ତ ହୋଇଥାଏ, ଠିକ୍ ଯେପରି ସ୍ୱାଧୀନତା ସଙ୍ଗେ ଶୃଙ୍ଖଳାର ବିରୋଧ ନାହିଁ ବରଂ ସ୍ୱାଧୀନତାର ଯଥାର୍ଥ ଉପଯୋଗ ପାଇଁ ଶୃଙ୍ଖଳାହିଁ ଆବଶ୍ୟକ ସର୍ତ୍ତ ହୋଇଥାଏ ଏପରିକି ତାହାର ସୁରକ୍ଷା ପାଇଁ ଓ ତାହା ତିଷ୍ଠି ରହିବା ପାଇଁ ପ୍ରଧାନ ପ୍ରୟୋଜନ ହେଉଛି ଶୃଙ୍ଖଳା । ସମସ୍ତ ପ୍ରକାର ସମ୍ମିଳିତ କର୍ମରେ

ଏହି ନିୟମ ଅପରିହାର୍ଯ୍ୟ, ଐକ୍ୟବାଦନସୁଲଭ ସୁରସଙ୍ଗତି ରକ୍ଷା କରିବା ନିତାନ୍ତ ପ୍ରୟୋଜନୀୟ, ନ ହେଲେ ଯଦି କୌଣସି ଐକ୍ୟବାଦନରେ ପ୍ରତ୍ୟେକ ବାଦକ ତା'ର ନିଜ ଇଚ୍ଛା ଓ ଖିଆଲ-ଖୁସି ଅନୁଯାୟୀ ବାଦ୍ୟ ବଜାଇଯାଏ ଓ ପରିଚାଳକର ନିର୍ଦ୍ଦେଶକୁ ଶୁଣେ ନାହିଁ, ତା'ହେଲେ ସେ କ୍ଷେତ୍ରରେ କୌଣସି ସଫଳତା ସମ୍ଭବପର ନୁହେଁ । ଆଧ୍ୟାତ୍ମିକ ଜୀବନରେ ମଧ୍ୟ ଏହି ନିୟମ ପ୍ରଯୁଜ୍ୟ, ଯେଉଁ ସାଧକ ଗୁରୁଙ୍କର ନିର୍ଦ୍ଦେଶ ପ୍ରତି କର୍ଣ୍ଣପାତ ନ କରି ନିଜର ଅପରିପକ୍ୱ ପ୍ରେରଣା ଦ୍ୱାରା ଚାଳିତ ହେବାକୁ ପସନ୍ଦ କରେ ତା'ହେଲେ ଅନେକ ସମୟରେ ଆଧ୍ୟାତ୍ମିକ ସିଦ୍ଧି ପଥରେ ଯେଉଁସବୁ ବିପଦ, ସ୍ଖଳନ, ଏପରିକି ବିପର୍ଯ୍ୟୟମାନ ଭିଡ଼ କରି ରହିଥାଆନ୍ତି, ତା'ପକ୍ଷେ ସେଗୁଡ଼ିକ ହାତରୁ ନିସ୍ତାର ପାଇବା ଦୁଃସାଧ୍ୟ ହୁଏ । ଖେଳ-କସରତ୍ ଓ ଶରୀରଚର୍ଚ୍ଚା ଆଦିରୁ ଆଉ ଅନ୍ୟାନ୍ୟ କ'ଣ ଉପକାର ମିଳିପାରେ ବା ଜାତୀୟ ଜୀବନରେ ସେଗୁଡ଼ିକର ଆଉ କ'ଣ ସବୁ ଉପଯୋଗିତା ଅଛି ମୁଁ ସେ ବିଷୟରେ ଆଉ ଅଧିକ ଆଲୋଚନା କରିବାକୁ ଯାଉ ନାହିଁ, ଯେତିକି କହିଛି ତାହା ଯଥେଷ୍ଟ । ସେ ଯାହାହେଉ, ଆମ ସ୍କୁଲ ପରି ସ୍କୁଲଗୁଡ଼ିକରେ ଓ ବିଶ୍ୱବିଦ୍ୟାଳୟ-ଗୁଡ଼ିକରେ କ୍ରୀଡ଼ା, ବ୍ୟାୟାମ ଆଦି ଏକ ଅପରିହାର୍ଯ୍ୟ ସ୍ୱୀକୃତ ସ୍ଥାନ ଗ୍ରହଣ କରିସାରିଛି, କାରଣ ଶରୀରର ଶିକ୍ଷା ବ୍ୟତୀତ ମନର ଶ୍ରେଷ୍ଠତମ ଶିକ୍ଷା ଓ ପୂର୍ଣ୍ଣତମ ଶିକ୍ଷା ମଧ୍ୟ ଯଥେଷ୍ଟ ନୁହେଁ । ଯେଉଁସବୁ ଗୁଣଗୁଡ଼ିକ ବିଷୟରେ ମୁଁ କହିଲି ଯେଉଁଠି ସେଗୁଡ଼ିକର ସଂପୂର୍ଣ୍ଣ ଅଭାବ ରହିଛି ବା ଅତି ଅଳ୍ପ ମାତ୍ରାରେ ରହିଛି, ସେଠାରେ ଏକ ବଳିଷ୍ଠ ବ୍ୟକ୍ତିଗତ ବା ଜାତୀୟ ଇଚ୍ଛାଶକ୍ତି ସେଗୁଡ଼ିକୁ ଅବଶ୍ୟ ଗଢ଼ି ଦେଇପାରେ । କିନ୍ତୁ ସେଗୁଡ଼ିକର ବିକାଶ ପାଇଁ ଖେଳ-କସରତ୍ ଆଦି ପ୍ରତ୍ୟକ୍ଷ ଭାବରେ ସାହାଯ୍ୟ କରେ ଓ ତାହା ଆଦୌ ନଗଣ୍ୟ ନୁହେଁ । ଆମର ଆଶ୍ରମରେ ଏଗୁଡ଼ିକ ପ୍ରତି ଯେଉଁ ଧ୍ୟାନ ଦିଆଯାଉଛି ଏହାହିଁ ସେଇଥିପାଇଁ ଯଥେଷ୍ଟ କାରଣ ଯଦିଓ ଅନ୍ୟାନ୍ୟ କାରଣ ମଧ୍ୟ ରହିଛି,

କିନ୍ତୁ ଏଠାରେ ସେଗୁଡ଼ିକର ଉଲ୍ଲେଖ ନିଷ୍ପ୍ରୟୋଜନ । ମୋର ଏଠାରେ ବକ୍ତବ୍ୟ ହେଉଛି ଖେଳକସରତ୍ ଆଦିର କିପରି ଗୁରୁତ୍ୱ ରହିଛି ଏବଂ ତାହା ଯେଉଁସବୁ ଗୁଣ ଗଠନ କରେ ଓ ଉଦ୍ରେକ କରେ, ଜାତୀୟ ଜୀବନ ପାଇଁ ସେଗୁଡ଼ିକର କିପରି ଆବଶ୍ୟକତା ରହିଛି । ଯେଉଁ ଜାତି ଏହି ସବୁ ଗୁଣ ଯେତେ ଅଧିକ ପରିମାଣରେ ଅର୍ଜନ କରେ, ବିଜୟ ପାଇଁ, ସାଫଲ୍ୟ ପାଇଁ ଓ ମହାନତା ପାଇଁ ସେ ଜାତି ସେତିକି ଅଧିକ ସମର୍ଥ ହୋଇଉଠେ ଓ ତହିଁ ସଙ୍ଗେ ସଙ୍ଗେ ମଧ ମାନବଜାତିର ଯେଉଁ ଭବିଷ୍ୟତ୍ ପାଇଁ ଆମେ ଆଶା କରୁଛୁ, ସେହି ଏକତା ଓ ଅଧିକ ସଂଗତିସମନ୍ୱୟପୂର୍ଣ୍ଣ ଏକ ବିଶ୍ୱବ୍ୟବସ୍ଥା ଆଣିବା ଦିଗରେ ନିଜର ଶ୍ରେଷ୍ଠ ଅବଦାନ ଦେବାକୁ ସେ ଜାତି ଅଧିକ ସମର୍ଥ ହୁଏ ।

୩୦ ଡିସେମ୍ବର, ୧୯୪୮

# ଶରୀରର ପୂର୍ଣ୍ଣତା

ଶରୀରଚର୍ଚ୍ଚାର ଚୂଡ଼ାନ୍ତ ଲକ୍ଷ୍ୟ ହେଉଛି ଆମର ଶକ୍ତି ଓ ସମ୍ବଳ ଅନୁଯାୟୀ ଯେତେଦୂର ସମ୍ଭବ ଶାରୀରିକ ପୂର୍ଣ୍ଣତା ଆଣିବା । ଆଧ୍ୟାତ୍ମିକ, ଚୈତ୍ୟ, ମାନସିକ ଓ ପ୍ରାଣିକ ଚର୍ଚ୍ଚା ଆଦି ସମସ୍ତ ଚର୍ଚ୍ଚାର ଲକ୍ଷ୍ୟ ହେଉଛି ପୂର୍ଣ୍ଣତା; ସୁତରାଂ ଶରୀରଚର୍ଚ୍ଚାର ମଧ୍ୟ ସେହି ଲକ୍ଷ୍ୟ ରହିବା ଉଚିତ । ଆମର ଲକ୍ଷ୍ୟ ଯଦି ହୁଏ ସମୁଦାୟ ସତ୍ତାର ଏକ ସାମଗ୍ରିକ ପୂର୍ଣ୍ଣତା, ତେବେ ଏହାର ଶାରୀରିକ ଅଂଶକୁ କେବେହେଲେ ବାଦ୍ ଦିଆଯାଇ ନ ପାରେ । କାରଣ ଶରୀର ହେଉଛି ଭୌତିକ ଆଧାର ଏବଂ ଏହି ଶରୀରରୂପକ ଯନ୍ତ୍ରକୁହିଁ ଆମକୁ ବ୍ୟବହାର କରିବାକୁ ହେବ । ଏକ ପ୍ରାଚୀନ ସଂସ୍କୃତ ଉକ୍ତି ଅନୁସାରେ– ଶରୀରମ୍ ଖଳୁ ଧର୍ମସାଧନମ୍, ଅର୍ଥାତ୍ ଶରୀର ହେଉଛି ଧର୍ମ-ସାଧନର ଆଧାର । ଧର୍ମର ଅର୍ଥ ହେଉଛି ଆମେ ଯେଉଁ ଲକ୍ଷ୍ୟ ଓ ଆଦର୍ଶସବୁକୁ ଗ୍ରହଣ କରୁ ଏବଂ ସେଗୁଡ଼ିକୁ କାର୍ଯ୍ୟକାରୀ କରିବା ପାଇଁ ଯେଉଁ ନିୟମ ଓ ଶୃଙ୍ଖଳା ଗ୍ରହଣ କରୁ । ଆମ ଆଗରେ ଯେଉଁ ଚୂଡ଼ାନ୍ତ ଲକ୍ଷ୍ୟ ରଖିଛୁ ତାହା ହେଉଛି ଏକ ସର୍ବାଙ୍ଗୀଣ ପୂର୍ଣ୍ଣତା; କାରଣ ଆମର ଆଦର୍ଶ ହେଲା ଦିବ୍ୟ ଜୀବନ ଯାହା ଆମେ ଏହି ପୃଥିବୀରେ ସ୍ଥାପନ କରିବାକୁ କହୁଁ ଯେତେବେଳେ ଆତ୍ମାର ଜୀବନ ପୃଥିବୀପୃଷ୍ଠରେ ତା'ର ଚରମ ପୂର୍ଣ୍ଣତା ଲାଭ କରିବ ଏବଂ ଜୀବନ ମଧ୍ୟ ତା'ର ନିଜର ଆଧ୍ୟାତ୍ମିକ ରୂପାନ୍ତର ସମ୍ପନ୍ନ କରିବ ପୃଥିବୀରେ, ଜଡ଼-ବିଶ୍ୱର ଏହି ପରିବେଶ ଭିତରେ । କିନ୍ତୁ ତାହା ସମ୍ଭବ ହେବ ନାହିଁ ଯେପର୍ଯ୍ୟନ୍ତ ଶରୀରର କୌଣସି ରୂପାନ୍ତର ନ ହୋଇଛି, ଯେପର୍ଯ୍ୟନ୍ତ ତା ପକ୍ଷରେ ବର୍ତ୍ତମାନ ଯେତିକି ସମ୍ଭବ ବା ତା ଭିତରେ ଯେତିକି ସମ୍ଭାବନା ନିହିତ ଅଛି ସେହି ଅନୁସାରେ ତା'ର କ୍ରିୟା ଓ ଗତିବୃତ୍ତି ଏକ ସର୍ବୋଚ୍ଚ କ୍ଷମତା ଏବଂ ପୂର୍ଣ୍ଣତା ଲାଭ ନ କରିଛି ।

ଏଥି ପୂର୍ବରୁ ଏକ ବାର୍ତ୍ତାରେ ମୁଁ ସୂଚନା ଦେଇଥିଲି ଯେ ବ୍ୟାୟାମ ଓ ଶରୀରଚର୍ଚ୍ଚା, ଯାହା ଉପରେ ଆମ ଆଶ୍ରମରେ ବିଶେଷ ଦୃଷ୍ଟି ଓ ସୁବିଧା-ସୁଯୋଗ ଦିଆଯାଉଛି, ତା'ର ଏକ ବାଞ୍ଛନୀୟ ପରିଣତି ହେବା ଉଚିତ ଯେ ଶରୀରର ନିଜସ୍ୱ ସହଜାତ କ୍ଷମତାର ଜାଗରଣ ଓ ବିକାଶ-ସାଧନ ସଙ୍ଗେ ସଙ୍ଗେ ଶରୀରସ୍ଥ ଦୈହିକ ଚେତନା ତଥା ଏହି ଶରୀରକୁ ଆଶ୍ରୟ କରୁଥିବା ମନ, ପ୍ରାଣ ଓ ଚରିତ୍ର ଆଦିର ମଧ୍ୟ ତଦନୁଯାୟୀ ପୂର୍ଣ୍ଣତାସାଧନ । ଦୈହିକ ଚେତନାର ବିକାଶକୁ ଆମର ଲକ୍ଷ୍ୟରେ ବରାବର ଏକ ବିଶେଷ ସ୍ଥାନ ଦିଆଯିବା ଉଚିତ ଏବଂ ସେଥିପାଇଁ ସ୍ୱୟଂ ଶରୀରର ଯଥାର୍ଥ ଉନ୍ନତି ଓ ଅଭିବୃଦ୍ଧିର ଏକ ମୌଳିକ ଗୁରୁତ୍ୱ ରହିଛି । ସ୍ୱାସ୍ଥ୍ୟ, ସାମର୍ଥ୍ୟ ଓ କାର୍ଯ୍ୟ-କ୍ଷମତା ହେଉଛି ପ୍ରଥମ ପ୍ରୟୋଜନ, କିନ୍ତୁ ସ୍ୱୟଂ ଶରୀର-ଆଧାରକୁ ମଧ୍ୟ ସର୍ବୋତ୍ତମ କରି ଗଢ଼ିବାକୁ ହେବ । ଭୌତିକ ଜଗତରେ ଦିବ୍ୟ ଜୀବନର ଅର୍ଥ ହେଲା ସତ୍ତାର ଏହି ଦୁଇଟି ଦିଗ— ଆଧ୍ୟାତ୍ମିକ ଶିଖର ଓ ଭୌତିକ ଭୂମି ଭିତରେ ମିଳନ । ଆତ୍ମା, ଯାହାର ଜୀବନର ଭିତ୍ତି ଜଡ଼ ଭିତରେ ପ୍ରତିଷ୍ଠିତ, ସେ ଆରୋହଣ କରେ ଊର୍ଦ୍ଧ୍ୱସ୍ଥ ଦିବ୍ୟ ଚେତନାର ରାଜ୍ୟକୁ, କିନ୍ତୁ ତା'ର ଭିତ୍ତିକୁ ଫିଙ୍ଗିଦିଏ ନାହିଁ; ଏହା ଉଚ୍ଚତା ଓ ଗଭୀରତା ଭିତରେ ଏକତ୍ର ସଂଯୋଗ ପ୍ରତିଷ୍ଠା କରେ । ସେହିପରି ଦିବ୍ୟ ଚେତନା ମଧ୍ୟ ଜଡ଼ ଏବଂ ଭୌତିକ ଜଗତ୍ ଭିତରକୁ ଅବତରଣ କରେ ନିଜର ସମସ୍ତ ଅଲୋକ, ଐଶ୍ୱର୍ଯ୍ୟ ଓ ଶକ୍ତି ସହ ଏବଂ ସେସବୁର ମହିମାରେ ଭୌତିକ ଜଗତର ଜୀବନ ପୂର୍ଣ୍ଣ ଓ ରୂପାନ୍ତରିତ ହୋଇ ଅଧିକରୁ ଅଧିକ ଦିବ୍ୟତ୍ୱରେ ପରିଣତ ହୁଏ । ଏହି ରୂପାନ୍ତର କେବଳ ଅତୀନ୍ଦ୍ରିୟ ସୂକ୍ଷ୍ମ ଓ ଆଧ୍ୟାତ୍ମିକ କିଛିକୁ ପରିବର୍ତ୍ତିତ ହେବା ନୁହେଁ, କାରଣ ଜଡ଼ର ସ୍ୱଭାବରେ ରହିଛି ଏହିସବୁ ସୂକ୍ଷ୍ମତ୍ୱ ପ୍ରତି ଏକ ବିଦ୍ୱେଷ ଏବଂ ଆଧ୍ୟାତ୍ମିକ ଭାବ ମଧ୍ୟ ଜଡ଼କୁ ଏକ ପ୍ରତିବନ୍ଧକରୂପେ ଓ ଦିବ୍ୟ ଚେତନାକୁ ବାନ୍ଧିରଖୁଥିବା ଏକ ଶୃଙ୍ଖଳରୂପେ ବିଚାର କରେ । କିନ୍ତୁ ଏହି ରୂପାନ୍ତର ଜଡ଼କୁ ଦିବ୍ୟ ଚେତନାରହିଁ ଏକ ରୂପ ବୋଲି ବିଚାର

କରେ, ଯଦିଓ ବର୍ତ୍ତମାନ ତାହା ଦିବ୍ୟ ଚେତନାକୁ ସଂଗୋପିତ କରି ରଖୁଛି ତଥାପି ରୂପାନ୍ତର ଦ୍ୱାରା ଜଡ଼ହିଁ ସେହି ଚେତନାର ପ୍ରକାଶମୟ ଯନ୍ତ୍ରରେ ପରିଣତ ହୋଇଉଠେ । ଜଡ଼ର ଶକ୍ତି, ସାମର୍ଥ୍ୟ ଓ ପଦ୍ଧତିକୁ ଏହା ପରିତ୍ୟାଗ କରେ ନାହିଁ, ଏହା ସେମାନଙ୍କର ଗୋପନ ସମ୍ଭାବନାସବୁକୁ ପ୍ରକାଶ କରିଦିଏ, ଉନ୍ନତ ଓ ରୂପାନ୍ତରିତ କରେ ଏବଂ ସେମାନଙ୍କର ଅନ୍ତର୍ନିହିତ ଦିବ୍ୟତ୍ୱକୁ ଅନାବୃତ କରିଦିଏ । ଦିବ୍ୟ ଜୀବନ ଏପରି କୌଣସି ବସ୍ତୁକୁ ପ୍ରତ୍ୟାଖ୍ୟାନ କରିବ ନାହିଁ ଯାହା ଦିବ୍ୟତ୍ୱରେ ରୂପାନ୍ତରିତ ହୋଇପାରିବ । ସବୁକିଛିକୁ ଗ୍ରହଣ କରିବାକୁ ହେବ, ସବୁକିଛିକୁ ଉନ୍ନୀତ କରିବାକୁ ହେବ ଓ ଚୂଡ଼ାନ୍ତ ପୂର୍ଣ୍ଣତାର ରୂପ ଦେବାକୁ ହେବ । ଆମର ମନ ଯାହା ବର୍ତ୍ତମାନ ସୁଦ୍ଧା ଅଜ୍ଞାନ ଅବସ୍ଥାରେ ରହିଛି ଏବଂ ଯାହା ଜ୍ଞାନ ଅଭିମୁଖରେ ଅଗ୍ରସର ହେବା ନିମିତ୍ତ ସଂଗ୍ରାମ କରୁଛି, ତାହାକୁ ଅତିମାନସ ଜ୍ୟୋତି ଓ ସତ୍ୟ ଦିଗରେ ଗତି କରି ତା ମଧ୍ୟକୁ ଉଠିଯିବାକୁ ହେବ ଏବଂ ସେହି ସତ୍ୟ ଓ ଜ୍ୟୋତିକୁ ନିଜ ମଧ୍ୟରେ ଅବତରଣ କରି ଆଣିବାକୁ ହେବ, ଯେପରିକି ଆମର ସମସ୍ତ ଚିନ୍ତା, ପ୍ରତ୍ୟକ୍ଷ ଅନ୍ତର୍ଦୃଷ୍ଟି ଏବଂ ଜ୍ଞାନର ସମସ୍ତ ଯନ୍ତ୍ର ତାହା ଦ୍ୱାରା ପରିପ୍ଲାବିତ ହୋଇ ସେମାନଙ୍କର ସମସ୍ତ ଆନ୍ତର ଓ ବାହ୍ୟ ଗତିବୃତ୍ତିରେ ଚୂଡ଼ାନ୍ତ ସତ୍ୟର ଜ୍ୟୋତିରେ ପ୍ରଦୀପ୍ତ ହୋଇଉଠିବେ । ଆମର ଜୀବନ ଯାହା ବର୍ତ୍ତମାନ ନାନା ଅଜ୍ଞାନ ଓ ବିଭ୍ରାନ୍ତିରେ ପରିପୂର୍ଣ୍ଣ ଏବଂ ନାନା ନିର୍ବୋଧ ଓ ନିମ୍ନତର ଲକ୍ଷ୍ୟ ନେଇ ବ୍ୟସ୍ତ ତାହା ଅନୁଭବ କରିବ ତାହାର ସମସ୍ତ ଆବେଗ ଓ ପ୍ରବୃତ୍ତି ଉନ୍ନୀତ ଓ ପ୍ରଦୀପ୍ତ ହୋଇଉଠିଛି ଏବଂ ସେ ସ୍ୱୟଂ ଊର୍ଦ୍ଧ୍ୱସ୍ଥ ଅତିମାନସ ଅତିଜୀବନର ଯଥାର୍ଥରେ ଏକ ଗୌରବମୟ ପ୍ରତିରୂପ । ଶରୀରିକ ଚେତନା, ଶାରୀରସତ୍ତା ଏବଂ ସ୍ୱୟଂ ଶରୀର ନିଜର ସମସ୍ତ କ୍ରିୟା ଓ ସ୍ୱରୂପରେ ଏପରି ପୂର୍ଣ୍ଣତା ଲାଭ କରିବ ଯାହାକି ବର୍ତ୍ତମାନ ଆମ କଳ୍ପନାର ଅତୀତ । ପରିଶେଷରେ ଏହା ମଧ୍ୟ ଊର୍ଦ୍ଧ୍ୱରୁ ଏକ ଜ୍ୟୋତି, ସୌନ୍ଦର୍ଯ୍ୟ ଓ ଆନନ୍ଦ ଦ୍ୱାରା ପରିପୂର୍ଣ୍ଣ ହୋଇପାରେ ଯେତେବେଳେ ଦିବ୍ୟ ଜୀବନ ଏକ ଦିବ୍ୟ ଶରୀର ଗ୍ରହଣ କରିବ ।

କିନ୍ତୁ ପ୍ରଥମେ ପ୍ରକୃତିର ବିବର୍ତ୍ତନ ଏପରି ଏକ ଅବସ୍ଥାରେ ପହଞ୍ଚିବା ଆବଶ୍ୟକ ଯେଉଁଠି କି ଏହା ପ୍ରତ୍ୟକ୍ଷଭାବେ ଦିବ୍ୟ ପୁରୁଷଙ୍କର ସାକ୍ଷାତ୍ ଲାଭ କରିବ, ଆଧ୍ୟାତ୍ମିକ ପରିବର୍ତ୍ତନ ପାଇଁ ଅଭୀପ୍‌ସା ଅନୁଭବ କରିବ ଏବଂ ରୂପାନ୍ତରକାରିଣୀ ପରମା ଶକ୍ତିଙ୍କର କ୍ରିୟା ପ୍ରତି ନିଜକୁ ଖୋଲି ଧରିବ । ଏକ ପରମ ପୂର୍ଣ୍ଣତା, ଏକ ସର୍ବାଙ୍ଗୀଣ ପୂର୍ଣ୍ଣତା କେବଳ ସମ୍ଭବପର ଆମର ନିମ୍ନ-ମାନବିକ ପ୍ରକୃତିର ରୂପାନ୍ତର ଦ୍ୱାରା, ଯେତେବେଳେ ମନ ରୂପାନ୍ତରିତ ହେବ ଏକ ଜ୍ୟୋତିର୍ମୟ ବସ୍ତୁରେ, ଯେତେବେଳେ ରୂପାନ୍ତରିତ ଜୀବନ ହୋଇଉଠିବ ଶକ୍ତିମୟ, ହେବ ଯଥାର୍ଥ କର୍ମର ଏକ ଯନ୍ତ୍ର ଏବଂ ତା'ର ସମସ୍ତ ଶକ୍ତି ନିୟୋଜିତ ହେବ କେବଳ ଯଥାର୍ଥ ଦିଗରେ । ନିଜର ସମ୍ଭାବନା ଦିଗରେ ବର୍ତ୍ତମାନର ସମସ୍ତ ସଂକୀର୍ଣ୍ଣତା ଓ ସୀମାକୁ ଅତିକ୍ରମ କରି ଏହା ଉନ୍ନୀତ ହେବ ଜୀବନର ଆନନ୍ଦ ଓ କର୍ମର ଏକ ସ୍ୱୟଂପୂର୍ଣ୍ଣ ଶକ୍ତିରେ । ସେହିପରି ଶରୀରର ମଧ୍ୟ ରୂପାନ୍ତର ଆଣିବାକୁ ହେବ, ତା'ର କର୍ମ, କ୍ରିୟାପ୍ରଣାଳୀ ଓ ଯନ୍ତ୍ର ହିସାବରେ ସାମର୍ଥ୍ୟର କ୍ଷେତ୍ରରେ ଆମୂଳ ପରିବର୍ତ୍ତନ ଦ୍ୱାରା, ଯେତେବେଳେ ଏହା ନିଜର ସମସ୍ତ ସୀମାକୁ ଅତିକ୍ରମ କରିଯିବ, ଯେଉଁ ସୀମା ଆଜି ପର୍ଯ୍ୟନ୍ତ, ଏପରିକି ସର୍ବଶ୍ରେଷ୍ଠ ମାନବିକ କୃତିତ୍ୱର କ୍ଷେତ୍ରରେ ମଧ୍ୟ ଏହାର ସମସ୍ତ ବିକାଶକୁ ବ୍ୟାହତ ଓ ଅବରୁଦ୍ଧ କରି ରଖିଛି । ଆମେ ଯେଉଁ ସମଗ୍ର ପରିବର୍ତ୍ତନ ଆଣିବାକୁ ଚାହୁଁ, ସେଥିରେ ମାନବିକ ଶକ୍ତି ଓ ଉପାୟ ସବୁକୁ ମଧ୍ୟ ଗ୍ରହଣ କରାଯିବ; ସେସବୁକୁ ବାଦ୍ ଦିଆ ନ ଯାଇ ନୂତନ ଜୀବନର ଅଙ୍ଗ ହିସାବରେ ସେମାନଙ୍କ ସର୍ବୋଚ୍ଚ ସମ୍ଭାବନାର ବିକାଶ ପାଇଁ ସେଗୁଡ଼ିକୁ ବ୍ୟବହୃତ ଓ ପରିପୁଷ୍ଟ କରାଯିବ । ମଣିଷର ବର୍ତ୍ତମାନ ଯେଉଁ ମନ ଓ ପ୍ରାଣର ଶକ୍ତି ରହିଛି ପୃଥିବୀପୃଷ୍ଠରେ ଦିବ୍ୟ ଜୀବନର ଉପାଦାନ ହିସାବରେ ସେଗୁଡ଼ିକୁ ମାର୍ଜିତ ଓ ରୂପାନ୍ତରିତ କରିବାର ଧାରଣା ବିଶେଷ କଷ୍ଟକର ନୁହେଁ, କିନ୍ତୁ ଶରୀରର ପୂର୍ଣ୍ଣତା ବିଷୟରେ ଆମ ଧାରଣାର ସ୍ୱରୂପ କ'ଣ ?

ଅତୀତରେ ଆଧ୍ୟାତ୍ମିକ ଜିଜ୍ଞାସୁମାନେ ଶରୀରକୁ ଆଧ୍ୟାତ୍ମିକ ପୂର୍ଣ୍ଣତାର ଏକ ଯନ୍ତ୍ର ବା ଆଧ୍ୟାତ୍ମିକ ରୂପାନ୍ତରର କ୍ଷେତ୍ର ବୋଲି ମନେ ନ କରି ମନେ କରୁଥିଲେ ଏହାକୁ ଏକ ବାଧା ବୋଲି ଯାହାକୁ କି ଅତିକ୍ରମ କରିଯିବା ବା ପରିତ୍ୟାଗ କରିବାହିଁ ଏକମାତ୍ର ପନ୍ଥା । ସ୍ଥୂଳ ଜଡ଼ ହିସାବରେ ଓ ଏକ ଅନତିକ୍ରମ୍ୟ ପ୍ରତିବନ୍ଧକରୂପେ ନିନ୍ଦିତ ହେବା ସଙ୍ଗେ ସଙ୍ଗେ ଶରୀରର ଦୋଷତ୍ରୁଟିସବୁକୁ ଅପରିବର୍ତ୍ତନୀୟ ବୋଲି ଧରି ନିଆଯାଇ ତାହାର ରୂପାନ୍ତର ସଂପୂର୍ଣ୍ଣ ଅସମ୍ଭବ ବୋଲି ମନେ କରାଯାଉଥିଲା । ଏହାର କାରଣ ହେଉଛି ମନୁଷ୍ୟ ଶରୀର ତା'ର ସର୍ବୋତ୍ତମ ଅବସ୍ଥାରେ ମଧ୍ୟ କେବଳ ପ୍ରାଣର ଏକ ଶକ୍ତି ଦ୍ୱାରା ପରିଚାଳିତ ବୋଲି ମନେହୁଏ, ଯେଉଁ ଶକ୍ତି ନିଜର ନାନା ଦୋଷତ୍ରୁଟିରେ ପରିପୂର୍ଣ୍ଣ ଓ ଯେ କି ନିମ୍ନତର ଶାରୀରିକ କ୍ରିୟାରେ ଜଡ଼ିତ ହୋଇ ନୀଚତା, ସ୍ଥୂଳତା ଓ ନାନା ଦୋଷରେ ଦୂଷିତ ହୋଇଥାଏ । ସ୍ୱୟଂ ଶରୀର ମଧ୍ୟ ଜଡ଼ର ତାମସିକତା ଓ ନିଶ୍ଚେତନା ଦ୍ୱାରା ଭାରଗ୍ରସ୍ତ । ଏହା କେବଳ ଆଂଶିକ ଭାବରେ ଜାଗ୍ରତ ଏବଂ ଯଦିଓ ସ୍ନାୟବିକ କ୍ରିୟା ଦ୍ୱାରା ଏହା ସଜୀବ ଓ ଗତିଶୀଳ ହୋଇଥାଏ ତଥାପି ଏହାର କୋଷ ଓ ସ୍ନାୟୁତନ୍ତ୍ରୀସବୁ ନିଜର କର୍ମ ଏବଂ ଗୋପନ କ୍ରିୟାରେ ସଂପୂର୍ଣ୍ଣ ଅବଚେତନ । ଏପରିକି ଶରୀର ନିଜର ପୂର୍ଣ୍ଣତମ ସାମର୍ଥ୍ୟ ଓ ଶକ୍ତି ବା ସର୍ବୋତ୍ତମ ସୌନ୍ଦର୍ଯ୍ୟକୁ ପ୍ରକାଶ କଲାବେଳେ ମଧ୍ୟ ତାହା ଜଡ଼ ନିଶ୍ଚେତନାରହିଁ ଏକ ପ୍ରସ୍ଫୁଟନ ମାତ୍ର । ନିଶ୍ଚେତନାର ମୃତ୍ତିକା ଭିତରୁହିଁ ଶରୀରର ଅଭିବୃଦ୍ଧି ଘଟିଛି ଏବଂ ନିଜର କ୍ଷମତାର ପରିସରକୁ ବ୍ୟାପ୍ତ କରିବା ଦିଗରେ ବା ମୌଳିକ ଭାବରେ ନିଜକୁ ଅତିକ୍ରମ କରିବା ଦିଗରେ ସମସ୍ତ ପ୍ରୟାସ ବିରୋଧରେ ଏହା ବରାବର ଏକ ସଂକୀର୍ଣ୍ଣ ସୀମା ସ୍ଥାପିତ କରେ । କିନ୍ତୁ ଯଦି ପୃଥିବୀପୃଷ୍ଠରେ ଏକ ଦିବ୍ୟ ଜୀବନ ସ୍ଥାପନ ସମ୍ଭବପର ହୁଏ ତେବେ ଶରୀର ନିଜକୁ ଅତିକ୍ରମ କରିଯିବା ଅବଶ୍ୟହିଁ ସମ୍ଭବ ହେବ ।

ପୂର୍ଣ୍ଣତାର ଲକ୍ଷ୍ୟ ଅନୁସରଣ ପାଇଁ ଆମେ ଆମ ସତ୍ତାର

ଯେକୌଣସି ଗୋଟିଏ ପ୍ରାନ୍ତରୁ ସାଧନା ଆରମ୍ଭ କରିପାରୁ ଏବଂ ତତ୍‌ପରେ ଆମକୁ ଅନ୍ତତଃ ସାଧନାର ପ୍ରଥମ ଅବସ୍ଥାରେ ଆମ ନିର୍ବାଚିତ ପନ୍ଥାର ଅନୁରୂପ ଉପାୟ ଓ ପ୍ରକ୍ରିୟାକୁ ଗ୍ରହଣ କରିବାକୁ ହେବ । ଯୋଗରେ ଏହି ପଦ୍ଧତି ହେଉଛି ଆଧ୍ୟାତ୍ମିକ ଓ ଅନ୍ତରାତ୍ମିକ; ଏପରିକି ଯୋଗର ଅନ୍ତର୍ଗତ ପ୍ରାଣିକ ଓ ଶାରୀରିକ ପଦ୍ଧତିକୁ ମଧ୍ୟ ଏକ ଆଧ୍ୟାତ୍ମିକ ଓ ଅନ୍ତରାତ୍ମିକ ସ୍ପର୍ଶ ଦିଆଯାଇଥାଏ ଏବଂ ପ୍ରାଣ ଓ ଜଡ଼ର ସ୍ୱାଭାବିକ କ୍ରିୟା ଓ ଗତି ଅପେକ୍ଷା ସେସବୁକୁ ଆହୁରି ଉଚ୍ଚତର ସ୍ତରକୁ ଉଠାଇ ନିଆଯାଇଥାଏ, ଉଦାହରଣସ୍ୱରୂପ ହଠଯୋଗ ଓ ରାଜଯୋଗରେ ପ୍ରଚଳିତ ପ୍ରାଣାୟାମ ଓ ଆସନ । ସାଧାରଣତଃ ଆଧ୍ୟାତ୍ମିକ ଶକ୍ତିର ଗ୍ରହଣ ପାଇଁ ବା ଅନ୍ତରାତ୍ମିକ ଶକ୍ତି ବା ପଦ୍ଧତିସବୁର ସଂଗଠନ ପାଇଁ ସମର୍ଥ ହେବାକୁ ହେଲେ ମନ, ପ୍ରାଣ ଓ ଦେହକୁ ପୂର୍ବରୁ ପ୍ରସ୍ତୁତ କରାଇବା ଆବଶ୍ୟକ, କିନ୍ତୁ ଏ କ୍ଷେତ୍ରରେ ମଧ୍ୟ ଯୋଗର ଅନୁରୂପ ବିଶେଷ ପଦ୍ଧତିର ଆଶ୍ରୟ ନିଆଯାଇଥାଏ । କିନ୍ତୁ ଅପର ପକ୍ଷରେ ଆମେ ଯଦି ନିମ୍ନପ୍ରାନ୍ତର କୌଣସି କ୍ଷେତ୍ରରୁ କ୍ରିୟା ଆରମ୍ଭ କରୁ ତେବେ ଆମକୁ ପ୍ରାଣ ଓ ଜଡ଼ର ଅନୁରୂପ ଉପାୟ ଓ ପଦ୍ଧତି ଗ୍ରହଣ କରିବାକୁ ହେବ ଏବଂ ପ୍ରାଣିକ ଓ ଜଡ଼ଶକ୍ତିର ସର୍ତ୍ତ ଓ ପ୍ରୟୋଗବିଧିକୁ ମାନି ଚଳିବାକୁ ହେବ । ପ୍ରାରମ୍ଭିକ ଅବସ୍ଥାରେ ଏ ଦିଗରେ ଯେଉଁସବୁ କ୍ରିୟା ଗ୍ରହଣ କରାଯାଇଥାଏ ବା ଯେଉଁସବୁ ସାଫଲ୍ୟ ଓ ପୂର୍ଣ୍ଣତା ହାସଲ କରାଯାଇଥାଏ ସେସବୁକୁ ଆହୁରି ବିସ୍ତାରିତ କରାଯାଇପାରେ, ଏପରିକି ଏ ଦିଗରେ ଥିବା ସାଧାରଣ ସମ୍ଭାବନାସବୁକୁ ମଧ୍ୟ ଅତିକ୍ରମ କରାଯାଇପାରେ, କିନ୍ତୁ ତଥାପି ଯେଉଁ ଭୂମିରୁ ଆମେ କ୍ରିୟା ଆରମ୍ଭ କରିଥାଉ, ତାହାରି ଉପରେହିଁ ଆମକୁ ଛିଡ଼ା ହେବାକୁ ହୁଏ ଏବଂ ତାହାରି ସୀମା ଭିତରେହିଁ ରହିବାକୁ ହୁଏ । ଏହା ଅବଶ୍ୟ ଠିକ୍ ନୁହେଁ ଯେ ଦୁଇ ପ୍ରାନ୍ତରୁ ଆରମ୍ଭ କରାଯାଇଥିବା କ୍ରିୟା ପରସ୍ପର ସହିତ ମିଳିତ ହେବେ ନାହିଁ ବା ଉଚ୍ଚତର ପୂର୍ଣ୍ଣତା ନିଜ ଭିତରେ ନିମ୍ନତର ପୂର୍ଣ୍ଣତାକୁ ଗ୍ରହଣ କରି

ତାହାକୁ ଉପରକୁ ଉଠାଇ ନେଇ ପାରିବ ନାହିଁ । ଏହା କିନ୍ତୁ ହୋଇ ପାରିବ ଦୃଷ୍ଟିକୋଣ, ଅଭୀପ୍ସା ଓ ଲକ୍ଷ୍ୟରେ ନିମ୍ନରୁ ଉର୍ଦ୍ଧ୍ୱକୁ ଏକ ରୂପାନ୍ତର ଦ୍ୱାରା ଏବଂ ଆମର ଲକ୍ଷ୍ୟ ଯଦି ହୁଏ ମାନବିକ୍ ଜୀବନକୁ ଦିବ୍ୟ ଭାଗବତ ଜୀବନରେ ରୂପାନ୍ତରିତ କରିବା, ତେବେ ଆମକୁ ଏହା କରିବାକୁହିଁ ପଡ଼ିବ । କିନ୍ତୁ ଏଥିପାଇଁ ପ୍ରୟୋଜନ ହେଉଛି ମାନବ-ଜୀବନର କ୍ରିୟାସବୁକୁ ଗ୍ରହଣ କରି ତାହାକୁ ଆତ୍ମାର ଶକ୍ତି ଦ୍ୱାରା ରୂପାନ୍ତରିତ କରାଇବା । ଏଠାରେ ନିମ୍ନତର ପୂର୍ଣ୍ଣତା ଏକାବେଳେକେ ଲୋପ ପାଇଯିବ ନାହିଁ, ଏହା ରହିବ କିନ୍ତୁ ଉଚ୍ଚତର ଏକ ପୂର୍ଣ୍ଣତା ଦ୍ୱାରା ଆହୁରି ମହତ୍ତର ଓ ରୂପାନ୍ତରିତ ହେବ ଯାହା କେବଳ ଚେତନାର ଶକ୍ତି ଦ୍ୱାରା ସମ୍ଭବ । ଆମେ ଯଦି କାବ୍ୟ ଓ କଳା, ଦାର୍ଶନିକ ଚିନ୍ତାଧାରା, ଲିଖିତ ଭାଷାର ପୂର୍ଣ୍ଣତା ବା ପାର୍ଥିବ ଜୀବନର ସାଂଗଠନିକ ପୂର୍ଣ୍ଣତା ବିଷୟ ବିଚାର କରୁ ତେବେ ଏହା ବେଶ୍ ପରିଷ୍କାର ହେବ । ଏସମସ୍ତକୁ ଗ୍ରହଣ କରିବାକୁ ହେବ ଏବଂ ଏ କ୍ଷେତ୍ରରେ ଯେଉଁ ସମ୍ଭାବନାସବୁକୁ କାର୍ଯ୍ୟକାରୀ କରାଯାଇ ସାରିଛି ବା ଯେଉଁ ପୂର୍ଣ୍ଣତା ହାସଲ ହୋଇ ସାରିଛି ସେସବୁକୁ ଅନ୍ତର୍ଭୁକ୍ତ କରିବାକୁ ହେବ ଏକ ନବତର ଓ ମହତ୍ତର ପୂର୍ଣ୍ଣତା ଭିତରେ ଏବଂ ତାହାସହିତ ଯୋଗ କରିବାକୁ ହେବ ଆଧ୍ୟାତ୍ମିକ ଚେତନାର ଏକ ବ୍ୟାପକତର ଦୃଷ୍ଟି ଓ ପ୍ରେରଣା ତଥା ନୂତନ ରୂପ ଓ ଶକ୍ତି । ଶରୀରର ପୂର୍ଣ୍ଣତା କ୍ଷେତ୍ରରେ ମଧ୍ୟ ଏହାହିଁ ପ୍ରଯୁଜ୍ୟ ।

ମୌଳିକ ଭାବରେ ଏହି ଆଧ୍ୟାତ୍ମିକ ଅନ୍ୱେଷଣରେ ଜୀବନ ଓ ଜଡ଼କୁ ଗ୍ରହଣ କରାଗଲେ ଏପରି କେତେକ ବିଷୟକୁ ସ୍ଥାନ ଦେବାକୁ ହେବ ଯାହା ପୁରାତନ ଆଧ୍ୟାତ୍ମିକ ଅନୁଷ୍ଠାନଗୁଡ଼ିକ ନିଜ ଲକ୍ଷ୍ୟର ପ୍ରତିକୂଳ ବୋଲି ମନେ କରିବେ । କାରଣ ପୁରାତନ ଆଧ୍ୟାତ୍ମିକତା ସଂସାର-ଜୀବନରୁ ମୁଖ ଫେରାଇ ତାହାଠାରୁ ସଂପୂର୍ଣ୍ଣ ଦୂରେଇ ଯିବାକୁ ଚାହେଁ ଓ ତା'ର ଲକ୍ଷ୍ୟ ହେଲା ଜୀବନ ଓ ଜଡ଼ର ବର୍ଜନ ଏବଂ ଶେଷରେ ତା'ର ସଂପୂର୍ଣ୍ଣ ପରିତ୍ୟାଗ । କିନ୍ତୁ ଯେଉଁ ଦିବ୍ୟ ଜୀବନ ସଂସାର ଭିତରେହିଁ ରୂପାୟିତ ହେବ ବା ଯେଉଁ

ଅନୁଷ୍ଠାନ ଏହାକୁ ନିଜର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ବୋଲି ଗ୍ରହଣ କରିବ ତାହା ପୃଥିବୀର ସାଧାରଣ ମାନବ ଜୀବନଠାରୁ ନିଜକୁ କେବେହେଲେ ପୂରାପୂରି ବିଚ୍ଛିନ୍ନ ରଖି ନ ପାରେ ବା ପାର୍ଥିବ ଜୀବନ ସଂପର୍କରେ କେବେହେଲେ ସଂପୂର୍ଣ୍ଣ ଉଦାସୀନ ରହି ନ ପାରେ । ଏହା ପୃଥିବୀ ଭିତରେହିଁ ଭଗବାନଙ୍କ କାମ କରିବାକୁ ଚାହେଁ, ପୃଥିବୀର ବାହାରେ ବା ତା'ଠାରୁ ବିଚ୍ଛିନ୍ନ ଭାବରେ ନୁହେଁ । ଅତି ପ୍ରାଚୀନ କାଳରେ ଋଷିମାନଙ୍କ ଆଶ୍ରମ-ଜୀବନରେ ଏହି ପ୍ରକାର ସଂଯୋଗ ଥିଲା, ସେମାନେ ଥିଲେ ସ୍ରଷ୍ଟା, ଶିକ୍ଷାବିତ୍, ଏବଂ ମନୁଷ୍ୟର ପଥପ୍ରଦର୍ଶକ; ପ୍ରାଚୀନ କାଳରେ ଭାରତୀୟମାନଙ୍କ ଜୀବନର ବିକାଶ ଓ ପରିଚାଳନା ସେମାନଙ୍କର ସୃଜନଶୀଳ ପ୍ରଭାବ ଦ୍ୱାରା ବହୁଭାବରେ ପ୍ରଭାବିତ ହେଉଥିଲା । ଅବଶ୍ୟ ଏହା ସଙ୍ଗେ ଆମ ନୂତନ ପ୍ରୟାସରେ ସ୍ଥାନ ପାଇଥିବା ଜୀବନ ଓ କ୍ରିୟାବଳି ସଂପୂର୍ଣ୍ଣରୂପେ ସମାନ ବା ଅଭିନ୍ନ ନୁହେଁ । କିନ୍ତୁ ତାହାର କ୍ରିୟା ମଧ୍ୟ ଏହି ପୃଥିବୀ ଉପରେହିଁ ହେବ ଏବଂ ପୃଥିବୀରେ ତାହା ହେବ ଏକ ନୂତନ ସୃଷ୍ଟି । ପୃଥିବୀ ସହିତ ଏବଂ ସାଧାରଣ ଜୀବନରେ ଯେଉଁସବୁ କ୍ରିୟା ସ୍ଥାନ ପାଏ ତା' ସହିତ ଏହାର ସଂପର୍କ ଏବଂ ଯୋଗାଯୋଗ ରହିବ ଏବଂ ଏହାର ପ୍ରାଥମିକ ଓ ପ୍ରାରମ୍ଭିକ ଲକ୍ଷ୍ୟ ମଧ୍ୟ ବାହାର ଜଗତରେ ସ୍ଥାନ ପାଉଥିବା ଅନୁରୂପ କ୍ରିୟାଠାରୁ ବିଶେଷ କିଛି ପୃଥକ୍ ହେଲା ପରି ବୋଧ ହେବ ନାହିଁ । ଆଶ୍ରମବାସୀ ସାଧକମାନଙ୍କ ପିଲାଙ୍କ ଶିକ୍ଷା ନିମନ୍ତେ ଆମ ଆଶ୍ରମରେ ଏକ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇ ସାମାନ୍ୟ ପରିବର୍ତ୍ତନ ସହ ପ୍ରଚଳିତ ଶିକ୍ଷା-ପଦ୍ଧତିର ଧାରାକୁହିଁ ଅନୁସରଣ କରାଯାଇଛି । ଏହି ଶିକ୍ଷାରେ ଶରୀରଚର୍ଚ୍ଚାକୁ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦିଆଯାଇଛି ଏବଂ ଖେଳ ଓ କୁସ୍ତିକସରତ୍‌ର ବିଶେଷ ଚର୍ଚ୍ଚା ହୋଇ ଆଶ୍ରମର ଯୁବ କ୍ରୀଡ଼ାବିଭାଗ ସଂଗଠିତ ହୋଇଛି ଏବଂ ତାହାରି ମୁଖପତ୍ରରୂପେ ବୁଲେଟିନ୍ ପ୍ରକାଶ ପାଉଛି । କେତେକେ ପ୍ରଶ୍ନ କରନ୍ତି ଯେ ଆଧ୍ୟାତ୍ମିକ ସାଧନା ନିମିତ୍ତ ଗଠିତ ଏକ ଆଶ୍ରମରେ ଖେଳକସରତ୍‌ର କ'ଣ ସ୍ଥାନ ଥାଇପାରେ ଏବଂ

କ୍ରୀଡ଼ା ଓ ଆଧ୍ୟାତ୍ମିକତା ଭିତରେ କ'ଣ ସଂପର୍କ ଥାଇପାରେ ? ଏହି ପ୍ରକାର ଏକ ଅନୁଷ୍ଠାନର ମଣିଷର ସାଧାରଣ ଜୀବନ ସଙ୍ଗେ ଯୋଗାଯୋଗ ଓ ସଂପର୍କ ରହିବାର ଆବଶ୍ୟକତା ସମ୍ପର୍କରେ ମୁଁ ଯାହା ଲେଖିଛି ତହିଁରୁ ଏହାର ପ୍ରଥମ ଉତ୍ତର ମିଳିବ । ପୂର୍ବବର୍ତ୍ତୀ ସଂଖ୍ୟାରେ ମୁଁ ମଧ୍ୟ ଦର୍ଶାଇଛି ଯେ ଏହି ଶରୀରଚର୍ଚ୍ଚାର ଜାତୀୟ ଜୀବନରେ କିପରି ଉପଯୋଗିତା ରହିଛି ଓ ଆନ୍ତର୍ଜାତୀୟ ଜୀବନ ପାଇଁ ଏହାର କିପରି ମୂଲ୍ୟ ରହିଛି । କିନ୍ତୁ ଏ ସଂପର୍କରେ ଆମେ ଆଉ ଏକ ଉତ୍ତର ପାଇବୁ ଯଦି ଆମେ ଦୃଷ୍ଟିକୁ ପ୍ରସାରିତ କରି ସର୍ବାଙ୍ଗୀଣ ପୂର୍ଣ୍ଣତା ପାଇଁ ଅଭୀପ୍‌ସାର କଥା ବିଚାର କରୁ ଯାହାର କି ଏକ ଅପରିହାର୍ଯ୍ୟ ଅଙ୍ଗ ହେଉଛି ଶରୀରର ପୂର୍ଣ୍ଣତା ।

କ୍ରୀଡ଼ା ଓ ଶାରୀରିକ ବ୍ୟାୟାମ ଆଦି କାର୍ଯ୍ୟକୁ ଆଶ୍ରମଜୀବନରେ ସ୍ଥାନ ଦେବା ସମ୍ପର୍କରେ ଏହା ସ୍ପଷ୍ଟ ଯେ ଯେଉଁ ପ୍ରାଥମିକ ଲକ୍ଷ୍ୟ ଓ ପଦ୍ଧତି ଗ୍ରହଣ କରାଯିବ ତାହା ସତ୍ତାର ନିମ୍ନତର ଲକ୍ଷ୍ୟର ଅନ୍ତର୍ଭୁକ୍ତ । ଆରମ୍ଭରେ ଏହାର ପ୍ରବର୍ତ୍ତନ ହୋଇଥିଲା ଆଶ୍ରମ ସ୍କୁଲରେ ପିଲାମାନଙ୍କ ଶାରୀରିକ ଶିକ୍ଷା ଓ ଦେହର ବିକାଶ ନିମନ୍ତେ । ନିଜ କାର୍ଯ୍ୟକ୍ରମ ଭିତରେ ପୂରାପୂରି ଆଧ୍ୟାତ୍ମିକ ଲକ୍ଷ୍ୟ ଓ ସାଧନାକୁ ଗ୍ରହଣ କରିବା ନିମନ୍ତେ ଏମାନେ ନିତାନ୍ତ ଅପ୍ରାପ୍ତବୟସ୍କ; ତା' ଛଡ଼ା ଏମାନେ ଯେତେବେଳେ ପ୍ରାପ୍ତବୟସ୍କ ହୋଇ ନିଜର ଭବିଷ୍ୟତ୍ ଜୀବନର ଲକ୍ଷ୍ୟ ସ୍ଥିର କରିବେ, ସେତେବେଳେ ଏମାନଙ୍କ ଭିତରୁ ବହୁ ସଂଖ୍ୟାରେ ଯେ ଆଧ୍ୟାତ୍ମିକ ଜୀବନ ଗ୍ରହଣ କରିବେ ଏପରି କୌଣସି ନିଶ୍ଚିତତା ନାହିଁ । ତେଣୁ ଲକ୍ଷ୍ୟ ହେଉଛି ଶରୀରର ତାଲିମ ଓ ଶିକ୍ଷା, ଏବଂ ଏହି ଶିକ୍ଷା ଦ୍ୱାରା ଯେତେଦୂର ସମ୍ଭବ ମନ ଓ ଚରିତ୍ରର କିଛି ଅଂଶରେ ବିକାଶ । ଏହା କିପରି ହେବ ମୁଁ ପୂର୍ବବର୍ତ୍ତୀ ସଂଖ୍ୟାରେ ତା'ର ସୂଚନା ଦେଇଛି । ତେବେ ଏହି ସୀମା ଭିତରେ ଯାହାକିଛି ହାସଲ କରାଯାଇ ପାରିବ ତାହା ହେଉଛି ଆପେକ୍ଷିକ ଏବଂ ମାନବୀୟ ପୂର୍ଣ୍ଣତା ମାତ୍ର । ଏହା ଅପେକ୍ଷା ଅଧିକ କିଛି ଲାଭ କରିବାକୁ ହେଲେ କେବଳ ଉଚ୍ଚତର ଶକ୍ତିର

ହସ୍ତକ୍ଷେପ ଦ୍ୱାରା ଅର୍ଥାତ୍ ଅନ୍ତରାତ୍ମିକ ବା ଆଧ୍ୟାତ୍ମିକ ଶକ୍ତିର ହସ୍ତକ୍ଷେପ ଦ୍ୱାରାହିଁ ତାହା ସମ୍ଭବ ହୋଇପାରେ । ତଥାପି ମାନବିକ ଶକ୍ତିର ସୀମା ଭିତରେ ଅନେକ କିଛି ହାସଲ କରାଯାଇ ପାରେ ଏବଂ କେତେକ କ୍ଷେତ୍ରରେ ଏହାର ପରିମାଣ ବେଶ୍ ବିପୁଳ ମଧ୍ୟ ହୋଇପାରେ । ଯେଉଁ କୃତିତ୍ୱକୁ ଆମେ ଅସାଧାରଣ ପ୍ରତିଭା ବୋଲି କହୁ ତାହା ମାନବିକ ବିକାଶର ସୀମା ଓ କ୍ଷମତା ଭିତରେହିଁ ହୋଇଥାଏ, ବିଶେଷ କରି ମନ ଓ ସଂକଳ୍ପ ଶକ୍ତିର କ୍ଷେତ୍ରରେ ଏହା ଦିବ୍ୟତ୍ୱର ପାଖାପାଖି ପହଞ୍ଚିଥାଏ । ଏପରିକି ଶରୀରର ନିଜ କ୍ଷେତ୍ରରେ ମଧ୍ୟ ମନ ଓ ସଂକଳ୍ପ ଶକ୍ତି ଦ୍ୱାରା ଯେଉଁ ଶାରୀରିକ କୃତିତ୍ୱ ହାସଲ କରିହୁଏ ତାହା ବିସ୍ମୟକର– ଶରୀରର ସହ୍ୟ କରିବାର ଶକ୍ତି ଓ ସମସ୍ତ ପ୍ରକାର ଦକ୍ଷତା ଅସାଧାରଣଭାବେ ବୃଦ୍ଧିପାଏ, ଆଦୌ କ୍ଳାନ୍ତ ବା ପରିଶ୍ରାନ୍ତ ନ ହୋଇ ଏପରି ଦୀର୍ଘ କାଳ ଶ୍ରମ କରିହୁଏ ଯାହାକି ପ୍ରଥମେ ଅସମ୍ଭବ ବୋଲି ମନେ ହୋଇଥା'ନ୍ତା, ସାଂଘାତିକ ଶାରୀରିକ ବେଦନା ଓ ଯନ୍ତ୍ରଣା ଭିତରେ ବି ପରାଭୂତ ନ ହୋଇ ନିଜର ସାହସ ରକ୍ଷା କରିବା ଆଦି ସମ୍ଭବପର ହୁଏ । ଶାରୀରିକ କ୍ଷେତ୍ରରେ ଏହିସବୁ ବିଜୟ ଏବଂ ସଫଳତା ଯାହା ଅନେକ ସମୟରେ ଅଲୌକିକତାର ପାଖାପାଖି ପହଞ୍ଚିଯାଏ ତାହା ମାନବୀୟ କୃତିତ୍ୱରହିଁ ଅନ୍ତର୍ଭୁକ୍ତ ଏବଂ ଆମର ସର୍ବାଙ୍ଗୀଣ ପୂର୍ଣ୍ଣତାର ଲକ୍ଷ୍ୟ ଭିତରେ ଆମେ ଏସବୁକୁ ସ୍ଥାନ ଦେଉଛୁ । ଅନେକ ସମୟରେ ଯୁଦ୍ଧ, ବିପଦ, ଦୁଃସାହସିକ ଅଭିଯାନ ଆଦି କୌଣସି ଅତ୍ୟନ୍ତ ସଂକଟଜନକ ଓ ନୈରାଶ୍ୟପୂର୍ଣ୍ଣ ପରିସ୍ଥିତିରେ ମନୁଷ୍ୟର ଦେହ, ମନ ଓ ପ୍ରାଣଠାରୁ ଅତ୍ୟଧିକ ଶକ୍ତି ଦାବି କରାଯାଏ ଓ ସେମାନେ ମଧ୍ୟ ଖୁବ୍ ଦୃଢ଼ତାର ସହ ନିରବଚ୍ଛିନ୍ନ ଭାବରେ ମଣିଷର ସେହି ଦାବିକୁ ପୂରଣ କରିଥା'ନ୍ତି । ସେମାନଙ୍କର ସହ୍ୟଶକ୍ତି ଆଶ୍ଚର୍ଯ୍ୟଜନକଭାବେ ବୃଦ୍ଧିପାଏ, ଏପରିକି ଦେହର ନିଶ୍ଚେତନ-ଶକ୍ତି ମଧ୍ୟ ଏହିସବୁ ଦାବିର ଯେଭଳି ଉତ୍ତର ଦେବାକୁ ସକ୍ଷମ ହୁଏ, ତାହା ବାସ୍ତବିକ ବିସ୍ମୟକର ।

ଶରୀର ହେଉଛି ନିଶ୍ଚେତନାର ଏକ ସୃଷ୍ଟି ଏବଂ ସ୍ୱୟଂ ନିଶ୍ଚେତନ, ଅନ୍ତତଃ ଏହାର ନାନା ଅଂଶ ଓ ପ୍ରଚ୍ଛନ୍ନ କ୍ରିୟାସବୁ ବହୁ ଭାବରେ ଅବଚେତନ । କିନ୍ତୁ ଆମେ ଯାହାକୁ ନିଶ୍ଚେତନା ବୋଲି କହୁ ତାହା ଏକ ବାହ୍ୟରୂପ ମାତ୍ର, ପ୍ରକୃତରେ ତାହା ହେଉଛି ଏହି ଅଲୌକିକ ବିଶ୍ୱ-ସୃଷ୍ଟିର ମୂଳରେ ଥିବା ସେହି ଗୋପନ ଚେତନା ବା ଅତିଚେତନାରହିଁ ବାସସ୍ଥଳୀ ବା ଯନ୍ତ୍ର । ଜଡ଼ ହେଉଛି ନିଶ୍ଚେତନାର ସୃଷ୍ଟି ଓ କ୍ଷେତ୍ର ଏବଂ ଏହି ନିଶ୍ଚେତନ ଜଡ଼ ଯେପରି ନିଖୁଣ ଭାବରେ କାର୍ଯ୍ୟ କରେ, କୌଣସି ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସିଦ୍ଧି ଦିଗରେ ଏହା ଯେପରି ନିଜର ଉପାୟସବୁକୁ ଅବ୍ୟର୍ଥ ଭାବରେ ବ୍ୟବହାର କରେ, ଯେଉଁ ବିସ୍ମୟକର କ୍ରିୟାସବୁ ଏହା ସମ୍ପନ୍ନ କରେ, ଯେଉଁ ଅପରୂପ ସୌନ୍ଦର୍ଯ୍ୟର ସୃଷ୍ଟି କରେ ତାହା ଆମର ସମସ୍ତ ଅଜ୍ଞ ଅସ୍ୱୀକାର ସତ୍ତ୍ୱେ ପ୍ରମାଣ କରେ ଯେ ଏହି ଭୌତିକ ଜଡ଼-ବିଶ୍ୱର ପ୍ରତ୍ୟେକଟି ଗତିବୃତ୍ତିରେ ଓ ପ୍ରତ୍ୟେକଟି ଅଂଶରେ ସେହି ପରମ ଅତିଚେତନାର ଶକ୍ତି ଓ ଚେତନା ପୂରି ରହିଛି । ଶରୀର ମଧ୍ୟରେ ବି ଏହା ରହିଛି, ତାହାକୁ ନିର୍ମାଣ କରିଛି ଏବଂ ଆମର ଚେତନାରେ ଏହାର ଆବିର୍ଭାବ ହେଉଛି ବିବର୍ତ୍ତନର ଗୋପନ ଲକ୍ଷ୍ୟ, ଆମ ଅସ୍ତିତ୍ୱର ସମଗ୍ର ରହସ୍ୟର ଚାବିକାଠି ।

ଶାରୀରିକ ବ୍ୟାୟାମ ଓ କ୍ରୀଡ଼ା ଆଦିକୁ ଶୈଶବ ଓ ଯୌବନର ପ୍ରାରମ୍ଭରେ ଦିଆଯାଉଥିବା ଶିକ୍ଷାର କ୍ଷେତ୍ରରେ ସ୍ଥାନ ଦେବାର ଉଦ୍ଦେଶ୍ୟ ହେଉଛି ବ୍ୟକ୍ତିର ଅନ୍ତର୍ନିହିତ ସମସ୍ତ ଶକ୍ତି ଓ ସମ୍ଭାବନାର ପୂର୍ଣ୍ଣ ବିକାଶ ନିମନ୍ତେ ସୁଯୋଗ ଦେବା । କିନ୍ତୁ ଏ ଦିଗରେ ଯେଉଁ ପଦ୍ଧତି ବା ଉପାୟ ଗ୍ରହଣ କରାଯାଏ ତାହା ଶରୀରର ସ୍ୱଭାବ ଓ ପ୍ରକୃତି ଦ୍ୱାରା ସୀମିତ, ତେଣୁ ଏହାର ଲକ୍ଷ୍ୟ ହେବ ଶରୀରର ଶକ୍ତି ଓ କ୍ଷମତାର ଆପେକ୍ଷିକ ମାନବୀୟ ପୂର୍ଣ୍ଣତା । ତହିଁ ସଙ୍ଗେ ସଙ୍ଗେ ମନ, ସଂକଳ୍ପ, ଚରିତ୍ର ଓ କର୍ମ ଆଦି ଶକ୍ତିର ବିକାଶ ମଧ୍ୟ ଏହି ଲକ୍ଷ୍ୟର ଅନ୍ତର୍ଗତ, କାରଣ ଶରୀର ହେଉଛି ଏମାନଙ୍କର ବାସସ୍ଥଳୀ ତଥା ଯନ୍ତ୍ର । ମାନସିକ ତଥା ନୈତିକ ପୂର୍ଣ୍ଣତା

ଦିଗରେ ଏହି ଶରୀର-ଶିକ୍ଷାର ଅବଦାନ ସମ୍ପର୍କରେ ମୁଁ ଅନେକ ଲେଖିଛି, ତେଣୁ ଏଠାରେ ତା'ର ପୁନରାବୃତ୍ତି ନିଷ୍ପ୍ରୟୋଜନ । ଏହିସବୁ ଉପାୟ ଅବଲମ୍ବନରେ ଶରୀରର ଯେଉଁ ପୂର୍ଣ୍ଣତା ଆଣିବାକୁ ହେବ ତାହା ହେଲା ପ୍ରଥମତଃ ଏହାର ସ୍ୱାଭାବିକ ଗୁଣ ଓ କ୍ଷମତାଗୁଡ଼ିକର ବିକାଶ । ଦ୍ୱିତୀୟତଃ ମନ ବା ସଂକଳ୍ପଶକ୍ତି, ପ୍ରାଣଶକ୍ତି ଓ ସଚଳବୋଧ ଏହି ଶରୀରଠାରୁ ଯେଉଁ କାର୍ଯ୍ୟ ଦାବି କରନ୍ତି ବା ଆମ ସ୍ୱଭାବର ଆଉ ଏକ ଅପରିଚିତ ଅଥଚ ଗୁରୁତ୍ୱପୂର୍ଣ୍ଣ ଉପାଦାନ ଓ ପ୍ରତିନିଧି ସୂକ୍ଷ୍ମ ଶାରୀରସତ୍ତାର ଆବେଗ ଓ ପ୍ରବୃତ୍ତିସବୁ ଏହାଠାରୁ ଯେଉଁ କାର୍ଯ୍ୟ ଦାବି କରନ୍ତି, ସେସବୁକୁ କରିବା ପାଇଁ ଏହାର ଏକ ସାଧାରଣ ଦକ୍ଷତାର ବିକାଶ ଆବଶ୍ୟକ । ଶରୀରର ସ୍ୱାଭାବିକ ପୂର୍ଣ୍ଣତା ଦିଗରେ ସ୍ୱାସ୍ଥ୍ୟ ଓ ସାମର୍ଥ୍ୟ ହେଉଛି ପ୍ରଥମ ସର୍ତ୍ତ, କେବଳ ମାଂସପେଶୀର ସାମର୍ଥ୍ୟ ବା ଅଙ୍ଗପ୍ରତ୍ୟଙ୍ଗର ଶକ୍ତି ଓ ଶାରୀରିକ ଦୃଢ଼ତା ନୁହେଁ, ଆମର ସ୍ନାୟବିକ ସତ୍ତା ଓ ସୂକ୍ଷ୍ମ ଶରୀରସତ୍ତା ଶାରୀରିକ କ୍ରିୟାରେ ଯେଉଁସବୁ ସୂକ୍ଷ୍ମ, ସଚେତ ଓ ନମନୀୟ ଶକ୍ତିସବୁର ନିୟୋଗ କରନ୍ତି, ସେସବୁର ମଧ୍ୟ ବିକାଶ ଆବଶ୍ୟକ । ଏହା ଅପେକ୍ଷା ଆହୁରି ସଚଳ ଏକ ଶକ୍ତି ରହିଛି, ଯାହାକୁ କି ଜୀବନଶକ୍ତିକୁ ଆହ୍ୱାନ ଫଳରେ ଶରୀର ମଧ୍ୟରେ ତାକୁ କ୍ରିୟାଶୀଳ କରାଯାଇପାରେ ଏବଂ ଏହା ଫଳରେ ଶରୀର ଏପରିସବୁ ଅସାଧାରଣ କାର୍ଯ୍ୟ କରିବାକୁ ସକ୍ଷମ ହୁଏ ଯାହାକି ସାଧାରଣ ଅବସ୍ଥାରେ ଏହା ପକ୍ଷେ ସଂପୂର୍ଣ୍ଣ ଅସମ୍ଭବ ହୋଇଥାଆନ୍ତା । ଆହୁରି ମଧ୍ୟ ଏପରି ସାମର୍ଥ୍ୟ ଓ ଶକ୍ତିସବୁ ରହିଛି ଯାହା ମନ ଓ ସଂକଳ୍ପ ଶକ୍ତି ସେମାନଙ୍କର ଦାବି ଓ ପ୍ରଣୋଦନା ଦ୍ୱାରା ଓ ସେମାନଙ୍କର ଗୋପନ ଶକ୍ତି– ଯେଉଁସବୁ ଶକ୍ତିକୁ ଆମେ ବ୍ୟବହାର କରୁ ବା ଯାହାର ଉତ୍ସକୁ ସ୍ପଷ୍ଟଭାବେ ନ ଜାଣି ଆମେ ଯାହା ଦ୍ୱାରା ବ୍ୟବହୃତ ହେଉ, ସେହିସବୁ ଶକ୍ତିର କ୍ରିୟା ଦ୍ୱାରା ଶରୀରକୁ ଅଭୂତପୂର୍ବ ସାମର୍ଥ୍ୟ ଦେଇପାରନ୍ତି ବା ତା'ର ପ୍ରଭୁ ଓ ପ୍ରେରଣାଦାତାରୂପେ ତା' ଉପରେ ଏହି ସାମର୍ଥ୍ୟକୁ ଚାପି

ଦେଇପାରନ୍ତି । ଶରୀରର ଯେଉଁସବୁ ସ୍ୱାଭାବିକ ଗୁଣ ଓ କ୍ଷମତାସବୁକୁ ଏହିପରିଭାବେ ଜାଗ୍ରତ, ଉଦ୍ଦୀପିତ ଓ ତାଲିମପ୍ରାପ୍ତ କରାଯାଇ ଶରୀରର ସାଧାରଣ ଧର୍ମ ଓ କ୍ରିୟାରେ ପରିଣତ କରାଯାଇପାରେ ତାହା ଭିତରେ ପ୍ରଧାନ ହେଉଛି ସମସ୍ତ ପ୍ରକାର ଶାରୀରିକ କ୍ରିୟାରେ ନିପୁଣତା ଓ ସ୍ଥୈର୍ଯ୍ୟ । ଉଦାହରଣସ୍ୱରୂପ ଦୌଡ଼ ପ୍ରତିଯୋଗୀର କ୍ଷିପ୍ରତା, ମଲ୍ଲଯୋଦ୍ଧାର ନିପୁଣତା, ପର୍ବତାରୋହଣକାରୀର କୌଶଳ ଓ ସହନଶକ୍ତି ଓ ସୈନ୍ୟ, ନାବିକ, ପର୍ଯ୍ୟଟକ ବା ଆବିଷ୍କାରକର ଶରୀରଠାରୁ ଦାବି କରାଯାଉଥିବା ଅସାଧାରଣ କ୍ଷମତା ଆଦି ଯାହା ସମ୍ପର୍କରେ ମୁଁ ଆଗରୁ କହିଛି, ସେସବୁକୁ ଏହି ଲକ୍ଷ୍ୟର ଅନ୍ତର୍ଭୁକ୍ତ କରାଯିବ । ସମସ୍ତ ପ୍ରକାର ଦୁଃସାହସିକ ଅଭିଯାନ କ୍ଷେତ୍ରରେ ତଥା ଅନ୍ୟାନ୍ୟ କ୍ଷେତ୍ରରେ ମଣିଷ ଯେଉଁସବୁ ବ୍ୟାପକ ଶାରୀରିକ କୃତିତ୍ୱ ସହ ପରିଚିତ ବା ଯେଉଁସବୁ ବିଶେଷ କୃତିତ୍ୱ ଭିତରକୁ ସେ ନିଜ ସଂକଳ୍ପ ଦ୍ୱାରା ହେଉ ବା ପରିସ୍ଥିତିର ଚାପରେ ହେଉ ଠେଲି ହୋଇଯାଏ, ସେସବୁକୁ ଆମ ଲକ୍ଷ୍ୟରେ ଗ୍ରହଣ କରାଯିବ । ଏହାଠାରୁ ଯାହା ଆଶା କରାଯାଏ, ତା'ହେଉଛି ଶରୀରର ସାଧାରଣ ସାମର୍ଥ୍ୟ । ଏ ସାମର୍ଥ୍ୟ ହାସଲ କରିଥିବା ବ୍ୟକ୍ତିଙ୍କ ସଂଖ୍ୟା ଅଳ୍ପ ହେଉ ବା ବହୁତ ହେଉ, ଏକ ବିସ୍ତୃତ ଓ ବହୁମୁଖୀ ଶାରୀରିକ ଶିକ୍ଷା ଓ ଶୃଙ୍ଖଳା ଦ୍ୱାରା ଏହାକୁ ବ୍ୟାପକ କରାଯାଇ ପାରେ । ଏଥିରୁ କେତେକ କ୍ରିୟାକୁ କ୍ରୀଡ଼ାର ଅନ୍ତର୍ଭୁକ୍ତ କରାଯାଇପାରେ, ଆଉ କେତେକ ପାଇଁ କ୍ରୀଡ଼ା ଓ ବ୍ୟାୟାମ ହେବ ଏକ ଫଳପ୍ରଦ ପ୍ରସ୍ତୁତି । କେତେକ କ୍ଷେତ୍ରରେ ମିଳିତ ଓ ସମଷ୍ଟିଗତ କ୍ରିୟା ଓ ଶୃଙ୍ଖଳା ପାଇଁ ଉପଯୁକ୍ତ ତାଲିମ ଦରକାର । ସେ ଦିଗରେ ଆମର ଶାରୀରିକ ବ୍ୟାୟାମ ବ୍ୟକ୍ତିକୁ ଠିକ୍ ଭାବରେ ତିଆରି କରିଦେଇପାରେ । ଅନ୍ୟ କେତେକ କ୍ଷେତ୍ରରେ ଯାହା ଖୁବ୍ ଆବଶ୍ୟକ ତା ହେଉଛି ଏକ ଉନ୍ନତ ବ୍ୟକ୍ତିସଂକଳ୍ପ, ମାନସିକ ନୈପୁଣ୍ୟ, କ୍ଷିପ୍ର ପ୍ରତ୍ୟକ୍ଷବୋଧ, ସମର୍ଥ ପ୍ରାଣଶକ୍ତି ଓ ସୂକ୍ଷ୍ମ ଶାରୀରିକ ପ୍ରଣୋଦନା ଯାହା ଏହି ଶାରୀରିକ ଶିକ୍ଷାରୁ ପର୍ଯ୍ୟାପ୍ତ

ଭାବରେ ମିଳିପାରେ । ଶରୀରର ସ୍ୱାଭାବିକ କ୍ଷମତା ତଥା ମନ ଓ ସଂକଳ୍ପଶକ୍ତିର ଯନ୍ତ୍ର ହିସାବରେ ଶରୀରର ଯୋଗ୍ୟତା ଓ କ୍ଷମତା ସମ୍ପର୍କରେ ଆମର ଚିନ୍ତାଧାରା ଭିତରେ ଏ ସମସ୍ତଙ୍କୁ ସ୍ଥାନ ଦିଆଯାଇଛି, ତେଣୁ ଶରୀରର ସାମଗ୍ରିକ ପୂର୍ଣ୍ଣତା ସମ୍ପର୍କରେ ଆମର ଚିନ୍ତାଧାରା ଏ ସମସ୍ତଙ୍କୁ ଅନ୍ତର୍ଭୁକ୍ତ କରୁଛି ।

ଏହି ପୂର୍ଣ୍ଣତା ପାଇଁ ଦୁଇଟି ସର୍ତ୍ତ ଆବଶ୍ୟକ – ଶାରୀର ଚେତନାକୁ ଯେତେଦୂର ସମ୍ଭବ ପୂର୍ଣ୍ଣାଙ୍ଗ ଓ ସାମଗ୍ରିକ ଭାବରେ ଜାଗ୍ରତ କରିବା ଏବଂ ଏଥିରେ ନିହିତ ଥିବା ଶକ୍ତି ଓ ସମ୍ଭାବନାସବୁର ଆବାହନ ତଥା ଶିକ୍ଷାକୁ ଯେତେଦୂର ସମ୍ଭବ ପୂର୍ଣ୍ଣାଙ୍ଗ, ଉନ୍ନତ ଓ ବହୁମୁଖୀ କରିବାକୁ ଚେଷ୍ଟା କରିବା । ନିଃସନ୍ଦେହ ଭାବରେ ଶରୀରରୂପକ ଏହି ଆଧାରର ମୂଳବସ୍ତୁ ନିଶ୍ଚେତନା ଦ୍ୱାରାହିଁ ସୃଷ୍ଟ ଓ ତାହା ଦ୍ୱାରା ଚତୁର୍ଦିଗରୁ ସୀମିତ, କିନ୍ତୁ ତଥାପି ଏହା ନିଜ ଭିତରେ ଥିବା ଗୋପନ ଚେତନାକୁ ବିକଶିତ କରିଚାଲିଛି ଏବଂ କ୍ଲାନ୍ତ ଶକ୍ତି ଓ ଆନନ୍ଦର ଆଲୋକରେ ନିଜର ଅଭିବୃଦ୍ଧିକୁ ଆଗେଇ ନେଇଚାଲିଛି । ଏହିସବୁ ବିକାଶ-କ୍ଷେତ୍ରରେ ଶରୀର ତା'ର ମାନବିକ ବିବର୍ତ୍ତନରେ ଯେଉଁଠି ଆସି ପହଞ୍ଚିଲାଣି ଆମକୁ ତାକୁ ସେହିଠାରୁହିଁ ଧରିବାକୁ ହେବ, ଯେତେଦୂର ସମ୍ଭବ ସେହି ବିକାଶଗୁଡ଼ିକର ପୂର୍ଣ୍ଣ ସଦୁପଯୋଗ କରିବାକୁ ହେବ ଏବଂ ବ୍ୟକ୍ତିର ପ୍ରକୃତି ଓ ସ୍ୱଭାବ ଅନୁଯାୟୀ ଯେତେଦୂର ସମ୍ଭବ ଏହି ବିବର୍ତ୍ତନକୁ ତା'ର ସର୍ବୋଚ୍ଚ ଶିଖରକୁ ଆଗେଇ ନେବାକୁ ହେବ । ପୃଥିବୀରେ ପ୍ରକାଶ ପାଇଥିବା ସମସ୍ତ ମୂର୍ତ୍ତବସ୍ତୁ ଭିତରେ ଏକ ଶକ୍ତି ବରାବର କ୍ରିୟାଶୀଳ ରହିଥାଏ । ନିମ୍ନତର ରୂପସବୁର କ୍ଷେତ୍ରରେ ଏହା ଅଚେତନ ଭାବରେ ସକ୍ରିୟ ହୋଇଥାଏ ଅଥବା ଜଡ଼ତା ଦ୍ୱାରା ଅବଦମିତ ହୋଇଥାଏ, କିନ୍ତୁ ମନୁଷ୍ୟ କ୍ଷେତ୍ରରେ ଏହା ଆରମ୍ଭରୁହିଁ ସଚେତ ଥାଏ, ଏହାର ଶକ୍ତି ଓ ସମ୍ଭାବନାସବୁ ଆଂଶିକ ଭାବରେ ଜାଗ୍ରତ ଓ ଆଂଶିକ ଭାବରେ ଗୁପ୍ତ ଓ ନିହିତ ରହିଥାଏ । ଯାହା ଜାଗ୍ରତ ହୋଇଛି

ତାହାକୁ ପୂର୍ଣ୍ଣରୂପେ ସଚେତ କରିବାକୁ ହେବ, ଯାହା ଗୁପ୍ତ ରହିଛି ତାହାକୁ ଜାଗ୍ରତ ଓ କ୍ରିୟାଶୀଳ କରିବାକୁ ହେବ, ଯାହା ନିହିତ ରହିଛି ତାହାକୁ ଆବାହନ ଏବଂ ଶିକ୍ଷିତ କରିବାକୁ ହେବ । ଏଠାରେ ଶାରୀର ଚେତନାର ଦୁଇଟି ବିଭାବ ରହିଛି । ଗୋଟିଏ ବିଭାବ ଦେହର ସ୍ତରରେ ସ୍ୱୟଂଚାଳିତ ଯନ୍ତ୍ର ପରି ମନର କୌଣସି ହସ୍ତକ୍ଷେପ ବିନା କାମ କରିଯାଏ । କେତେକ କ୍ଷେତ୍ରରେ ଏହି କ୍ରିୟାକୁ ମନ ପ୍ରତ୍ୟକ୍ଷ ଭାବରେ ଜାଣିବାର ସମ୍ଭାବନା ନ ଥାଏ, କିଂବା ଜାଣିଲେ ମଧ୍ୟ ଥରେ ଆରମ୍ଭ ହୋଇଗଲେ ଏହା ଆପେ ଆପେ ଚାଲୁଥାଏ । ଏହା ଚାଲେ ମନର କୌଣସି ପରିଚାଳନା ଉପରେ ନିର୍ଭର ନ କରୁଥିବା ଆପାତତଃ ଏକ ଯାନ୍ତ୍ରିକ କ୍ରିୟା ଦ୍ୱାରା ଏବଂ ମନ ହସ୍ତକ୍ଷେପ ନ କରିବା ପର୍ଯ୍ୟନ୍ତ ଏହା ସେହିପରି ଚାଲୁଥାଏ ।

ଆଉ କେତେକ କ୍ରିୟା ରହିଛି ଯାହାକୁ ମନ ଦ୍ୱାରା ଶିକ୍ଷିତ ଓ ତାଲିମ କରାଯାଇ ଥିଲେ ବି କୌଣସି ଚିନ୍ତା ବା ଇଚ୍ଛାଶକ୍ତିର ସାହାଯ୍ୟ ବିନା ଆପେ ଆପେ ନିର୍ଭୁଲଭାବେ ଚାଲିପାରେ । ଏପରି ମଧ୍ୟ କେତେକ କ୍ରିୟା ରହିଛି ଯାହାକି ନିଦ୍ରା ସମୟରେ ବି ଚାଲିପାରେ ଏବଂ ସେଥିରୁ ଜାଗ୍ରତ ଚେତନା ପାଇଁ ଅନେକ ମୂଲ୍ୟବାନ୍ ଫଳ ମିଳେ । କିନ୍ତୁ ଏ ସମ୍ପର୍କରେ ଅଧିକ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି ଏକ ଶିକ୍ଷିତ ଓ ବିକଶିତ ସ୍ୱୟଂକ୍ରିୟତା ଯାହା ଫଳରେ କି ଚକ୍ଷୁ, କର୍ଣ୍ଣ ଓ ହସ୍ତ ଆଦି ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗସବୁ ଏପରି କୌଶଳୀ ଓ କାର୍ଯ୍ୟଦକ୍ଷ ହେବେ ଯେ ସେମାନଙ୍କଠାରୁ ଯେତେବେଳେ ଯେଉଁ କାର୍ଯ୍ୟ ଦରକାର ହେବ ତାହା ଯେପରି ସଙ୍ଗେ ସଙ୍ଗେ କରିଦେଇ ପାରୁଥିବେ । ଯନ୍ତ୍ର ହିସାବରେ ଏପରି ଉନ୍ନତ ଓ ସ୍ୱତଃସ୍ଫୂର୍ତ୍ତ ହେବେ ଯେ ମନ ଓ ପ୍ରାଣ ସେମାନଙ୍କଠାରୁ ଯେଉଁ କାର୍ଯ୍ୟ ଦାବି କରିବେ ତାହା ପୂରଣ କରିଦେବାକୁ ସଦା ପ୍ରସ୍ତୁତ ରହିଥିବେ । ଯଦି ସତ୍ତାର ନିମ୍ନପ୍ରାନ୍ତରୁ କାର୍ଯ୍ୟ ଆରମ୍ଭ କରାଯାଏ ଏବଂ ତା'ର ପଦ୍ଧତି ଓ ଉପାୟର ସୀମା ଭିତରେ ରହିବାକୁ ପଡ଼େ ତେବେ ଆମେ ଯାହା ହାସଲ କରିପାରୁ ଏହାହିଁ ତା'ର

ସାଧାରଣତଃ ସର୍ବୋଚ୍ଚ ସୀମା । ଏହା ଅପେକ୍ଷା ଅଧିକ କିଛି କରିବାକୁ ଚାହିଁଲେ ଆମକୁ ସ୍ୱୟଂ ମନ ଓ ପ୍ରାଣର ଶକ୍ତି ବା ସତ୍ତାର ଶକ୍ତି ପ୍ରତି ଏବଂ ଶରୀରର ଏକ ମହତ୍ତର ପୂର୍ଣ୍ଣତା ଦିଗରେ ସେମାନଙ୍କର କ୍ରିୟା ପ୍ରତି ଦୃଷ୍ଟି ଫେରାଇବାକୁ ପଡ଼ିବ । ଶାରୀରିକ କ୍ଷେତ୍ରରେ ଦୈହିକ ଉପାୟ ଓ ପଦ୍ଧତି ଦ୍ୱାରା ଯାହା ହାସଲ କରିହେବ ତାହା ସଂପୂର୍ଣ୍ଣ ଅନିଶ୍ଚିତ ଏବଂ ସୀମାବଦ୍ଧ । ଏପରିକି ଯାହାକୁ ଉତ୍କୃଷ୍ଟ ଶାରୀରିକ ସ୍ୱାସ୍ଥ୍ୟ ଓ ସବଳତା କୁହାଯାଏ ତାହା ନିର୍ଭରଯୋଗ୍ୟ ନୁହେଁ, ଯେକୌଣସି ମୁହୂର୍ତ୍ତରେ ତାହା ଭିତରର କୌଣସି ବୈଷମ୍ୟ ବା ବାହାରର କୌଣସି ଆକ୍ରମଣ ବା ଆଘାତ ଦ୍ୱାରା ସଂପୂର୍ଣ୍ଣରୂପେ ଭାଙ୍ଗି ଯାଇପାରେ । କେବଳ ନିଜର ସୀମାକୁ ଭାଙ୍ଗି ଅତିକ୍ରମ କରିଯିବା ଦ୍ୱାରାହିଁ ଆମେ ଏକ ଉଚ୍ଚତର ନିର୍ଭରଯୋଗ୍ୟ ପୂର୍ଣ୍ଣତା ହାସଲ କରିପାରୁ । ଆମର ଚେତନା ମୁଖ୍ୟତଃ ଯେଉଁ ଦିଗରେ ବିକଶିତ ହେବା ଉଚିତ ତାହା ହେଉଛି ଶରୀର ଓ ତା'ର ଶକ୍ତିସବୁ ଉପରେ ଅଧିକରୁ ଅଧିକ ଉର୍ଦ୍ଧ୍ୱ ତଥା ଗଭୀରରୁ ଚେତନାର ନିୟନ୍ତ୍ରଣ ଏବଂ ଆମ ଚେତନାର ଏହିସବୁ ଉଚ୍ଚତର ପ୍ରଭାବ ପ୍ରତି ଶରୀରର ସଚେତ ସହଯୋଗ । ମାନବ ଏକ ମନଃପ୍ରଧାନ ଜୀବ, ସେ ଏକ ମନୋମୟ ସତ୍ତା; ପ୍ରାଣ ତଥା ଶରୀରର ନେତା ଓ ଚାଳକ ହୋଇ ସେ ଉପନିଷଦ୍‌ର ବର୍ଣ୍ଣନାନୁଯାୟୀ ମନୋମୟ ପୁରୁଷ ହିସାବରେ ଯେତିକି ଯେତିକି ବିକଶିତ ହୋଇଉଠିବ, ମାନବିକ ପୂର୍ଣ୍ଣତା ଦିଗରେ ସେତିକି ଦ୍ରୁତ ଗତିରେ ଆଗେଇ ଯାଇପାରିବ । ଯଦି ପ୍ରାଣଶକ୍ତିର, ସୂକ୍ଷ୍ମଦୈହିକ ଚେତନାର ଏବଂ ଶରୀରର ନାନା ପ୍ରବୃତ୍ତି ଓ ସ୍ୱୟଂକ୍ରିୟ ଗତିବୃତ୍ତିସବୁକୁ ମନ ନିଜ ହାତକୁ ନିଏ ଓ ସେସବୁକୁ ନିୟନ୍ତ୍ରିତ କରେ, ସେମାନଙ୍କ ଭିତରେ ଯଦି ମନ ସ୍ୱୟଂ ପ୍ରବେଶ କରି ସେଗୁଡ଼ିକୁ ସଚେତ ଭାବରେ ପରିଚାଳିତ କରେ ଅର୍ଥାତ୍ ସେମାନଙ୍କର ସହଜାତ ପ୍ରବୃତ୍ତିମୂଳକ ସ୍ୱତଃସ୍ଫୂର୍ତ୍ତ କ୍ରିୟାସବୁରେ ପୂର୍ଣ୍ଣଭାବରେ ମାନସିକ ଚେତନା ସଞ୍ଚାରିତ କରେ, ତେବେ ଏହିସବୁ ଶକ୍ତି ଅଧିକ ଉନ୍ନତ ହୁଏ, ସେମାନଙ୍କର

କ୍ରିୟା ମଧ୍ୟ ଅଧିକ ସଚେତ ଓ ନିଖୁଣ ହୁଏ । କିନ୍ତୁ ଏଥିପାଇଁ ସ୍ୱୟଂ ମନକୁ ପୂର୍ଣ୍ଣତା ଦିଗରେ ଆଗେଇ ଯିବାକୁ ହେବ ଏବଂ ଏହା ସୁଚାରୁରୂପେ କରିବାକୁ ହେଲେ ଏହାକୁ ଭୌତିକ ମନର ପ୍ରମାଦପୂର୍ଣ୍ଣ ବୁଦ୍ଧି ଉପରେ ନିର୍ଭର କଲେ ଚଳିବ ନାହିଁ, ଏପରିକି ଯୁକ୍ତିବୁଦ୍ଧିର କ୍ରିୟା ଯେତେ ନିର୍ଭୁଲ ଓ ସୁସଂବଦ୍ଧ ହେଲେ ମଧ୍ୟ ତଦ୍ୱାରା ସୀମାବଦ୍ଧ ହେଲେ ଚଳିବ ନାହିଁ । ଏଥିପାଇଁ ମନକୁ ସଂବୋଧିର ଅବସ୍ଥା ପ୍ରାପ୍ତ କରିବାକୁ ହେବ, ଏକ ବ୍ୟାପକତର, ଗଭୀରତର ଓ ଘନିଷ୍ଠତର ଦୃଷ୍ଟି ତଥା ଉଚ୍ଚତର ସଂବୋଧିମୟ ସଂକଳ୍ପର ଜ୍ୟୋତିର୍ମୟ ଶକ୍ତି ନେଇ ଆଗେଇ ଯିବାକୁ ହେବ । ଏପରିକି ବର୍ତ୍ତମାନ ମନ ବିବର୍ତ୍ତନର ଯେଉଁ ସ୍ତରରେ ପହଞ୍ଚିଛି, ସେହି ସୀମା ଭିତରେ ମଧ୍ୟ ଶରୀରର ଶକ୍ତି ଓ କ୍ରିୟାସବୁକୁ ନିୟନ୍ତ୍ରିତ ଓ ପରିଚାଳିତ କରିବା ଦିଗରେ ତାହାର ସାମର୍ଥ୍ୟର କୌଣସି ସୀମା ନିର୍ଦ୍ଧାରଣ କରାଯାଇ ପାରିବ ନାହିଁ । ପୁଣି ଯେତେବେଳେ ମନ ନିଜ ଶକ୍ତି ଓ କ୍ଷମତାର ଆହୁରି ଉଚ୍ଚତର ପରିସରକୁ ଉଠିଯାଇ ତା'ର ସମସ୍ତ ମାନବିକ ସୀମାକୁ ଅତିକ୍ରମ କରିଯିବ ସେତେବେଳେ ଏ ଦିଗରେ କୌଣସି ସୀମା ରଖିବା ଅସମ୍ଭବ । ଏପରିକି କେତେକ ଉପଲବ୍ଧିର କ୍ଷେତ୍ରରେ ଶାରୀରିକ ଅଙ୍ଗପ୍ରତ୍ୟଙ୍ଗର ସ୍ୱୟଂଚାଳିତ କ୍ରିୟା ଉପରେ ମଧ୍ୟ ଇଚ୍ଛାଶକ୍ତିର ହସ୍ତକ୍ଷେପ ସମ୍ଭବପର ହୋଇଥାଏ । ଯେଉଁଠି ସୀମାସବୁ ଘୁଞ୍ଚିଯାଇଛି, ଯେଉଁ ଅନୁପାତରେ ତାହା ଦୂର ହୋଇ ଯାଇଥାଏ, ଶରୀର ସେହି ଅନୁପାତରେ ନମନୀୟ ଓ ଗ୍ରହଣଶୀଳ ହୁଏ ଏବଂ ସେହି ଅନୁପାତରେ ତାହା ଆତ୍ମାର ଏକ ଯୋଗ୍ୟ ଓ ଉତ୍କୃଷ୍ଟ ଯନ୍ତ୍ରରୂପେ କ୍ରିୟା କରିପାରେ । ଏହି ଭୌତିକ ଜଗତରେ ସମସ୍ତ ଫଳପ୍ରଦ ଓ ପ୍ରକାଶାତ୍ମକ କ୍ରିୟା ପାଇଁ ଆମ ସତ୍ତାର ଦୁଇଟି ପ୍ରାନ୍ତର ସହଯୋଗ ନିତାନ୍ତ ଅପରିହାର୍ଯ୍ୟ । ଯଦି କ୍ଳାନ୍ତି, ସ୍ୱଭାବଗତ ଅକ୍ଷମତା ବା ଅନ୍ୟ କୌଣସି କାରଣ ହେତୁ ଶରୀର ଆମର ଚିନ୍ତା ବା ସଂକଳ୍ପକୁ କାର୍ଯ୍ୟକାରୀ କରିବାକୁ ଅସମର୍ଥ ହୁଏ କିଂବା ଯଦି ଏଥିପ୍ରତି ତା'ର କୌଣସି ପ୍ରକାର ଅସହଯୋଗିତା ଥାଏ ବା

ଯଥେଷ୍ଟ ସହଯୋଗିତା ନ ଥାଏ, ତେବେ କାମଟି ସେହି ଅନୁପାତରେ ବିଫଳ ହେବ, ପଛେଇଯିବ, ଆଶାନୁରୂପ ହେବ ନାହିଁ ବା କେତେକାଂଶରେ ଅସଂପୂର୍ଣ୍ଣ ରହିଯିବ । ଏପରିକି ଆତ୍ମାର ପ୍ରେରଣା ଯେତେବେଳେ କାବ୍ୟକବିତାର ସ୍ଫୁରଣ ପରି ସଂପୂର୍ଣ୍ଣ ମାନସିକ କ୍ରିୟା ଭିତରେ ନିଜକୁ ପ୍ରକାଶ କରିବାକୁ ଚାହେଁ ସେ କ୍ଷେତ୍ରରେ ମଧ୍ୟ ମସ୍ତିଷ୍କ ଭିତରେ ଆବଶ୍ୟକୀୟ ଗ୍ରହଣକ୍ଷମ ସ୍ପନ୍ଦନର ସାମର୍ଥ୍ୟ ଥିବା ଦରକାର, ଚିନ୍ତା ବା ଦୃଷ୍ଟିର ଯେଉଁ ଶକ୍ତି, ଶବ୍ଦର ଯେଉଁ ଜ୍ୟୋତି ନିଜର ପରିପୂର୍ଣ୍ଣ ପ୍ରକାଶ ଓ ଅଭିବ୍ୟକ୍ତି ପାଇଁ ବାଟ ଖୋଜୁଛି ମସ୍ତିଷ୍କ ଭିତରେ ତା'ର ବାଟ ସଂପୂର୍ଣ୍ଣ ଖୋଲା ଓ ପରିଷ୍କାର ରହିବା ଉଚିତ । ଯଦି ମସ୍ତିଷ୍କ କ୍ଲାନ୍ତ ହୋଇପଡ଼େ ବା କୌଣସି ପ୍ରତିବନ୍ଧକ ଦ୍ୱାରା ଏହାର କ୍ରିୟା ଠିକ୍ ଭାବରେ ଚାଲେ ନାହିଁ, ତେବେ ପ୍ରେରଣାର ପ୍ରବେଶପଥ ରୁଦ୍ଧ ହୋଇଯାଇ ତାହା ହୁଏତ ଆଦୌ ଆସିପାରିବ ନାହିଁ ଏବଂ କିଛି ବି ଲେଖା ହୋଇପାରିବ ନାହିଁ କିଂବା ତାହା ବ୍ୟର୍ଥ ହେବ ଓ ନିକୃଷ୍ଟ କିଛି ଲେଖା ମାତ୍ର ବାହାରିବ । ଏହା ମଧ୍ୟ ହୋଇପାରେ ଯେ ଯେଉଁ ଦୀପ୍ତତର ପ୍ରେରଣା ନିଜକୁ ପ୍ରକାଶ କରିବାକୁ ଚାହୁଁଥିଲା ହୁଏତ କୌଣସି ନିମ୍ନତର ପ୍ରେରଣା ତା'ର ସ୍ଥାନ ନେବ ବା ସ୍ୱଳ୍ପାଲୋକିତ କୌଣସି ପ୍ରେରଣାକୁ ରୂପ ଦେବାକୁ ମସ୍ତିଷ୍କ ଅଧିକ ସହଜ ମନେକରିବ । କିଂବା ତା' ନ ହେଲେ ନିଜେ ପରିଶ୍ରମ କରି କରି ନିଜର ନାନା ଗଠନକୁ ରୂପ ଦେଇ କାବ୍ୟକବିତା-ରଚନାରେ ନାନା କୃତ୍ରିମତାର ଆଶ୍ରୟ ନେବ । ଏପରିକି କେବଳ ଶୁଦ୍ଧ ମାନସିକ କ୍ରିୟା ପାଇଁ ମଧ୍ୟ ଶରୀରଯନ୍ତ୍ରର ଆବଶ୍ୟକ ଯୋଗ୍ୟତା, ଦକ୍ଷତା ଓ ତାଲିମ ନିତାନ୍ତ ଦରକାର । ସୁତରାଂ ସେହିସବୁ ପ୍ରସ୍ତୁତି, କ୍ଷମତା ଓ ଯୋଗ୍ୟତା ଶରୀରର ସର୍ବାଙ୍ଗୀଣ ପୂର୍ଣ୍ଣତାର ଏକ ଆବଶ୍ୟକ ଅଙ୍ଗ ।

ବିକାଶଶୀଳ ପରିବର୍ତ୍ତନର ଏଠାରେ ମୂଳ ଉଦ୍ଦେଶ୍ୟ ଓ ସଂକେତ ହେଲା ଏକ ଆପାତ ନିଶ୍ଚେତନ ବିଶ୍ୱରେ ଚେତନାର ଆବିର୍ଭାବ, ତାହାର

ଅଭିବୃଦ୍ଧି ଓ ତହିଁ ସଙ୍ଗେ ସଙ୍ଗେ ସତ୍ତାର ଜ୍ୟୋତି ଓ ଶକ୍ତିର ଅଭିବୃଦ୍ଧି; ରୂପ ବା ଆକାରର ବିକାଶ, ତା'ର କ୍ରିୟା ବା ତିଷ୍ଠି ରହିବା ପାଇଁ ତା'ର ଯୋଗ୍ୟତା ଆଦି ଯଦିଓ ନିତାନ୍ତ ଆବଶ୍ୟକ ଓ ଅପରିହାର୍ଯ୍ୟ ତଥାପି ଏହାକୁ ବିବର୍ତ୍ତନର ସମୁଦାୟ ଅର୍ଥ ବା କେନ୍ଦ୍ରୀୟ ଲକ୍ଷ୍ୟ ବୋଲି କୁହାଯାଇ ପାରିବ ନାହିଁ। ଚେତନାର ଅଧିକରୁ ଅଧିକ ଜାଗରଣ, ଉଚ୍ଚରୁ ଉଚ୍ଚତର ସ୍ତରକୁ ଏହାର ଆରୋହଣ, ଏହାର ଦୃଷ୍ଟି ଓ କ୍ରିୟାର ବିପୁଳତର ବ୍ୟାପ୍ତି– ଏହାହିଁ ହେଉଛି ଆମ ଅସ୍ତିତ୍ୱର ଲକ୍ଷ୍ୟ। ସେହି ସର୍ବୋତ୍ତମ ଓ ସର୍ବାଙ୍ଗୀଣ ପୂର୍ଣ୍ଣତା ଦିଗରେ ଏହାହିଁ ହେଉଛି ଅଗ୍ରଗତିର ସର୍ତ୍ତ। ଶରୀରର ସର୍ବାଙ୍ଗୀଣ ପୂର୍ଣ୍ଣତାର ଏହାହିଁ ମଧ୍ୟ ସର୍ତ୍ତ। ଆମେ ବର୍ତ୍ତମାନ ଯେତିକି ଧାରଣା କରିବାକୁ ସମର୍ଥ ତା ଅପେକ୍ଷା ମନର ଅନେକ ଉଚ୍ଚତର ସ୍ତର ରହିଛି, ଏବଂ ଦିନେ ନା ଦିନେ ଆମେ ସେଇଠି ପହଞ୍ଚିବୁ ଓ ସେସବୁକୁ ମଧ୍ୟ ଅତିକ୍ରମ କରି ଉଠିଯିବୁ ଆହୁରି ଉଚ୍ଚତର ଏବଂ ମହତ୍ତର ଆଧ୍ୟାତ୍ମିକ ସ୍ତରସବୁକୁ। ଆମେ ଯେତିକି ଯେତିକି ଉପରକୁ ଉଠିବୁ ଆମ ସତ୍ତାର ନିମ୍ନ ଅଂଶସବୁକୁ ସେହି ଊର୍ଦ୍ଧ୍ୱତର ସ୍ତରସବୁ ପ୍ରତି ସଂପୂର୍ଣ୍ଣ ଖୋଲିଦେବାକୁ ହେବ ଏବଂ ସେହିସବୁ ସର୍ବୋତ୍ତମ ମହାନ୍ ଜ୍ୟୋତି ଓ ଶକ୍ତିର ସଚଳତାରେ ସେଗୁଡ଼ିକୁ ପୂର୍ଣ୍ଣ କରିଦେବାକୁ ହେବ। ଶରୀରକୁ ଅଧିକରୁ ଅଧିକ ସଂପୂର୍ଣ୍ଣ ଏକ ସଚେତ ଆଧାର ଓ ଯନ୍ତ୍ରରୂପେ ଗଢ଼ିବାକୁ ହେବ, ଯାହା କି ହୋଇଉଠିବ ଆତ୍ମାର ଏକ ଚେତନଶୀଳ ପ୍ରତିଭୂ, ସଙ୍କେତ ଓ ଶକ୍ତି। ଏହି ପୂର୍ଣ୍ଣତା ଦିଗରେ ଶରୀର ଯେତିକି ଆଗେଇଯିବ ତାହାର ସଚଳ କ୍ରିୟାର ଶକ୍ତି ଏବଂ ପରିସର ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଆତ୍ମା ପ୍ରତି ତା'ର ସେବା ଓ ଉତ୍ତରଦାନର କ୍ଷମତା ତଥା ତା ଉପରେ ଆତ୍ମାର ନିୟନ୍ତ୍ରଣ ଓ କର୍ତ୍ତୃତ୍ୱ ମଧ୍ୟ ସେହି ଅନୁସାରେ ବୃଦ୍ଧି ପାଇବ। ବିକାଶ କରିଥିବା ବା ଅର୍ଜନ କରିଥିବା ନାନା ଶକ୍ତି ଓ କ୍ଷମତାର କ୍ଷେତ୍ରରେ ଏହାର ନମନୀୟତା ବୃଦ୍ଧି ପାଇବ। ଏକ ଯାନ୍ତ୍ରିକ ନିଶ୍ଚେତନାର କ୍ରିୟା ପରି ମନେ ହେଉଥିବା ଯେଉଁସବୁ ଜୈବିକ ଗତିବୃତ୍ତିର

କ୍ଷେତ୍ରରେ ଏହା ଏକ ସ୍ୱୟଂଚାଳିତ ଯନ୍ତ୍ର ପରି କାର୍ଯ୍ୟ କରେ, ସେ କ୍ଷେତ୍ରରେ ମଧ୍ୟ ଏହା ଆହୁରି ନମନୀୟ ହୋଇଉଠିବ । ଏକ ଯଥାର୍ଥ ରୂପାନ୍ତର ବିନା ଏହା ସମ୍ଭବପର ନୁହେଁ ଏବଂ ଗୋପନ ଭାବରେ ଆମର ସମଗ୍ର ବିବର୍ତ୍ତନହିଁ ମନ, ପ୍ରାଣ ଓ ସ୍ୱୟଂ ଶରୀରର ଏହିପରି ଏକ ରୂପାନ୍ତର ଦିଗରେ ଗତି କରିଚାଲିଛି ଯାହା ବିନା ପୃଥିବୀପୃଷ୍ଠରେ ଏକ ପୂର୍ଣ୍ଣାଙ୍ଗ ଦିବ୍ୟ ଜୀବନର ଆବିର୍ଭାବ ଆଦୌ ସମ୍ଭବପର ନୁହେଁ । ଏହି ରୂପାନ୍ତରରେ ସ୍ୱୟଂ ଶରୀର ହେବ ଏକ ପ୍ରତିନିଧି ତଥା ଅଂଶୀଦାର । ଅବଶ୍ୟ ଅନ୍ତରାତ୍ମା ପକ୍ଷରେ ଏହା ସମ୍ଭବପର ଯେ ନିଜର ଜଡ଼ସ୍ତରୀୟ କ୍ରିୟାର ଶେଷ ଓ ସର୍ବନିମ୍ନ ଅବଲମ୍ବନରୂପେ ନିଷ୍କ୍ରିୟ ଓ ଅପୂର୍ଣ୍ଣଭାବେ ସଚେତ ଏକ ଶରୀରକୁ ଆଶ୍ରୟ କରି ସେ ନିଜର ବେଶ୍ କିଛି ଅଭିବ୍ୟକ୍ତି ସମ୍ପନ୍ନ କରିପାରେ । କିନ୍ତୁ ତାହା କେବେହେଲେ ପୂର୍ଣ୍ଣାଙ୍ଗ ବା ସଂପୂର୍ଣ୍ଣ ହେବ ନାହିଁ । ଏକ ପୂର୍ଣ୍ଣ ସଚେତ ଶରୀର ତା'ର ଭୌତିକ ରୂପାନ୍ତର ପାଇଁ ଯଥାର୍ଥ ଭୌତିକ ପନ୍ଥା ଓ ପଦ୍ଧତି ଆବିଷ୍କାର କରିପାରେ ଓ ତାହାକୁ କାର୍ଯ୍ୟକାରୀ କରିପାରେ । ଅବଶ୍ୟ ଏଥିପାଇଁ ନିଃସନ୍ଦେହ ଭାବରେ ବ୍ୟକ୍ତି-ଚେତନାର ଶିଖରରେ ଆତ୍ମାର ସର୍ବୋତ୍ତମ ଆଲୋକ, ଶକ୍ତି ଏବଂ ସୃଜନଶୀଳ ଆନନ୍ଦ ଅଭିବ୍ୟକ୍ତ ହୋଇ ଶରୀରକୁ ସେମାନଙ୍କ ନିର୍ଦ୍ଦେଶ ଦେବା ଆବଶ୍ୟକ; କିନ୍ତୁ ତଥାପି ସ୍ୱୟଂ ଶରୀର ନିଜର ଆବିଷ୍କାର ଓ ସିଦ୍ଧି ଦିଗରେ ନିଜର ସ୍ୱତଃସ୍ଫୂର୍ତ୍ତ ଭୂମିକା ଗ୍ରହଣ କରିପାରେ । ଏହିପରି ଭାବରେ ନିଜର ରୂପାନ୍ତର ତଥା ସମଗ୍ର ସତ୍ତାର ଏକ ପୂର୍ଣ୍ଣାଙ୍ଗ ରୂପାନ୍ତର ଦିଗରେ ଶରୀର ହେବ ଏକ ପ୍ରତିନିଧି ଓ ଅଂଶଗ୍ରହଣକାରୀ । ଶରୀରର ସାମଗ୍ରିକ ପୂର୍ଣ୍ଣତାର ଏହା ହେବ ଏକ ଅଂଶ, ଏକ ସଙ୍କେତ ଓ ପ୍ରମାଣସ୍ୱରୂପ ।

ଯଦି ଚେତନାର ଆବିର୍ଭାବ ଓ ଅଭିବୃଦ୍ଧି ବିବର୍ତ୍ତନର କେନ୍ଦ୍ରୀୟ ଲକ୍ଷ୍ୟ ତଥା ତାହାର ଗୋପନ ଉଦ୍ଦେଶ୍ୟର ଚାବିକାଠି ହୁଏ ତେବେ ସେହି ବିବର୍ତ୍ତନର ସ୍ୱଭାବ ଅନୁସାରେ ଏହି ଅଭିବୃଦ୍ଧି ନିଜ ସାମର୍ଥ୍ୟର କେବଳ

ଯେ ବ୍ୟାପ୍ତି ଓ ବିସ୍ତାର ଦିଗଟିକୁ ଗ୍ରହଣ କରିବ ତା ନୁହେଁ, ଏହା ମଧ୍ୟ ଆରୋହଣର ଦିଗଟିକୁ ଗ୍ରହଣ କରି ସମ୍ଭାବ୍ୟ ସର୍ବୋଚ୍ଚ ଶିଖରରେ ପହଞ୍ଚିବା ପର୍ଯ୍ୟନ୍ତ ଉଚ୍ଚରୁ ଉଚ୍ଚତର ସ୍ତରକୁ ଗତିକରିଚାଲିବ । କାରଣ ଏହାର ଗତି ଆରମ୍ଭ ହୋଇଛି ନିଶ୍ଚେତନାରେ ନିବର୍ତ୍ତନର ସର୍ବନିମ୍ନ ସ୍ତରରୁ, ଯାହାର କ୍ରିୟାକୁ ଆମେ ଦେଖିବାକୁ ପାଉ ଜଡ଼ ଦ୍ୱାରା ନିର୍ମିତ ହୋଇଥିବା ଏହି ଜଡ଼ଜଗତ୍ ଭିତରେ । ଏହା ଏକ ଅଜ୍ଞାନତା ଭିତରେ ଅଗ୍ରସର ହୁଏ କିନ୍ତୁ ତଥାପି ଏହା ହେଉଛି ଏକ ନିତ୍ୟବିକାଶଶୀଳ ଜ୍ଞାନ, ଯାହାକି ବରାବର ଏକ ନିତ୍ୟବର୍ଦ୍ଧମାନ ଆଲୋକ, 'ବୃହତ୍ତର ସଂଗଠନ, ସଫଳ ସଂକଳ୍ପ ଓ ନିଜର ସମସ୍ତ ନିହିତ ତଥା ପ୍ରକାଶୋନ୍ମୁଖ ଶକ୍ତିର ସମନ୍ୱୟ ଦିଗରେ ଅଗ୍ରସର ହେଉଥାଏ । ଏହା ଶେଷରେ ଏପରି ଏକ ଅବସ୍ଥାରେ ପହଞ୍ଚିବ ଯେଉଁଠିକି ଏହା ନିଜ କ୍ଷମତା ଓ କୃତିତ୍ୱର ଚୂଡ଼ାନ୍ତ ପୂର୍ଣ୍ଣତା ଅର୍ଜନ ଓ ବିକାଶ କରିପାରିବ । ସେତେବେଳେ ଆଉ ଅଜ୍ଞାନତା ଭିତରେ ଜ୍ଞାନର ସନ୍ଧାନ କରାହେବ ନାହିଁ, ସେତେବେଳେ ଜ୍ଞାନ ନିଜସତ୍ତାରେ ସ୍ୱୟଂ ପ୍ରତିଷ୍ଠିତ ହୋଇ ନିଜର ସତ୍ୟସବୁର ଉପରେ ପୂର୍ଣ୍ଣ କର୍ତ୍ତୃତ୍ୱ ବିସ୍ତାର କରିବ ଓ ଏପରି ଏକ ସ୍ୱାଭାବିକ ଶକ୍ତି ଓ ଦୃଷ୍ଟି ନେଇ ସେମାନଙ୍କୁ କ୍ରିୟାଶୀଳ କରିବ ଯାହାକୁ କୌଣସି ବନ୍ଧନ ବା ବିଭ୍ରାନ୍ତି ସ୍ପର୍ଶ କରିପାରିବ ନାହିଁ । ଯଦିବା ଏଠାରେ କୌଣସି ବନ୍ଧନ ରହେ ତେବେ ତାହା ହେବ ଏକ ସ୍ୱୟଂ-ଆରୋପିତ ଆବରଣ, ଯାହାର ପଶ୍ଚାତରେ ସେହିସବୁ ସତ୍ୟକୁ ଧରି ରଖାଯିବ ଉପଯୁକ୍ତ ସମୟରେ ପ୍ରକାଶ ନିମନ୍ତେ ଓ କୌଣସି ଅନ୍ୱେଷଣ ବା ଅଧିକାରର ଆବଶ୍ୟକତା ଅନୁଭବ ନ କରି ନିଜର ଇଚ୍ଛା ଅନୁସାରେ ଏହାକୁ ସଜାଡ଼ି ରଖାଯିବ ଓ ବିନିଯୋଗ କରାଯିବ ସେସବୁର ଯଥାର୍ଥ ସତ୍ୟ ଓ କ୍ରମ ଅନୁସାରେ ବା ସମୟର ଆହ୍ୱାନ ଆସିଲେ ଏହିସବୁ ଯେଉଁ କ୍ରମରେ ଅଭିବ୍ୟକ୍ତ ହେବ ସେହି ଅନୁସାରେ । ଏହାର ଅର୍ଥ ହେଉଛି ସ୍ୱୟଂସ୍ଥିତ ସତ୍ୟ ଚେତନାରେ ପ୍ରବେଶ ବା ତା'ର ସାନ୍ନିଧ୍ୟଲାଭ, ଯେତେବେଳେ ସତ୍ତା

ନିଜର ସତ୍ୟ ସମ୍ପର୍କରେ ସଂପୂର୍ଣ୍ଣ ସଚେତ ହେବ ଏବଂ ସୃଷ୍ଟି ଓ କାଳ ଭିତରେ ସେସବୁକୁ ଅଭିବ୍ୟକ୍ତ କରିବାକୁ ତା'ର ଅନ୍ତର୍ନିହିତ ସାମର୍ଥ୍ୟ ମଧ୍ୟ ରହିବ ସେତେବେଳେ ସବୁକିଛିହିଁ ହେବ ସତ୍ୟ, ଯାହା ନିଜର ଅଭ୍ରାନ୍ତ ପଦକ୍ଷେପକୁ ଅନୁସରଣ କରିବ ଓ ନିଜର ସମନ୍ୱୟସବୁକୁ ଯଥାର୍ଥ ରୂପ ଦେବ; ପ୍ରତ୍ୟେକଟି ଚିନ୍ତା, ସଂକଳ୍ପ ଓ ଅନୁଭୂତି ହେବ ସ୍ୱତଃସ୍ଫୂର୍ତ୍ତ ଭାବରେ ଅଭ୍ରାନ୍ତ; ଏହାର ମୂଳରେ ରହିବ ସମ୍ବୋଧି ଓ ଉଚ୍ଚତର ପ୍ରତ୍ୟାଦେଶ ଏବଂ ସତ୍ୟର ଆଲୋକ ଦ୍ୱାରା ଚାଳିତ ହୋଇ ଏହା ହେବ ପୂର୍ଣ୍ଣତାର ସୁସ୍ପଷ୍ଟ ପ୍ରକାଶ । ସବୁକିଛିହିଁ ଆତ୍ମାର ଅନ୍ତର୍ନିହିତ ସତ୍ୟକୁ ପ୍ରକାଶ କରିବେ, ଆତ୍ମାର ପରିପୂର୍ଣ୍ଣ ଶକ୍ତି ମଧ୍ୟ କେତେକାଂଶରେ ଅଭିବ୍ୟକ୍ତ ହେବ । ମନର ବର୍ତ୍ତମାନ ସୀମାକୁ ଅତିକ୍ରମ କରାଯିବ ଓ ମନ ହୋଇଉଠିବ ସତ୍ୟ-ଆଲୋକର ଏକ ଅଭ୍ରାନ୍ତ ଦ୍ରଷ୍ଟା, ସଂକଳ୍ପ ହୋଇଉଠିବ ସତ୍ୟର ଏକ କ୍ଷମତା ଓ ଶକ୍ତି, ଜୀବନ ହେବ ସତ୍ୟର ଏକ କ୍ରମବର୍ଦ୍ଧମାନ ପରିପୂର୍ଣ୍ଣତା ଏବଂ ସ୍ୱୟଂ ଶରୀର ହୋଇଉଠିବ ସତ୍ୟର ଏକ ସଚେତ ଆଧାର ତଥା ତା'ର ଆତ୍ମ-ଅଭିବ୍ୟକ୍ତିର ଏକ ଅବଲମ୍ବନ ଏବଂ ତା'ର ଆତ୍ମ-ସଚେତ ଅସ୍ତିତ୍ୱର ଏକ ରୂପ ବା ଆକାର । ଯଦି ପୃଥିବୀରେ ଦିବ୍ୟ ଜୀବନ ସ୍ଥାପନ କରିବାକୁ ହୁଏ ବା ଜଡ଼ର ଜଗତରେ ଆଧ୍ୟାତ୍ମିକ ଚେତନାର ପୂର୍ଣ୍ଣ ଅଭିବ୍ୟକ୍ତିକୁ ସମ୍ଭବ କରିବାକୁ ହୁଏ ତେବେ ଏହି ସତ୍ୟ-ଚେତନାର ଅନ୍ତତଃ କିଛିଟା ପ୍ରାରମ୍ଭିକ ଉଦ୍ୟୋଗ, ତାହାର ସ୍ୱରୂପ ଓ କ୍ରିୟାର କିଛିଟା ପ୍ରାରମ୍ଭିକ ସ୍ପର୍ଶ ବା କାର୍ଯ୍ୟାରମ୍ଭ ନିତାନ୍ତ ଆବଶ୍ୟକ । ଅତି କମ୍‌ରେ ଏହି ସତ୍ୟ-ଚେତନାର ଆମ ମନ, ପ୍ରାଣ ଓ ଶରୀର ସହ ଯୋଗାଯୋଗ ରହିବା ଆବଶ୍ୟକ, ଏସବୁକୁ ସ୍ପର୍ଶ କରିବା ପାଇଁ ତାହା ଅବତରଣ କରି ଆସିବା ଆବଶ୍ୟକ । ଦେହ, ପ୍ରାଣ ଓ ମନର ସମସ୍ତ ଗତିବୃତ୍ତି ଓ କ୍ରିୟାକୁ ଏହା ନିୟନ୍ତ୍ରିତ କରିବା ଆବଶ୍ୟକ । ସେମାନଙ୍କ ପ୍ରେରଣାସବୁର ଉତ୍ସ ହେବା ସଙ୍ଗେ ସଙ୍ଗେ ଏହି ସତ୍ୟ-ଚେତନା ସେମାନଙ୍କର ସମସ୍ତ ଶକ୍ତିକୁ ନିଜ କର୍ତ୍ତୃତ୍ୱ ଅଧୀନରେ ଆଣି ସେସବୁର

ଲକ୍ଷ୍ୟ ଓ ଗତିପଥକୁ ରୂପ ଦେବ । ଏହାର ସ୍ପର୍ଶ ପାଇଥିବା ସମସ୍ତେ ଯେ ଏହାକୁ ପୂର୍ଣ୍ଣ ଭାବରେ ମୂର୍ତ୍ତ କରିବାକୁ ସମର୍ଥ ହେବେ ତା ନୁହେଁ, କିନ୍ତୁ ପ୍ରତ୍ୟେକ ବ୍ୟକ୍ତି ତା'ର ନିଜ ଆଧ୍ୟାତ୍ମିକ ସ୍ୱଭାବ, ଅନ୍ତର୍ନିହିତ କ୍ଷମତା ଓ ପ୍ରକୃତିରେ ତା'ର ବିବର୍ତ୍ତନର ଧାରା ଅନୁଯାୟୀ ଏହାକୁ କିଛି ଅଂଶରେ ରୂପ ଦେଇପାରିବେ, ଯେତିକି ପୂର୍ଣ୍ଣତା ପାଇଁ ସେମାନଙ୍କର ଆଶୁ କ୍ଷମତା ଥିବ ତାହା ସେମାନେ ନିର୍ବିଘ୍ନରେ ହାସଲ କରିପାରିବେ ଓ ପ୍ରକୃତି ତଥା ଆତ୍ମାର ସତ୍ୟକୁ ପୂର୍ଣ୍ଣ ଭାବରେ ଆୟତ୍ତ କରିବା ପଥରେ ଆଗେଇଯିବେ ।

ଏପରି ଏକ ସତ୍ୟ-ଚେତନାର କ୍ରିୟାରେ କିଛିଟା ସଚେତ ଦୃଷ୍ଟି ଓ ସଂକଳ୍ପର ଏକ ସ୍ୱୟଂକ୍ରିୟତା ଭିତର ଦେଇ ତା'ର ସୋପାନ ଓ ଗତିପଥ ନିର୍ଣ୍ଣୀତ ହେବ । ବର୍ତ୍ତମାନର ସେହି ନିଶ୍ଚେତନା ବା ଆପାତ ନିଶ୍ଚେତନାମୂଳକ ଯେଉଁ ଅବ୍ୟର୍ଥ ସ୍ୱୟଂକ୍ରିୟତା ଏକ ଆପାତ ଶୂନ୍ୟ ଭିତରୁ ଏହି ଅଲୌକିକ ବିଶ୍ୱକୁ ନିର୍ମାଣ କରିଛି ତା'ର ସ୍ଥାନ ନେବ ପୂର୍ବୋକ୍ତ ସତ୍ୟମୂଳକ ସ୍ୱୟଂକ୍ରିୟତା । ଏହା ସୃଷ୍ଟି କରିବ ସତ୍ତାର ପ୍ରକାଶ ଓ ଅଭିବ୍ୟକ୍ତି ଦିଗରେ ଏକ ନୂତନ ଶୃଙ୍ଖଳା ଯେଉଁଠିକି ପୂର୍ଣ୍ଣାଙ୍ଗ ପରିପୂର୍ଣ୍ଣତା ସମ୍ଭବପର ହେବ ଏବଂ ଚୂଡ଼ାନ୍ତ ସମ୍ଭାବନାର ପରିଧି ଭିତରେ ଦେଖାଦେବ ପୂର୍ଣ୍ଣତାର ସର୍ବୋତ୍ତମ ଓ ସର୍ବାଙ୍ଗୀଣ ରୂପ । ଯଦି ଆମେ ଏହି ଶକ୍ତିକୁ ଜଡ଼ଜଗତ୍ ଭିତରକୁ ଆକର୍ଷଣ କରି ଉତାରି ଆଣିବୁ ତେବେ ମାନବିକ ପୂର୍ଣ୍ଣତା ସଂପର୍କରେ, ବ୍ୟକ୍ତି, ଜାତି ଓ ସମାଜର ପୂର୍ଣ୍ଣତା ସଂପର୍କରେ, ଆତ୍ମକର୍ତ୍ତୃତ୍ୱ ତଥା ପ୍ରକୃତିର ଶକ୍ତିସବୁ ଉପରେ ଓ ସେଗୁଡ଼ିକର ଚାଳନା ଓ ବିନିଯୋଗ ଉପରେ ସଂପୂର୍ଣ୍ଣ କର୍ତ୍ତୃତ୍ୱ ସଂପର୍କରେ ଆମେ ଯୁଗ ଯୁଗ ଧରି ଯେଉଁ ସ୍ୱପ୍ନ ଦେଖି ଆସିଛୁ ତାହା ଶେଷରେ ପରିପୂର୍ଣ୍ଣଭାବେ ସଫଳ ହେବାର ସମ୍ଭାବନା ଦେଖାଦେବ । ଏହି ମାନବିକ ସ୍ୱୟଂପୂର୍ଣ୍ଣତା ସମସ୍ତ ସୀମାକୁ ଅତିକ୍ରମ କରିଯାଇ ଏକ ଦିବ୍ୟ ଜୀବନରେ ରୂପାନ୍ତରିତ ହୋଇପାରେ । ଜଡ଼ ତା'ର ନିଜ ଭିତରେ ଜୀବନର ଶକ୍ତି ଓ ମନର ଆଲୋକକୁ ଗ୍ରହଣ କରି ପ୍ରକାଶ

କରି ସାରିବା ପରେ ନିଜ ଭିତରେ ଉଚ୍ଚତର ବା ସର୍ବୋଚ୍ଚ ଶକ୍ତି ଏବଂ ଆତ୍ମାର ଆଲୋକକୁ ମଧ୍ୟ ଉତାରି ଆଣିପାରେ ଏବଂ ଏକ ପାର୍ଥିବ ଶରୀରରେହିଁ ତା'ର ଅବଚେତନାର ଅଂଶକୁ ପରିତ୍ୟାଗ କରି ଆତ୍ମାର ଏକ ପୂର୍ଣ୍ଣ ସଚେତ ଆକାରରେ ପରିଣତ ହୋଇପାରେ । ନିଜ ଭିତରେ ଉତରି ଆସି ବାସ କରୁଥିବା ଏହି ଶକ୍ତିର ସଂକଳ୍ପ ଓ କ୍ଷମତା ଦ୍ୱାରାହିଁ ଶରୀରର ସ୍ୱାସ୍ଥ୍ୟ ଓ ଶକ୍ତି ପୂର୍ଣ୍ଣ ଭାବରେ ସୁରକ୍ଷିତ ହେବ । ଶରୀର-ଆଧାରର ସମସ୍ତ ସ୍ୱାଭାବିକ କ୍ଷମତା, ଦୈହିକ ଚେତନାର ସମସ୍ତ ଶକ୍ତି ସେମାନଙ୍କର ଚୂଡ଼ାନ୍ତ ଅବସ୍ଥାରେ ପହଞ୍ଚିବେ, ଇଚ୍ଛାନୁଯାୟୀ ସେମାନଙ୍କୁ ବ୍ୟବହାର କରିହେବ ଓ ସେମାନଙ୍କ ନିର୍ଭୁଲ କ୍ରିୟା ସଂପର୍କରେ ସଂପୂର୍ଣ୍ଣ ନିଶ୍ଚିତ ହୋଇହେବ । ଯନ୍ତ୍ର ହିସାବରେ ଶରୀର ତା'ର ପୂର୍ଣ୍ଣତମ କ୍ଷମତା ଅର୍ଜନ କରିବ; ଏବଂ ବ୍ୟକ୍ତି ତା'ଠାରୁ ଯାହା ଦାବି କରିବ ସେସମସ୍ତ ପୂରଣ କରିବା ପାଇଁ ତା'ର ବର୍ତ୍ତମାନର କ୍ଷମତା ଅପେକ୍ଷା ସେ ସବୁଦିଗରୁ ବହୁ ଗୁଣରେ ଯୋଗ୍ୟ ଓ ସମର୍ଥ ହେବ । ଏପରିକି ପରମ ସୌନ୍ଦର୍ଯ୍ୟ ଏବଂ ଆନନ୍ଦର ଏକ ପ୍ରକାଶମୟ ଆଧାରରେ ପରିଣତ ହୋଇ ଏହି ଶରୀରହିଁ ଆତ୍ମାର ଆନନ୍ଦ ଓ ଆଲୋକକୁ ଚତୁର୍ଦ୍ଦିଗରେ ବିକୀର୍ଣ୍ଣ ଓ ବିଚ୍ଛୁରିତ କରିବ ଠିକ୍ ଯେପରି ଏକ କାଚବତି ନିଜ ଭିତରେ ଥିବା ଆଲୋକଶିଖାର ଜ୍ୟୋତିକୁ ଚତୁର୍ଦ୍ଦିଗରେ ବିଚ୍ଛୁରିତ କରେ । ନିଜ ଭିତରେ, ଏହା ଆତ୍ମାର ସୌନ୍ଦର୍ଯ୍ୟ, ପଶ୍ୟନ୍ତି ମନର ଆନନ୍ଦ, ଜୀବନର ଓ ଆଧ୍ୟାତ୍ମିକତାର ଆନନ୍ଦ ଏବଂ ଆତ୍ମାର ଚେତନାରେ ମୁକ୍ତ ଜଡ଼ର ଉତ୍ଫୁଲ୍ଲତାକୁ ଧାରଣ କରି ଏକ ନିରନ୍ତର ଆନନ୍ଦରେ ଉଲ୍ଲସିତ ହୋଇଉଠିବ । ଆଧ୍ୟାତ୍ମିକ ଶରୀରର ଏହାହିଁ ହେବ ସର୍ବାଙ୍ଗୀଣ ପୂର୍ଣ୍ଣତା ।

ଏ ସମସ୍ତ ବିଷୟ ହୁଏତ ଏକ ସମୟରେ ଆସି ନ ପାରେ, ଯଦିଓ ଜ୍ୟୋତିର ଏପରି ଏକ ସହସା ଉଦ୍ଭାସ ସମ୍ଭବପର ଯଦି ଦିବ୍ୟ ଶକ୍ତି, ଆଲୋକ ଓ ଆନନ୍ଦ ଆମ ସତ୍ତାର ଶିଖରରେ ପୂର୍ଣ୍ଣଭାବରେ ପ୍ରତିଷ୍ଠିତ

ହୋଇ ଆମ ମନ, ପ୍ରାଣ ଓ ଦେହକୁ ସେମାନଙ୍କ ଶକ୍ତି ପ୍ରେରଣ କରନ୍ତି ଏବଂ ସମସ୍ତ ଆଧାରରେ ଚେତନା ଜାଗ୍ରତ କରି ଦେହର କୋଷସବୁକୁ ପୁନର୍ଗଠିତ ଓ ଦୀପ୍ତିମୟ କରନ୍ତି । କିନ୍ତୁ ମାର୍ଗ ନିଶ୍ଚୟ ଖୋଲିଯିବ ଏବଂ ବ୍ୟକ୍ତି ଭିତରେ ଯେଉଁ ପୂର୍ଣ୍ଣତା ଅଭିବ୍ୟକ୍ତ ହେବା ସମ୍ଭବପର ସେସମସ୍ତ କ୍ରମଶଃ ପ୍ରକାଶିତ ହେବ । ସମଗ୍ର ସତ୍ତାର ଏହି ଚୂଡ଼ାନ୍ତ ପୂର୍ଣ୍ଣତାରେ ଶରୀର ମଧ୍ୟ ତା'ର ଅଂଶ ଗ୍ରହଣ କରିବ ।

ପରମ ବାସ୍ତବତା, ପରମ ସତ୍, ଚିତ୍, ଆନନ୍ଦ ଓ ସୌନ୍ଦର୍ଯ୍ୟକୁ ପ୍ରାପ୍ତ ହେବା ପାଇଁ ମୁକ୍ତ ସତ୍ତାର ଗତି ଭିତରେ ଯେତେବେଳେ ଅନନ୍ତ ଆତ୍ମା ବିବର୍ତ୍ତନଶୀଳ ପ୍ରକୃତି ସହ ଉଚ୍ଚତର ଶିଖର ତଥା ବୃହତ୍ତର ବ୍ୟାପ୍ତି ଦିଗରେ ଆଗେଇଯାଏ, ସେତେବେଳେ ଆହୁରି ଅନେକ କିଛି ସମ୍ଭାବନା ମଧ୍ୟ ଦେଖାଦିଏ । କିନ୍ତୁ ସେସବୁ ସମ୍ପର୍କରେ ବର୍ତ୍ତମାନ କହିବା ସମୟୋଚିତ ହେବ ନାହିଁ । ଯେତିକି କୁହାଯାଇଛି ବୋଧହୁଏ ମଣିଷର ମନ ତା'ର ବର୍ତ୍ତମାନର ସାମର୍ଥ୍ୟ ଦୃଷ୍ଟିରୁ ସେତିକି ପର୍ଯ୍ୟନ୍ତ କଳନା କରିବାକୁ ସାହସ କରିପାରେ ଓ ଜ୍ଞାନଦୀପ୍ତ ଚିନ୍ତା ଦ୍ୱାରା ଏହା ସମ୍ପର୍କରେ କିଛିଟା ଧରଣା କରାଯାଇପାରେ । ସତ୍ୟଚେତନାର ଅବତରଣ ଏବଂ ଜଡ଼ ଉପରେ ତା'ର କର୍ତ୍ତୃତ୍ୱବିସ୍ତାରର ଏହିସବୁ ପରିଣାମହିଁ ଯଥେଷ୍ଟ ଭାବରେ ବିବର୍ତ୍ତନଗତ ଶ୍ରମର ସାର୍ଥକତା ପ୍ରତିପାଦନ କରିବ । ସବୁକିଛିକୁ ଊର୍ଦ୍ଧ୍ୱକୁ ଉଠାଇ ନେଉଥିବା ଚେତନାର ଏହି ଊର୍ଦ୍ଧ୍ୱମୁଖୀ ଗତି ଓ ପ୍ରବେଗ ସହିତ ମଧ୍ୟ ଯୁକ୍ତ ହେବ ଏକହିଁ ସମୟରେ ବା ପରେ ପରେ ଆଧ୍ୟାତ୍ମିକ ପ୍ରକୃତିର ଏକ ସର୍ବଜୟୀ ଅବତରଣ ଯାହା ନିଜ ଭିତରେ ସବୁକିଛିକୁ ଗ୍ରହଣ କରିବ ଓ ସବୁକିଛିକୁ ରୂପାନ୍ତରିତ କରିବ ଏବଂ ଏହାରି ଭିତରେହିଁ ସଂଘଟିତ ହେବ ଜଡ଼, ଦୈହିକ ଚେତନା, ଶରୀରର ଆକୃତି ଓ କ୍ରିୟାର ଏପରି ଏକ ଗୌରବୋଜ୍ଜ୍ୱଳ ରୂପାନ୍ତର ଯାହାକୁ ଶରୀରର ସାମଗ୍ରିକ ତଥା ସର୍ବୋତ୍ତମ ପୂର୍ଣ୍ଣତା ବୋଲି କୁହାଯାଇପାରେ ।

୨୩ ମାର୍ଚ୍ଚ, ୧୯୪୯

# ଶିକ୍ଷା ପ୍ରସଙ୍ଗରେ ଶ୍ରୀମା

ଶ୍ରୀମା'ଙ୍କର ଶିକ୍ଷା ସମ୍ବନ୍ଧୀୟ ଏହି ପ୍ରଥମ ଛ'ଟି ପ୍ରବନ୍ଧର ମୂଳ ଇଂରାଜି ଲେଖା ପ୍ରଥମେ ଶ୍ରୀଅରବିନ୍ଦ ଆନ୍ତର୍ଜାତିକ ଶିକ୍ଷାକେନ୍ଦ୍ରର ତ୍ରୈମାସିକ ପତ୍ରିକା (Bulletin of Sri Aurobindo International Centre of Education)ରେ ନଭେମ୍ବର, ୧୯୫୦ରୁ ଆରମ୍ଭ ହୋଇ ଫେବ୍ରୁଆରି, ୧୯୫୨ ପର୍ଯ୍ୟନ୍ତ ପ୍ରକାଶିତ ହୋଇଥିଲା । ପରବର୍ତ୍ତୀ 'ଚତୁର୍ବିଧ ତପସ୍ୟା ଓ ଚତୁର୍ବିଧ ମୁକ୍ତି (Four Austerieties and Four Liberations)ର ତିନୋଟି ପ୍ରବନ୍ଧ ଫେବ୍ରୁଆରି ୧୯୫୩ରୁ ଆରମ୍ଭ ହୋଇ ଅଗଷ୍ଟ ୧୯୫୩ ପର୍ଯ୍ୟନ୍ତ ପ୍ରକାଶିତ ହୋଇଥିଲା ।

(୧)

## ଜୀବନ-ବିଜ୍ଞାନ

### (ଆତ୍ମ-ଜ୍ଞାନ ଓ ଆତ୍ମ-ସଂଯମ)

ଲକ୍ଷ୍ୟହୀନ ଜୀବନ ସର୍ବଦା ଏକ ଦୁଃଖମୟ ଜୀବନ ।

ତୁମ ପ୍ରତ୍ୟେକଙ୍କର ଏକ ଲକ୍ଷ୍ୟ ରହିବା ଉଚିତ । କିନ୍ତୁ ଏହା ଭୁଲିଯାଅ ନାହିଁ ଯେ ତୁମ ଲକ୍ଷ୍ୟର ଗୁଣ ଉପରେହିଁ ତୁମ ଜୀବନର ଗୁଣ ନିର୍ଭର କରେ ।

ତୁମର ଲକ୍ଷ୍ୟ ଉଚ୍ଚ ଏବଂ ବିସ୍ତୀର୍ଣ୍ଣ ତଥା ଉଦାର ଏବଂ ସ୍ୱାର୍ଥହୀନ ହେବା ଉଚିତ । ଏହା ଦ୍ୱାରାହିଁ ତୁମ ଜୀବନ ତୁମ ନିଜ ନିକଟରେ ଓ ଅନ୍ୟମାନଙ୍କ ନିକଟରେ ମୂଲ୍ୟବାନ୍ ହେବ ।

କିନ୍ତୁ ତୁମର ଆଦର୍ଶ ଯାହା ହେଉନା କାହିଁକି, ତାହାକୁ କେବେହେଲେ ପୂର୍ଣ୍ଣରୂପେ ଉପଲବ୍ଧି କରାଯାଇ ପାରିବ ନାହିଁ ଯେପର୍ଯ୍ୟନ୍ତ ତୁମ ନିଜ ଭିତରେ ପୂର୍ଣ୍ଣତାର ଉପଲବ୍ଧି ହୋଇ ନାହିଁ ।

ନିଜର ପୂର୍ଣ୍ଣତା ସକାଶେ କାର୍ଯ୍ୟ କରିବାର ପ୍ରଥମ ପାହାଚ ହେଲା ନିଜ ସଂପର୍କରେ, ନିଜ ସତ୍ତାର ବିଭିନ୍ନ ଅଂଶ ତଥା ସେମାନଙ୍କର କାର୍ଯ୍ୟାବଳୀ ସଂପର୍କରେ ସଚେତନ ହେବା । ଏହି ବିଭିନ୍ନ ଅଂଶଗୁଡ଼ିକୁ ପ୍ରତ୍ୟେକଟିକୁ ପୃଥକ୍ କରି ଚିହ୍ନିବାକୁ ହେବ ଏବଂ ତାହା ଫଳରେ ତୁମ ଭିତରେ ଯେଉଁସବୁ ଗତିବୃତ୍ତି ଦେଖାଦିଏ, ଯେଉଁସବୁ ଆବେଗ, ପ୍ରତିକ୍ରିୟା ଓ ପରସ୍ପର ବିରୋଧୀ ଇଚ୍ଛାସବୁ ତୁମକୁ କର୍ମରେ ପ୍ରବୃତ୍ତ କରାଏ, ସେସବୁର ମୂଳ କେଉଁଠି ତାହା ସ୍ପଷ୍ଟରୂପେ ଦେଖିପାରିବ । ଏହା ଏକ ଅକ୍ଲାନ୍ତ ଅଧ୍ୟୟନ, ଯାହା ପାଇଁ ପ୍ରଗାଢ଼ ଅଧ୍ୟବସାୟ

ଓ ଐକାନ୍ତିକତା ପ୍ରୟୋଜନ । କାରଣ ମଣିଷର ପ୍ରକୃତି, ବିଶେଷକରି ମାନସିକ ପ୍ରକୃତିର ଏକ ସ୍ୱତଃସ୍ଫୂର୍ତ୍ତ ପ୍ରବୃତ୍ତି ହେଉଛି ସେ ନିଜେ ଯାହା ଚିନ୍ତା କରେ, ଅନୁଭବ କରେ, କହେ ବା କରେ ସେସବୁକୁ ସମର୍ଥନ କରି ନାନା ବ୍ୟାଖ୍ୟା ଦେବା । ଏହିସବୁ ଗତିବୃତ୍ତିକୁ ଖୁବ୍ ଯତ୍ନର ସହିତ ନିରୀକ୍ଷଣ କରିବାକୁ ହେବ ଏବଂ ସେଗୁଡ଼ିକୁ ସେହିପରି ଭାବରେ ଆମର ସର୍ବୋଚ୍ଚ ଆଦର୍ଶର ବିଚାରାଳୟ ସମ୍ମୁଖକୁ ଆଣି ତାହାର ବିଚାରକୁ ମାନିନେବାର ଆନ୍ତରିକ ସଂକଳ୍ପ ପୋଷଣ କରିବାକୁ ହେବ । ତା'ହେଲେ କେବଳ ଆମେ ନିଜ ଭିତରେ ଏକ ଅଭ୍ରାନ୍ତ ଯଥାର୍ଥ-ବୋଧ ଗଢ଼ିବାକୁ ଆଶା କରିପାରୁ । କାରଣ ଯଦି ଆମେ ଯଥାର୍ଥ ପ୍ରଗତି ଚାହୁଁ, ନିଜ ସତ୍ତାର ସତ୍ୟକୁ ଜାଣିବାକୁ ଚାହୁଁ– ଯାହାହିଁ ଏକମାତ୍ର ବିଷୟ ଯେଉଁଥିପାଇଁ ଆମେ ଜନ୍ମ ନେଇଛୁ ବା ଯାହା କରିବାକୁ ଆମେ ଜଗତକୁ ଆସିଛୁ– ତାହା ହେଲେ ଆମକୁ ନିୟମିତ ଓ ଧାରାବାହିକଭାବେ ଆମ ସତ୍ତାର ଏହି ସତ୍ୟକୁ ଯାହାକିଛି ବିରୋଧ ଓ ଅସ୍ୱୀକାର କରେ ସେସମସ୍ତକୁ ଆମ ଭିତରୁ ବହିଷ୍କାର ଓ ପ୍ରତ୍ୟାଖ୍ୟାନ କରିବାକୁ ହେବ । ଏହିପରି ଭାବେ କ୍ରମେ କ୍ରମେ ଆମ ସତ୍ତାର ସମସ୍ତ ଅଂଶ, ସମସ୍ତ ଉପାଦାନ ଆମ ଚୈତ୍ୟକେନ୍ଦ୍ରର ଚତୁଃପାର୍ଶ୍ୱରେ ଏକ ସମନ୍ୱୟମୂଳକ ସମଗ୍ର ସତ୍ତାରୂପେ ସଂଗଠିତ ହେବ । ଏହି ଐକ୍ୟସାଧନର କାର୍ଯ୍ୟରେ କିଛି ପରିମାଣରେ ପୂର୍ଣ୍ଣତା ଆଣିବା ପାଇଁ ଦୀର୍ଘ ସମୟ ଲାଗିପାରେ । ତେଣୁ ଏହାକୁ ସମ୍ପନ୍ନ କରିବାକୁ ଆମର ଧୈର୍ଯ୍ୟ ଓ ସହିଷ୍ଣୁତା ଆବଶ୍ୟକ । ଆମର କାର୍ଯ୍ୟସିଦ୍ଧି ନିମନ୍ତେ ଯେତେଦିନ ଆବଶ୍ୟକ ସେତେଦିନ ପର୍ଯ୍ୟନ୍ତ ଜୀବନଧାରଣ କରିବାକୁ ଦୃଢ଼ପ୍ରତିଜ୍ଞ ହେବାକୁ ହେବ ।

ଏହି ଶୁଦ୍ଧୀକରଣ ଓ ଐକ୍ୟସାଧନ ଦିଗରେ ପ୍ରଚେଷ୍ଟା କରିବା ସଙ୍ଗେ ସଙ୍ଗେ ଆମ ସତ୍ତାର ବାହ୍ୟିକ ଅଂଶ ଓ ଯନ୍ତ୍ରଗୁଡ଼ିକୁ ନିର୍ଦ୍ଦୋଷଭାବେ ଗଢ଼ିବା ପାଇଁ ବିଶେଷ ଯତ୍ନ ନେବାକୁ ହେବ । ଯେତେବେଳେ ଉଚ୍ଚତର

ସତ୍ୟ ପ୍ରକାଶିତ ହେବ, ତାହା ତୁମ ଭିତରେ ଏପରି ଏକ ସୂକ୍ଷ୍ମ ଓ ସମୃଦ୍ଧ ମାନସ ସତ୍ତା ପାଇବା ଆବଶ୍ୟକ ଯାହା ପ୍ରକାଶୋନ୍ମୁଖୀ ଭାବକୁ ତା'ର ମୌଳିକ ଶକ୍ତି ଓ ସ୍ୱଚ୍ଛତା ଅକ୍ଷୁଣ୍ଣ ରଖି ଏକ ଚିନ୍ତାର ଆକାର ଦେଇପାରେ । ଏହି ଚିନ୍ତା ପୁଣି ଯେତେବେଳେ ଭାଷାରେ ରୂପ ନେବାକୁ ଚାହିଁବ ସେତେବେଳେ ସେ ଯେପରି ତୁମ ଭିତରେ ପାଇବ ଯଥେଷ୍ଟ ପ୍ରକାଶ-ସାମର୍ଥ୍ୟ, ଯାହା କି ବିକୃତ ନ କରି ଚିନ୍ତାକୁ ଠିକ୍‌ରୂପେ ପ୍ରକାଶ କରିବ ଏବଂ ଏହି ସୂତ୍ର ଯେଉଁଥିରେ ତୁମେ ସତ୍ୟକୁ ମୂର୍ତ୍ତ କରି ଗଢ଼ିବାକୁ ଚାହଁ, ତାହା ତୁମର ସମସ୍ତ ଅନୁଭୂତି, ସମସ୍ତ ଇଚ୍ଛା, କର୍ମ ଓ ତୁମ ସତ୍ତାର ସକଳ ଗତିବୃତ୍ତିରେ କ୍ରିୟାଶୀଳ ହେବା ଉଚିତ । ଅବଶେଷରେ ଏହିସବୁ ଗତିବୃତ୍ତିଗୁଡ଼ିକ ନିରନ୍ତର ଉଦ୍ୟମ ଦ୍ୱାରା ନିଜ ନିଜର ଚୂଡ଼ାନ୍ତ ପୂର୍ଣ୍ଣତାଲାଭ ପାଇଁ ଲାଗିପଡ଼ିବା ଉଚିତ ।

ଏ ସମସ୍ତକୁ ଉପଲବ୍ଧି କରାଯାଇପାରେ ଏକ ଚତୁର୍ବିଧ ଅନୁଶୀଳନ ଦ୍ୱାରା, ଯାହା ସମ୍ପର୍କରେ ଏଠାରେ ଏକ ସାଧାରଣ ପରିଚୟ ଦିଆଯାଇଛି । ଅନୁଶୀଳନର ଏହି ଚାରୋଟି ଧାରା ପରସ୍ପର ବିରୋଧୀ ନୁହନ୍ତି । ଏକ ସମୟରେ ଓ ଏକ ସଙ୍ଗରେ ଏସବୁକୁ ଅନୁସରଣ କରାଯାଇପାରେ, ବସ୍ତୁତଃ ତାହାହିଁ କରିବା ଭଲ । ଯେଉଁଠାରୁ ପ୍ରଥମେ ଆରମ୍ଭ କରାଯାଇପାରେ ତାହା ହେଲା ଚୈତ୍ୟ ଅନୁଶୀଳନ । ଆମ ସତ୍ତାର ସେହି କେନ୍ଦ୍ର, ଅନ୍ତରର ସେହି ଆସନ, ଯେଉଁଠି କି ଆମ ଅସ୍ତିତ୍ୱର ସର୍ବୋଚ୍ଚ ସତ୍ୟ ବିଦ୍ୟମାନ, ତାକୁହିଁ ଆମେ ଚୈତ୍ୟସତ୍ତା ବୋଲି କହୁ ଏବଂ ତାହାହିଁ ଏହି ସତ୍ୟକୁ ଜାଣିପାରେ ଓ ପ୍ରକାଶ କରିପାରେ । ତେଣୁ ଆମ୍ଭମାନଙ୍କ ଭିତରେ ଏହାର ଉପସ୍ଥିତି ସମ୍ପର୍କରେ ସଚେତ ହେବା, ଏହି ଉପସ୍ଥିତି ଉପରେ ଏକାଗ୍ର ହେବା ଏବଂ ଆମ ପାଇଁ ଏହାକୁ ଏକ ଜୀବନ୍ତ ସତ୍ୟରେ ପରିଣତ କରି, ନିଜକୁ ତାହା ସହ ସଂପୂର୍ଣ୍ଣରୂପେ ଏକ ଓ ଅଭିନ୍ନ କରିଦେବା ଆମ ପକ୍ଷେ ଏକାନ୍ତ ପ୍ରୟୋଜନ ।

ଏହି ସତ୍ୟକୁ ପ୍ରତ୍ୟକ୍ଷ କରିବା ପାଇଁ ଏବଂ ଅବଶେଷରେ ଏହା ସହିତ ଏକ ଓ ଅଭିନ୍ନ ହୋଇଯିବା ପାଇଁ ଯୁଗେ ଯୁଗେ ଓ ଦେଶେ ଦେଶେ ନାନା ଧରଣର ଉପାୟ ନିର୍ଣ୍ଣୟ କରାଯାଇଛି । କେତେକ ପଦ୍ଧତି ହେଉଛି ମନସ୍ତାତ୍ତ୍ୱିକ, କେତେକ ଧର୍ମମୂଳକ, ଏପରି କି କେତେକ ଯାନ୍ତ୍ରିକ କ୍ରିୟାମୂଳକ । ବାସ୍ତବ କ୍ଷେତ୍ରରେ ପ୍ରତ୍ୟେକକୁ ସ୍ଥିର କରିବାକୁ ହେବ ତାହା ପାଇଁ କେଉଁ ପ୍ରଣାଳୀଟି ସବୁଠାରୁ ସୁବିଧାଜନକ, ଏବଂ ଯଦି ଜଣକର ଆନ୍ତରିକ ଓ ଅଟଳ ଅଭୀପ୍‌ସା, ଏକ ନିରବଚ୍ଛିନ୍ନ ଓ ସକ୍ରିୟ ସଂକଳ୍ପ ଥାଏ ତେବେ ଯେଉଁ ବାଟରେ ହେଉନା କାହିଁକି– ବାହାରର ଅଧ୍ୟୟନ ଓ ଉପଦେଶ ଦ୍ୱାରା ହେଉ ବା ଭିତରେ ଏକାଗ୍ରତା, ଧ୍ୟାନ, ବୋଧିଗତ ଅନ୍ତଃପ୍ରକାଶ ଓ ଅନୁଭୂତି ଦ୍ୱାରା ହେଉ– ଲକ୍ଷ୍ୟରେ ପହଞ୍ଚିବା ପାଇଁ ପ୍ରୟୋଜନୀୟ ସାହାଯ୍ୟ ତାକୁ ମିଳିବହିଁ ମିଳିବ । ତେବେ ଗୋଟିଏ ବିଷୟ ଏକାନ୍ତ ଅପରିହାର୍ଯ୍ୟ, ତାହା ହେଉଛି ଏହି ଆବିଷ୍କାର ଏବଂ ଉପଲବ୍ଧି ପାଇଁ ଏକ ସ୍ଥିର ସଂକଳ୍ପ । ଏହି ଆବିଷ୍କାର ଓ ଉପଲବ୍ଧି ଆମ ସମଗ୍ର ସତ୍ତାର ସର୍ବପ୍ରଧାନ କାର୍ଯ୍ୟ ହେବା ଉଚିତ, ଯେକୌଣସି ମୂଲ୍ୟ ଦେଇ ଏହି ବହୁମୂଲ୍ୟ ମଣିକୁ ଲାଭ କରିବାକୁ ହେବ । ତୁମେ ଯାହା ବି କର ନା କାହିଁକି, ତୁମର ଜୀବିକା ଓ କାର୍ଯ୍ୟ ଯାହା ବି ହେଉନା କାହିଁକି, ତୁମ ସତ୍ତାର ସତ୍ୟକୁ ଜାଣିବା ଓ ତାହା ସହ ନିଜକୁ ଏକୀଭୂତ କରିବାର ସଂକଳ୍ପକୁ ବରାବର ଜୀବନ୍ତ ରଖିବାକୁ ହେବ ଏବଂ ତୁମର ସମସ୍ତ କର୍ମ, ସମସ୍ତ ଅନୁଭୂତି ଓ ସମସ୍ତ ଚିନ୍ତା ପଛରେ ଏହି ସଙ୍କଳ୍ପକୁ ଜାଗ୍ରତ ରଖିବାକୁ ହେବ ।

ଏହି ଆନ୍ତର ଆବିଷ୍କାରର ସାଧନାକୁ ପୂର୍ଣ୍ଣ କରିବାକୁ ହେଲେ ମାନସିକ ବିକାଶକୁ ଅବହେଳା କରିବା ଉଚିତ ନୁହେଁ । କାରଣ ମନର ଯନ୍ତ୍ରଟି ସମାନ ଭାବରେ ବିରାଟ ସହାୟକ ଅଥବା ବିରାଟ ପ୍ରତିବନ୍ଧକ ହୋଇପାରେ । ସ୍ୱାଭାବିକ ଅବସ୍ଥାରେ ମାନବ ମନର ଦୃଷ୍ଟି ସର୍ବଦା ସୀମିତ, ଏହାର ବୋଧଶକ୍ତି ମଧ୍ୟ ସଂକୀର୍ଣ୍ଣ ଏବଂ ଏହାର ଧାରଣାସବୁ ମଧ୍ୟ ଖୁବ୍

ଅନମନୀୟଭାବେ କଠିନ । ତେଣୁ ଏହାକୁ ବ୍ୟାପକ ଓ ବିସ୍ତୃତ ତଥା ଗଭୀର ଓ ନମନୀୟ କରିବା ପାଇଁ ଚେଷ୍ଟା କରିବାକୁ ହେବ । ତେଣୁ ଏହା ନିତାନ୍ତ ଆବଶ୍ୟକ ଯେ ପ୍ରତ୍ୟେକ ବିଷୟକୁ ବିଚାର କଲାବେଳେ ତାହାକୁ ଯେତେ ବିଭିନ୍ନ ଦିଗରୁ ଦେଖାଯାଇପାରେ ସେଥିପ୍ରତି ଦୃଷ୍ଟି ଦେବାକୁ ହେବ । ଏ ସଂକ୍ରାନ୍ତରେ ଏକ ପ୍ରକ୍ରିୟା ଅଛି ଯାହା କି ଚିନ୍ତାକୁ ବହୁତ ନମନୀୟ ଓ ବହୁତ ଉନ୍ନତ କରେ । ତାହା ଏହିପରି : ସୁନିର୍ଦ୍ଦିଷ୍ଟ ଭାବେ ଗୋଟିଏ ମତ ରଖିବାକୁ ହେବ, ଠିକ୍ ସେହିପରି ଏହା ବିରୁଦ୍ଧରେ ମଧ୍ୟ ଗୋଟିଏ ସୁନିର୍ଦ୍ଦିଷ୍ଟ ପ୍ରତିମତ ଛିଡ଼ା କରାଇବାକୁ ହେବ । ତା'ପରେ ସଯତ୍ନ ବିଚାର ଦ୍ୱାରା ସମସ୍ୟାଟିକୁ ଆହୁରି ବିସ୍ତାରିତ କରାଇ ବା ତା'ର ଊର୍ଦ୍ଧ୍ୱକୁ ଉଠିଯାଇ ଏପରି ଏକ ସମନ୍ୱୟ ଆବିଷ୍କାର କରିବାକୁ ହେବ ଯାହା କି ପୂର୍ବର ଦୁଇ ପରସ୍ପର ବିରୋଧୀ ମତକୁ ଏକ ବ୍ୟାପକତର, ଉଚ୍ଚତର ଓ ମହତ୍ତର ସିଦ୍ଧାନ୍ତ ମଧ୍ୟରେ ମିଳାଇ ନେଇପାରେ ।

ଏହି ପ୍ରକାରର ବହୁ ପ୍ରକ୍ରିୟା ଅବଲମ୍ବନ କରାଯାଇପାରେ; ତନ୍ମଧ୍ୟରୁ କେତେକର ଚରିତ୍ର ଉପରେ ଖୁବ୍ ମଙ୍ଗଳଜନକ ପ୍ରଭାବ ରହିଛି, ତେଣୁ ତାହା ଦ୍ୱାରା ଦୁଇପ୍ରକାରର ସୁବିଧା ହୁଏ : ଗୋଟିଏ ହେଉଛି ମନର ଉତ୍କର୍ଷସାଧନ ଓ ଅନ୍ୟଟି ନିଜର ଆବେଗ-ଅନୁଭୂତି ଓ ତା'ର ପ୍ରତିକ୍ରିୟା ଉପରେ କର୍ତ୍ତୃତ୍ୱ ବିସ୍ତାର । ଉଦାହରଣସ୍ୱରୂପ କୌଣସି ବ୍ୟକ୍ତି ବା ବିଷୟ ସଂପର୍କରେ ବିଚାର କରିବାକୁ ମନକୁ କେବେ ବି ଅନୁମତି ଦେବ ନାହିଁ । କାରଣ ମନ ଜ୍ଞାନର ଯନ୍ତ୍ର ନୁହେଁ, ଯଥାର୍ଥ ଜ୍ଞାନର ସନ୍ଧାନ ପାଇବା ଏହା ପକ୍ଷେ ଅସମ୍ଭବ, ଜ୍ଞାନ ଦ୍ୱାରା ଏହା ପରିଚାଳିତ ହେବା ଉଚିତ । ଜ୍ଞାନର ଜଗତ୍ ମାନବମନର ବହୁ ଊର୍ଦ୍ଧ୍ୱରେ, ଏପରିକି ଶୁଦ୍ଧ ଚିନ୍ତାରାଜ୍ୟର ଊର୍ଦ୍ଧ୍ୱରେ ଅବସ୍ଥିତ । ଊର୍ଦ୍ଧ୍ୱରୁ ଆଗତ ଜ୍ଞାନକୁ ଗ୍ରହଣ କରିବା ପାଇଁ ଏବଂ ତାହାକୁ ପ୍ରକାଶ କରିବା ପାଇଁ ମନକୁ ସଂପୂର୍ଣ୍ଣରୂପେ ନୀରବ ଓ ସଜାଗ ହେବାକୁ ହେବ । କାରଣ ମନ ହେଲା ରୂପାୟଣ, ସଂଗଠନ ଓ କର୍ମର ଯନ୍ତ୍ର ଏବଂ

ଏହିସବୁ କ୍ରିୟା ମଧ୍ୟରେ ଏହା ନିଜର ପରିପୂର୍ଣ୍ଣ ମୂଲ୍ୟ ଓ ଯଥାର୍ଥ ସାର୍ଥକତା ଲାଭକରେ ।

ଚେତନାର ଅଗ୍ରଗତି ନିମନ୍ତେ ଆଉ ଏକ ଅଭ୍ୟାସ ଖୁବ୍ ସହାୟକ ହୋଇପାରେ । ଯେତେବେଳେ କୌଣସି ବିଷୟରେ କାହା ସହ କିଛି ମତଭେଦ ହେଲା, ଯଥା କୌଣସି ନିଷ୍ପତ୍ତି ନେବା ସମ୍ପର୍କରେ ବା କୌଣସି କର୍ମ କରିବା ସମ୍ପର୍କରେ, ତେବେ କେବଳ ନିଜର ଧାରଣା ବା ନିଜର ଦୃଷ୍ଟିଭଙ୍ଗୀ ମଧ୍ୟରେ ଆବଦ୍ଧ ରହିବା ଉଚିତ ନୁହେଁ । ବରଂ ବିପରୀତ ପକ୍ଷେ ଅନ୍ୟର ସ୍ଥାନରେ ନିଜକୁ ବସାଇ ତାହାର ଦୃଷ୍ଟିଭଙ୍ଗୀକୁ ବୁଝିବାକୁ ଚେଷ୍ଟା କରିବା ଉଚିତ ଏବଂ କଳହ ବା ସଂଘର୍ଷରେ ପ୍ରବୃତ୍ତ ନ ହୋଇ ଏପରି ଏକ ସମାଧାନରେ ପହଞ୍ଚିବାକୁ ଚେଷ୍ଟାକରିବା ଉଚିତ, ଯାହାକି ଉଭୟ ପକ୍ଷକୁ ଯଥାଯଥଭାବେ ସନ୍ତୁଷ୍ଟ କରିବ ଏବଂ ସଦିଚ୍ଛା ଥିଲେ ଏପରି ସମାଧାନ ବରାବର ମିଳିଥାଏ ।

ଏଠାରେ ପ୍ରାଣର ଶିକ୍ଷା ବିଷୟରେ ଉଲ୍ଲେଖ କରିବା ଆବଶ୍ୟକ । ଆମ ଭିତରେ ପ୍ରାଣସତ୍ତା ହେଉଛି କାମନା-ବାସନା, ଉତ୍ସାହ-ଉଗ୍ରତା, ସକ୍ରିୟ ଶକ୍ତି ଓ ନିଦାରୁଣ ନୈରାଶ୍ୟ, ଉନ୍ମତ୍ତ ଆବେଗ ଏବଂ ବିଦ୍ରୋହାଦିର କେନ୍ଦ୍ରସ୍ଥଳ । ଏହା ସବୁକିଛିକୁ ସଚଳ ଓ ସକ୍ରିୟ କରିପାରେ, ଗଢ଼ିଦେଇ-ପାରେ ଓ ସିଦ୍ଧ କରିପାରେ, ପୁଣି ସବୁକିଛିକୁ ନଷ୍ଟ ଓ ଧ୍ୱଂସ କରିଦେଇ-ପାରେ । ମାନବସତ୍ତାର ଏହି ଅଙ୍ଗକୁ ସୁଶିକ୍ଷିତ କରିବା ସବୁଠାରୁ କଷ୍ଟସାଧ୍ୟ ବୋଲି ମନେହୁଏ । ଏହି କାର୍ଯ୍ୟ ପାଇଁ ଦୀର୍ଘକାଳ ଧରି କଠିନ ପରିଶ୍ରମ ଓ ଧୈର୍ଯ୍ୟ ଆବଶ୍ୟକ ଏବଂ ଏଥି ପାଇଁ ଦରକାର ପରିପୂର୍ଣ୍ଣ ଆନ୍ତରିକତା, କାରଣ ଆନ୍ତରିକତା ବ୍ୟତୀତ ପ୍ରଥମ ପଦକ୍ଷେପ ପରେହିଁ ଆତ୍ମ-ପ୍ରବଞ୍ଚନା ଆରମ୍ଭ ହେବ ଏବଂ ପ୍ରଗତି ପାଇଁ ସମସ୍ତ ଉଦ୍ୟମ ବ୍ୟର୍ଥ ହେବ । ଅନ୍ୟ ପକ୍ଷରେ ପ୍ରାଣର ସହଯୋଗିତା ପାଇଲେ କୌଣସି ସିଦ୍ଧି ବା କୌଣସି ରୂପାନ୍ତର ଅସମ୍ଭବ ନୁହେଁ, କିନ୍ତୁ ଏହି ସହଯୋଗ ସର୍ବଦା ପାଇବା ଦୁରୂହ ।

ପ୍ରାଣ ଏକ ଭଲ କର୍ମୀ କିନ୍ତୁ ଅଧିକାଂଶ ସମୟରେ ସେ ତା'ର ନିଜର ତୃପ୍ତି ଚାହେଁ । ତାହା ଯଦି ସେ ପୂର୍ଣ୍ଣଭାବରେ ବା ଆଂଶିକଭାବରେ ନ ପାଏ ତେବେ ସେ ବିମୁଖ ଏବଂ ବିରକ୍ତ ହୁଏ ଏବଂ ଅସହଯୋଗ କରେ । ଫଳରେ ଉତ୍ସାହ ଏବଂ ଉଦ୍ୟମ ଉଣାଧିକେ ସଂପୂର୍ଣ୍ଣରୂପେ ଚାଲିଯାଏ ଏବଂ ତାହା ସ୍ଥାନରେ ଆସେ ହତୋତ୍ସାହ ଓ ସବୁବସ୍ତୁ ଉପରେ, ସବୁବ୍ୟକ୍ତିଙ୍କ ଉପରେ ବିତୃଷ୍ଣା, ବିଦ୍ରୋହ, ହତାଶା ଏବଂ ଅସନ୍ତୋଷ । ଏପରି ସମୟରେ ଉଚିତ ହେଉଛି ଚୁପ୍ ହୋଇ ସ୍ଥିର ରହିବା ଏବଂ କାର୍ଯ୍ୟରେ ପ୍ରବୃତ୍ତ ନ ହେବା, କାରଣ ଏହିପରି ସମୟରେ ଲୋକେ ନାନା ନିର୍ବୋଧ କାର୍ଯ୍ୟ କରନ୍ତି ଏବଂ ମାସ ମାସର ନିୟମିତ ଉଦ୍ୟମ ଫଳରେ ଯେଉଁ ଲାଭ ଅର୍ଜନ କରିଥା'ନ୍ତି ତାହାକୁ ମାତ୍ର କେତେ ମିନିଟ ମଧ୍ୟରେ ନଷ୍ଟକରି ଦିଅନ୍ତି ଏବଂ ଏହିଭାବେ ସେମାନଙ୍କର ସମସ୍ତ ପ୍ରଗତିକୁ ହରାଇ ବସନ୍ତି । ଯେଉଁମାନେ ସେମାନଙ୍କର ଚୈତ୍ୟପୁରୁଷଙ୍କ ସଙ୍ଗେ ଏପରି ଏକ ସଂପର୍କ ସ୍ଥାପନ କରିପାରିଛନ୍ତି ଯାହାକି ସେମାନଙ୍କ ଭିତରେ ଅଭୀପ୍ସାର ଅଗ୍ନିଶିଖାକୁ ଏବଂ ଲକ୍ଷ୍ୟ ସମ୍ପର୍କରେ ଚେତନାକୁ ଜୀବନ୍ତ ରଖିଥାଏ, ସେମାନଙ୍କ କ୍ଷେତ୍ରରେ ଏହିସବୁ ସଙ୍କଟ ଅପେକ୍ଷାକୃତ ଅଳ୍ପକାଳ ସ୍ଥାୟୀ ଓ କମ୍ ବିପଜ୍ଜନକ ହୁଏ । ସେମାନେ ଏହି ଚେତନା ସାହାଯ୍ୟରେ ସେମାନଙ୍କର ପ୍ରାଣକୁ ବିଦ୍ରୋହ କରିଥିବା ଏକ ଶିଶୁ ପରି ନିଜ ବଶରେ ଆଣିପାରନ୍ତି, ଧୈର୍ଯ୍ୟ ଓ ଅଧ୍ୟବସାୟ ସହ ତାକୁ ଆଲୋକ ଓ ସତ୍ୟ ପ୍ରଦର୍ଶନ କରାଇ, ବୁଝାଇସୁଝାଇ କ୍ଷଣକାଳ ପାଇଁ ଆଚ୍ଛାଦିତ ହୋଇଯାଇଥିବା ସଦିଚ୍ଛାକୁ ତାହା ଭିତରେ ଜାଗ୍ରତ କରିପାରନ୍ତି । ଏହି ପ୍ରକାର ଏକ ଧୀର ପ୍ରଭାବ ସଞ୍ଚାର ଫଳରେ ପ୍ରତ୍ୟେକଟି ସଂକଟ ଏକ ନୂତନ ପ୍ରଗତିରେ ରୂପାନ୍ତରିତ ହୋଇପାରେ, ଏହା ହୋଇଉଠେ ନିଜ ଲକ୍ଷ୍ୟ ଦିଗରେ ଆଉ ଏକ ଅଗ୍ରପଦକ୍ଷେପ । ପ୍ରଗତି ମନ୍ଥର ହୋଇପାରେ, ବାରଂବାର ପଦସ୍ଖଳନ ହୋଇପାରେ, କିନ୍ତୁ ଯଦି ଏକ ସାହସିକ ସଂକଳ୍ପ ପୋଷଣ କରାଯାଏ ତେବେ ଦିନେ ନା ଦିନେ ବିଜୟଲାଭ

ସୁନିଶ୍ଚିତ । ସତ୍ୟଚେତନାର ଉଜ୍ଜ୍ୱଳ ରଶ୍ମିପାତ ଆଗରେ ସମସ୍ତ ବାଧାବିଘ୍ନ ମିଳାଇ ନିଶ୍ଚିହ୍ନ ହୋଇଯିବା ମଧ୍ୟ ସୁନିଶ୍ଚିତ ।

ପରିଶେଷରେ, ଏକ ଯୁକ୍ତିସମ୍ମତ ଓ ଜ୍ଞାନଦୀପ୍ତ ଶାରୀରିକ ଶିକ୍ଷା ଦ୍ୱାରା ଆମ୍ଭମାନଙ୍କ ଦେହକୁ ସମର୍ଥ ଓ ନମନୀୟ କରିବାକୁ ହେବ, ଯାହା ଫଳରେ ବସ୍ତୁଜଗତରେ ଯେଉଁ ସତ୍ୟ ଆମ ଭିତରଦେଇ ପ୍ରକାଶିତ ହେବାକୁ ଚାହେଁ, ଆମର ଶରୀର ଯେପରି ତାହାର ଏକ ଉପଯୁକ୍ତ ଯନ୍ତ୍ର ହୋଇପାରେ ।

ପ୍ରକୃତପକ୍ଷେ ଶରୀରର କାର୍ଯ୍ୟ ଶାସନ କରିବା ନୁହେଁ, ଏହାର କାମ ଆଦେଶ ମାନି ଚଳିବା । ସ୍ୱଭାବତଃ ଏହା ଏକ ନିରୀହ ଏବଂ ବିଶ୍ୱସ୍ତ ଭୃତ୍ୟ । ଦୁଃଖର ବିଷୟ ଏହାର ପ୍ରଭୁଦ୍ୱୟ, ମନ ଓ ପ୍ରାଣଙ୍କୁ ଠିକ୍‌ରୂପେ ଚିହ୍ନିବାର ଶକ୍ତି ଏହାର ନ ଥାଏ । ଏହା ସେମାନଙ୍କର ଆଦେଶକୁ ଅନ୍ଧ ଭାବରେ ପାଳନ କରେ, ଏପରି କି ନିଜର ସ୍ୱାସ୍ଥ୍ୟହାନି ଘଟାଇ ମଧ୍ୟ । ମନ ତାହାର ଅନ୍ଧତତ୍ତ୍ୱ, କଠିନ ଅଟଳ ଯୁକ୍ତିହୀନ ମତ ଦ୍ୱାରା ଓ ପ୍ରାଣ ତାହାର ଆବେଗାତିଶଯ୍ୟ ଏବଂ ଅପଚୟ ଦ୍ୱାରା ଶରୀରକୁ ଏପରିସବୁ କାର୍ଯ୍ୟରେ ପ୍ରବୃତ୍ତ କରନ୍ତି, ଯାହା ଦ୍ୱାରା ତାହାର ସ୍ୱାଭାବିକ ଭାରସାମ୍ୟ ନଷ୍ଟ ହୋଇଯାଏ ଏବଂ କ୍ଳାନ୍ତି, ଅବସାଦ ଓ ରୋଗ ଆକ୍ରମଣ କରେ । ଏହି ପ୍ରକାର ଅତ୍ୟାଚାରର କବଳରୁ ଶରୀରକୁ ମୁକ୍ତ କରିବାକୁ ହେବ; ଏହା କେବଳ ନିଜର ଚୈତ୍ୟକେନ୍ଦ୍ର ସହ ଏକ ନିରନ୍ତର ସଂଯୋଗ ସ୍ଥାପନ ଦ୍ୱାରା ସମ୍ଭବ । ସହ୍ୟ କରିବାର ଓ ଅବସ୍ଥାର ପରିବର୍ତ୍ତନ ସଙ୍ଗେ ନିଜକୁ ମିଳାଇ ନେବାର ଏକ ଅପୂର୍ବ କ୍ଷମତା ଶରୀରର ରହିଛି । ସାଧାରଣତଃ ଯେତିକି କଳ୍ପନା କରାଯାଏ, ତା' ଅପେକ୍ଷା ଏହାର ଅନେକ ଅଧିକ ପ୍ରକାରର କାର୍ଯ୍ୟ କରିବାର କ୍ଷମତା ରହିଛି । ଯଦି ଅଜ୍ଞାନ ଓ ଅତ୍ୟାଚାରୀ ପ୍ରଭୁମାନଙ୍କ ଦ୍ୱାରା ଶାସିତ ନ ହୋଇ ଏହା ସତ୍ତାର କେନ୍ଦ୍ରୀୟ ସତ୍ୟ ଦ୍ୱାରା ପରିଚାଳିତ ହେବ, ତେବେ ଏହାର କ୍ଷମତା ଓ କାର୍ଯ୍ୟଶକ୍ତିର ଯଥାର୍ଥ ପରିଚୟ ଆମକୁ ଆଶ୍ଚର୍ଯ୍ୟ କରି-ଦେବ । ଶାନ୍ତ ଓ ଅବିଚଳ, ଦୃଢ଼ ଓ ସମର୍ଥ ଏହି ଶରୀର ନିକଟରେ

ଯେକୌଣସି କର୍ମଶକ୍ତି ଦାବି କରାଯାଏ, ତାହା ସେ ପ୍ରତି ମୁହୂର୍ତ୍ତରେ ଯୋଗାଇପାରେ, କାରଣ କର୍ମ ଭିତରେ ବିଶ୍ରାମ ନେବାକୁ ସେ ଶିଖିଛି, ଯେଉଁ ଶକ୍ତିକୁ ଏହା ସଚେତନ ଓ ଯଥାର୍ଥଭାବେ ବ୍ୟୟ କରେ, ବିଶ୍ୱଶକ୍ତି ସହ ସଂଯୋଗ ସ୍ଥାପନ ଦ୍ୱାରା ତାହା ପୂରଣ କରିନେବାକୁ ଏହା ଶିଖିଛି । ଏହି ସୁସ୍ଥ ଏବଂ ସୁସମଞ୍ଜସ ଜୀବନରେ ଏକ ନୂତନ ସଙ୍ଗତି ଦେହ ମଧ୍ୟରେ ପ୍ରକାଶ ପାଇବ, ଯାହାକି ଉର୍ଦ୍ଧ୍ୱତର ଲୋକର ସୁସଙ୍ଗତିକୁ ନିଜ ମଧ୍ୟରେ ପ୍ରତିଫଳିତ କରିପାରିବ ଏବଂ ଶରୀରକୁ ପୂର୍ଣ୍ଣ ସମଞ୍ଜସ ଓ ଆଦର୍ଶ ସୌନ୍ଦର୍ଯ୍ୟର ରୂପ ଦେବ । ଏହି ସଙ୍ଗତି ଉତ୍ତରୋତ୍ତର ବିକାଶ ଲାଭ କରିବ, କାରଣ ସତ୍ତାର ସତ୍ୟ କେବେ ସ୍ଥାବର ନୁହେଁ, ଏହା କ୍ରମବର୍ଦ୍ଧମାନ ପୂର୍ଣ୍ଣତାର ଏକ ଅନ୍ତହୀନ ପ୍ରକାଶ; ନିରନ୍ତର ଏହା ଅଧିକରୁ ଅଧିକ ବ୍ୟାପକ, ଉଦାର ଓ ପୂର୍ଣ୍ଣ ହୋଇଚାଲିଛି । ଶରୀର ଯେତେବେଳେ ଏହି ବିକାଶଶୀଳ ସଙ୍ଗତିର ଧାରାକୁ ଅନୁସରଣ କରି ଚାଲିବାକୁ ଶିଖିବ, ସେତେବେଳେ ଦିବ୍ୟ ରୂପାନ୍ତରର ଏକ ନିରବଚ୍ଛିନ୍ନ କ୍ରିୟା ଦ୍ୱାରା କ୍ଷୟ ବା ବିନାଶର ପ୍ରୟୋଜନୀୟତାକୁ ଅତିକ୍ରମ କରିଯିବା ତାହା ପକ୍ଷେ ସମ୍ଭବପର ହେବ । ସେତେବେଳେ ଆଉ ମୃତ୍ୟୁର ଅମୋଘ ବିଧାନ ରହିବାର କୌଣସି କାରଣ ରହିବ ନାହିଁ ।

ଆମର ଲକ୍ଷ୍ୟ ଯେଉଁ ପୂର୍ଣ୍ଣତା, ସେହି ସ୍ତରରେ ଯେତେବେଳେ ଆମେ ପହଞ୍ଚିବୁ, ସେତେବେଳେ ଦେଖିବୁ ଯେ ଆମେ ଯେଉଁ ସତ୍ୟର ସନ୍ଧାନ କରୁଛୁ ତାହାର ମୁଖ୍ୟତଃ ଚାରୋଟି ବିଭାବ ଅଛି : ପ୍ରେମ, ଜ୍ଞାନ, ଶକ୍ତି ଏବଂ ସୌନ୍ଦର୍ଯ୍ୟ । ସତ୍ୟର ଏହି ଚାରୋଟି ଗୁଣହିଁ ଆମ ସତ୍ତାରେ ସ୍ୱତଃସ୍ଫୂର୍ତ୍ତ ଭାବରେ ନିଜକୁ ପ୍ରକାଶ କରିବେ । ଚୈତ୍ୟପୁରୁଷ ହେବେ ଯଥାର୍ଥ ଏବଂ ବିଶୁଦ୍ଧ ପ୍ରେମର ବାହନ, ମନ ହେବ ଅଭ୍ରାନ୍ତ ଜ୍ଞାନର ବାହନ, ପ୍ରାଣ ପ୍ରକାଶ କରିବ ଏକ ଅଜେୟ ଶକ୍ତି ଓ ତେଜ ଏବଂ ଶରୀର ପ୍ରକାଶ କରିବ ଏକ ପୂର୍ଣ୍ଣ ସୌନ୍ଦର୍ଯ୍ୟ ଓ ପୂର୍ଣ୍ଣ ସୁସଙ୍ଗତି ।

(ବୁଲେଟିନ୍, ନଭେମ୍ବର ୧୯୫୦)

# (୨)

## ଶିକ୍ଷା

ମନୁଷ୍ୟର ଶିକ୍ଷା ଏକେବାରେ ତାହାର ଜନ୍ମଠାରୁ ଆରମ୍ଭ ହୋଇ ସମସ୍ତ ଜୀବନବ୍ୟାପୀ ଚାଲିବା ଉଚିତ ।

ବସ୍ତୁତଃ ଶିକ୍ଷାର ପରିପୂର୍ଣ୍ଣ ଫଳ ପାଇବାକୁ ହେଲେ ଜନ୍ମର ଆଗରୁ ତାହାର ଆରମ୍ଭ ହେବା ଆବଶ୍ୟକ । ଏହି ଶିକ୍ଷା ମା'ର ମଧ୍ୟରେ ଆରମ୍ଭ ହୁଏ ଦ୍ୱିବିଧ କ୍ରିୟା ମଧ୍ୟରେ– ପ୍ରଥମେ ସେ ନିଜେ ନିଜର ଉନ୍ନତି କରିବ; ଦ୍ୱିତୀୟରେ ସେ ଯେଉଁ ଶିଶୁକୁ ଅବୟବ ଦାନ କରୁଛି ତାହା ପ୍ରତି ମଧ୍ୟ ସଯତ୍ନ ଦୃଷ୍ଟି ଦେବାକୁ ହେବ । ଏକଥା ଧ୍ରୁବସତ୍ୟ ଯେ ଯେଉଁ ଶିଶୁଟି ଜନ୍ମଗ୍ରହଣ କରିବାକୁ ଯାଉଛି, ତାହାର ପ୍ରକୃତି ବହୁତ ପରିମାଣରେ ନିର୍ଭର କରିବ ତାକୁ ରୂପଦାନ କରୁଛି ଯେଉଁ ଜନନୀ ତାହା ଉପରେ, ମା'ର ଆକାଙ୍‌କ୍ଷା ଓ ସଙ୍କଳ୍ପ ତଥା ଯେଉଁ ଜାଗତିକ ପରିବେଶ ମଧ୍ୟରେ ସେ ବାସ କରେ ତାହା ଉପରେ । ମା'ର ଯେଉଁ ଶିକ୍ଷା ଦରକାର ତାହା ହେଲା : ତାହାର ସମସ୍ତ ଭାବନା ହୁଏ ଯେପରି ସର୍ବଦା ସୁନ୍ଦର ଏବଂ ନିର୍ମଳ; ସମସ୍ତ ଅନୁଭବ ହୁଏ ଯେପରି ଉତ୍ତମ ଓ ମହତ୍, ଆଉ ଚାରିପାଖର ବାହ୍ୟ ପରିବେଶ ଯଥାସମ୍ଭବ ସୁସମଞ୍ଜସ ଓ ଏକ ମହାନ୍ ସରଳତାରେ ପରିପୂର୍ଣ୍ଣ । ଏସବୁ ସଙ୍ଗରେ ଯଦି ସେ ନିଜର ସର୍ବୋତ୍ତମ ଆଦର୍ଶ ଅନୁସାରେ ଭାବୀ ଶିଶୁଟିକୁ ତିଆରି କରିବା ସକାଶେ ସଚେତନ ଓ ସୁନିର୍ଦ୍ଦିଷ୍ଟ ସମ୍ପର୍କ ରଖିପାରେ, ତାହା ହେଲେ ଶ୍ରେଷ୍ଠତମ ସମ୍ଭାବନା ସହ ଶିଶୁଟିର ପୃଥିବୀକୁ ଆସିବା ନିମନ୍ତେ ସର୍ବାପେକ୍ଷା ଅନୁକୂଳ ଅବସ୍ଥା ସୃଷ୍ଟି ହେବ । ଏହାଦ୍ୱାରା କେତେ କଠିନ ପ୍ରଚେଷ୍ଟା ଓ ନିରର୍ଥକ ଜଟିଳତାର ଅବସାନ ନ ହୁଏ !

ଶିକ୍ଷା ପୂର୍ଣ୍ଣାଙ୍ଗ ହେବାକୁ ହେଲେ ମାନବ ସତ୍ତାର ପାଞ୍ଚୋଟି ପ୍ରଧାନ ବିଭାବ ରହିବା ଦରକାର : ଶାରୀରିକ, ପ୍ରାଣିକ, ମାନସିକ, ଅନ୍ତରାତ୍ମିକ ଏବଂ ଆଧ୍ୟାତ୍ମିକ । ସାଧାରଣତଃ ଶିକ୍ଷାର ଏହି କ୍ରମଗୁଡ଼ିକ ବ୍ୟକ୍ତିର ଅଭିବୃଦ୍ଧି ଓ ପୁଷ୍ଟିର ସଙ୍ଗେ ସଙ୍ଗେ କ୍ରମାନ୍ୱୟରେ ଚାଲେ ଗୋଟିକ ପରେ ଗୋଟିଏ । କିନ୍ତୁ ତାହାର ଅର୍ଥ ଏହା ନୁହେଁ ଯେ ଗୋଟିକର ସ୍ଥାନ ଅନ୍ୟଟି ଆସି ଅଧିକାର କରିବ, ବରଂ ସବୁଗୁଡ଼ିକ ଏକସଙ୍ଗେ ଚାଲିବ ଜୀବନର ଶେଷ ପର୍ଯ୍ୟନ୍ତ ଗୋଟିଏ ଅନ୍ୟଟିର ପରିପୂରକ ରୂପେ ।

ଆମ୍ଭେମାନେ କ୍ରମେ କ୍ରମେ ଏଠାରେ ଶିକ୍ଷାର ଏହି ପାଞ୍ଚୋଟି ଦିଗ ଏବଂ ସେସବୁର ପରସ୍ପର ସମ୍ବନ୍ଧ ଆଲୋଚନା କରିବୁ । ବିଷୟଟିକୁ ବିଶଦଭାବେ ଆଲୋଚନା କରିବା ପୂର୍ବରୁ ମୁଁ ପିତାମାତାଙ୍କ ପାଖରେ ସୁପାରିସ୍ କରିବାକୁ ଚାହେଁ । ନାନା କାରଣରୁ ସେମାନଙ୍କ ମଧ୍ୟରୁ ଅନେକେ ପିଲାମାନଙ୍କୁ ଯେଉଁ ସୁଶିକ୍ଷା ଦେବାକୁ ହେବ ସେ ବିଷୟରେ ସାମାନ୍ୟ ଚିନ୍ତା କରନ୍ତି । ଗୋଟିଏ ଶିଶୁକୁ ଏହି ପୃଥିବୀକୁ ଆଣି ତାକୁ ଖାଇବା-ପିଇବାକୁ ଦେଇ ତା'ର ସ୍ୱାସ୍ଥ୍ୟ ଆଡ଼କୁ ଅଳ୍ପ ବହୁତ ଲକ୍ଷ୍ୟ ରଖିଲେ, ଏବଂ ତା'ର କେତେକ ସ୍ଥୂଳ ଦାବି ପୂରଣ କଲେ ସେମାନେ ମନେ କରନ୍ତି ଯେ ସେମାନଙ୍କର କର୍ତ୍ତବ୍ୟ ଶେଷ ହେଲା । ପରେ ତାକୁ ବିଦ୍ୟାଳୟକୁ ପଠାଇ ଦେଇ ତା'ର ମାନସିକ ଶିକ୍ଷାର ଦାୟିତ୍ୱ ତା'ର ଶିକ୍ଷକଗଣଙ୍କ ଉପରେ ଛାଡ଼ି ଦିଅନ୍ତି ।

ଏପରି ପିତାମାତା ଅଛନ୍ତି ଯେଉଁମାନେ ମନେକରନ୍ତି ଯେ ସେମାନଙ୍କର ସନ୍ତାନମାନଙ୍କୁ ଶିକ୍ଷା ଦେବା ଉଚିତ ଏବଂ ସେ ଦିଗରେ ଚେଷ୍ଟା ବି କରନ୍ତି । କିନ୍ତୁ ଯେଉଁମାନଙ୍କର ଦାୟିତ୍ୱବୋଧ ଏବଂ ଆନ୍ତରିକତା ଅଛି, ସେମାନଙ୍କ ମଧ୍ୟରୁ ଅଳ୍ପ କେତେଜଣ ଜାଣନ୍ତି ଯେ ସନ୍ତାନମାନଙ୍କୁ ଶିକ୍ଷାଦେବା ନିମିତ୍ତ ଯୋଗ୍ୟ ହେବାକୁ ହେଲେ ଆଗେ ନିଜେ ଶିକ୍ଷିତ ହେବାକୁ ହୁଏ, ନିଜ ସମ୍ବନ୍ଧରେ ସଚେତନ ହେବାକୁ ହୁଏ, ଆତ୍ମଜୟୀ ହେବାକୁ ହୁଏ,

ଯାହା ଦ୍ୱାରା ସନ୍ତାନମାନଙ୍କ ସମ୍ମୁଖରେ କୌଣସି କୁଦୃଷ୍ଟାନ୍ତ ରଖା ନ ଯାଏ । କାରଣ ଦୃଷ୍ଟାନ୍ତ ଦ୍ୱାରା ଯେଉଁ ଶିକ୍ଷା ଦିଆହୁଏ ତାହା ହୁଏ ବିଶେଷ ଫଳପ୍ରସୂ । ଶିଶୁକୁ କେବଳ ଭଲ କଥା କହି ଜ୍ଞାନପୂର୍ଣ୍ଣ ଉପଦେଶ ଦେଲେ ବିଶେଷ ଲାଭ ହୁଏ ନାହିଁ, ଯଦି ଶିକ୍ଷକ ସେହି ଶିକ୍ଷାର ଦୃଷ୍ଟାନ୍ତ କାର୍ଯ୍ୟରେ ଦେଖାଇ ନ ପାରନ୍ତି । ଆନ୍ତରିକତା, ସାଧୁତା, ସରଳ ପ୍ରକୃତି, ସାହସ, ନିଃସ୍ୱାର୍ଥପରତା, ଅନାସକ୍ତି, ଧୈର୍ଯ୍ୟ, ସହନଶୀଳତା, ଅଧ୍ୟବସାୟ, ଶାନ୍ତି, ସ୍ଥୈର୍ଯ୍ୟ, ଆତ୍ମସଂଯମ ଆଦି ସମ୍ପର୍କରେ ମନୋରମ ବକ୍ତୃତା ପରିବର୍ତ୍ତେ ଏସବୁକୁ ଆଚରଣରେ ଦେଖାଇଲେ ବହୁତ ଭଲ ଶିକ୍ଷା ଦିଆହୁଏ । ପିତାମାତାମାନଙ୍କୁ ମୁଁ ବରାବର କହେ ଯେ ତୁମ୍ଭେମାନେ ଉଚ୍ଚ ଆଦର୍ଶ ରକ୍ଷାକର ଏବଂ ସର୍ବଦା ସେହି ଆଦର୍ଶ ଅନୁସାରେ କାର୍ଯ୍ୟ କର । ତୁମ୍ଭେମାନେ ଦେଖିବ ଯେ ଅଳ୍ପ ଅଳ୍ପ କରି ତୁମ୍ଭମାନଙ୍କ ସନ୍ତାନମାନଙ୍କ ଅନ୍ତରରେ ଏହି ଆଦର୍ଶର ବିକାଶ ହେଉଅଛି । ଯେଉଁ ସମସ୍ତ ଗୁଣର ବିକାଶ ତୁମ୍ଭେମାନେ ଦେଖିବାକୁ ଚାହଁ ତା'ର ପ୍ରକୃତିରେ ସେସବୁର ସ୍ୱତଃସ୍ଫୂର୍ତ୍ତ ପ୍ରକାଶ ହେଉଅଛି । ଶିଶୁ ପକ୍ଷରେ ପିତାମାତାଙ୍କୁ ଶ୍ରଦ୍ଧାଭକ୍ତି କରିବା ଖୁବ୍ ସ୍ୱାଭାବିକ; ଏକେବାରେ ଅଯୋଗ୍ୟ ନ ହେଲେ ସେମାନେ ସର୍ବଦାହିଁ ସେମାନଙ୍କ ସନ୍ତାନର ଦୃଷ୍ଟିରେ ଦେବତୁଲ୍ୟ, ଯଥାସାଧ୍ୟ ଅନୁକରଣ-ଯୋଗ୍ୟ ।

ଅଳ୍ପସଂଖ୍ୟକ ପିତାମାତାଙ୍କୁ ବାଦ୍ ଦେଲେ ଅଧିକାଂଶ ପିତାମାତା ଜାଣନ୍ତି ନାହିଁ ଯେ ସେମାନଙ୍କ ତ୍ରୁଟି, ବିଚ୍ୟୁତି, ଚଞ୍ଚଳତା, ଦୁର୍ବଳତା, ଆତ୍ମସଂଯମର ଅଭାବ, ସନ୍ତାନମାନଙ୍କ ଉପରେ କିପରି ମାରାତ୍ମକ ପ୍ରଭାବ ବିସ୍ତାର କରେ । ଯଦି ତୁମେ ତୁମ ସନ୍ତାନମାନଙ୍କଠାରୁ ସମ୍ମାନ ପାଇବାକୁ ଚାହଁ, ତେବେ ନିଜକୁ ସମ୍ମାନସ୍ପଦ କରିବାକୁ ଶିଖ, ପ୍ରତି ମୁହୂର୍ତ୍ତରେ ସମ୍ମାନର ଯୋଗ୍ୟ ହୁଅ । କେବେହେଲେ କର୍ତ୍ତୃତ୍ୱପ୍ରୟାସୀ, ସ୍ୱେଚ୍ଛାଚାରୀ, ଅଧୀର, କ୍ରୋଧସ୍ୱଭାବର ହେବ ନାହିଁ । ତୁମ୍ଭର ସନ୍ତାନ ଯେବେ କୌଣସି ପ୍ରଶ୍ନ କରେ ତେବେ ସେ ବୁଝିପାରେ ନାହିଁ ବୋଲି ଏହି ବାହାନାରେ ତାକୁ

ନିର୍ବୋଧ ବା ଅର୍ଥହୀନ ଉତ୍ତର ଦେବ ନାହିଁ । ଯଦି ପର୍ଯ୍ୟାପ୍ତ ଶ୍ରମ ଓ କଷ୍ଟ ସ୍ୱୀକାର କରିପାର ତେବେ କୌଣସି ବିଷୟ ବୁଝାଇଦେବା ଅସମ୍ଭବ ନୁହେଁ । ସବୁ ସମୟରେ ସତ୍ୟ କହିବା ଉଚିତ ନୁହେଁ ବୋଲି ପ୍ରଚଳିତ ଏକ ଧାରଣାଥିବା ସତ୍ତ୍ୱେ ମୁଁ ଏହା ଦୃଢ଼ତାର ସହ କହିବାକୁ ଚାହେଁ ଯେ ସର୍ବଦା ସତ୍ୟ କଥା କହିବା ଉଚିତ । ତେବେ ଏପରି ଭାବରେ କହିବା ଉଚିତ ଯେପରି ତାହା ଶ୍ରୋତାର ବୋଧଗମ୍ୟ ହୁଏ । ଜୀବନର ଆରମ୍ଭରେ ବାର-ଚଉଦ ବର୍ଷ ପର୍ଯ୍ୟନ୍ତ ଶିଶୁର ମନ କୌଣସି ନୈର୍ବ୍ୟକ୍ତିକ ଚିନ୍ତାଧାରା ଏବଂ ବ୍ୟାପକ ସତ୍ୟକୁ ବୁଝିପାରେ ନାହିଁ । ତେବେ ନିର୍ଦ୍ଦିଷ୍ଟ ଉପମା, ପ୍ରତୀକ ଅଥବା ରୂପକ ଆଦିର ସାହାଯ୍ୟ ନେଇ ଯେଉଁ ଭାବରେ ସେ ଏହା ବୁଝିପାରେ ସେହି ଭାବରେ ତାକୁ ଶିକ୍ଷା ଦିଆଯାଇପାରେ । ବେଶ୍ କିଛି ବୟସ ପର୍ଯ୍ୟନ୍ତ ଏବଂ ଯେଉଁମାନେ ମନରେ ଚିରକାଳହିଁ ଶିଶୁ ରହନ୍ତି ସେମାନଙ୍କ ପାଖରେ ଗୋଟିଏ ବର୍ଣ୍ଣନା, ସୁନ୍ଦର ଭାବରେ କଥିତ ଗୋଟିଏ ଗଳ୍ପ, ଗୋଟିଏ କାହାଣୀ ବହୁତ ତତ୍ତ୍ୱ ବ୍ୟାଖ୍ୟା ଅପେକ୍ଷା ବେଶୀ ଭଲ ଭାବରେ ଶିକ୍ଷାଦିଏ ।

ଏ ଦିଗରେ ଆଉ ଏକ ପ୍ରତିବନ୍ଧକକୁ ଅପସାରଣ କରିବାକୁ ହେବ । ବିଶେଷ ଉଦ୍ଦେଶ୍ୟ ନ ଥିଲେ ଏବଂ ଏକେବାରେ ଅପରିହାର୍ଯ୍ୟ ନ ହେଲେ ସନ୍ତାନକୁ ତିରସ୍କାର କର ନାହିଁ । ଯେଉଁ ପିଲା ସବୁ ସମୟରେ ତିରସ୍କୃତ ହୁଏ, ତାହା ଦ୍ୱାରା ସେ କଠିନ ହୋଇଯାଏ; ଶେଷରେ କଟୁକଥା ବା କଠୋର ବାଣୀକୁ ସେ କିଛି ମୂଲ୍ୟ ଦିଏ ନାହିଁ । ବିଶେଷତଃ ଯେଉଁ ଦୋଷ ତୁମେ ନିଜେ କର, ସେହି ଦୋଷ ସକାଶେ ତାକୁ ତିରସ୍କାର କର ନାହିଁ । ଶିଶୁମାନେ ଅତ୍ୟନ୍ତ ସତର୍କ ଏବଂ ତୀକ୍ଷ୍ଣଦୃଷ୍ଟିସମ୍ପନ୍ନ । ଅତି ଶୀଘ୍ର ସେମାନେ ତୁମର ଦୁର୍ବଳତାଗୁଡ଼ିକୁ ବୁଝି ପାରନ୍ତି ଏବଂ ନିର୍ମମ ଭାବରେ ଲକ୍ଷ୍ୟ କରନ୍ତି ।

ଶିଶୁ ଯେବେ କିଛି ଭୁଲ୍ କରେ, ଦେଖ ସେ ଯେପରି ତାହା ତୁମ ପାଖରେ ନିଜେ ନିଜେ ଅକପଟ ଭାବରେ ସ୍ୱୀକାର କରେ; ଯଦି ସେ ଥରେ

ସ୍ୱୀକାର କରିଛି, ତେବେ ତାହାକୁ ସହାନୁଭୂତି ଏବଂ ସ୍ନେହର ସହିତ ବୁଝାଇ ଦିଅ ଯେ କେଉଁଠି ତାହାର ଭୁଲ୍ ହୋଇଥିଲା ଏବଂ ପୁଣି ଯେପରି ସେ ତାହାର ପୁନରାବୃତ୍ତି ନ କରେ । କିନ୍ତୁ କେବେ ବି ତିରସ୍କାର କର ନାହିଁ, ଦୋଷ ସ୍ୱୀକାର କଲେ କ୍ଷମା କରିବାକୁହିଁ ହେବ । ତୁମେ ଆଉ ତୁମ ସନ୍ତାନର ମଧ୍ୟରେ ଯେପରି ଭୟ ଆସି ପ୍ରବେଶ ନ କରେ । ଭୟର ସାହାଯ୍ୟରେ ଶିକ୍ଷାଦାନ ସର୍ବନାଶ କରେ; ତାହାର ଅନିବାର୍ଯ୍ୟ ଫଳ କପଟ ଆଚରଣ ଓ ମିଥ୍ୟାଚାର । ତୁମ ପିଲାର ଶିକ୍ଷାକୁ ଫଳପ୍ରଦ କରିବାକୁ ହେଲେ ପିଲା ଓ ତୁମ ମଧ୍ୟରେ ଆସ୍ଥା ଓ ବିଶ୍ୱାସର ଏକ ନିବିଡ଼ ସମ୍ବନ୍ଧ ରହିବା ନିତାନ୍ତ ଆବଶ୍ୟକ ଏବଂ ଏହି ସମ୍ବନ୍ଧ ଗଢ଼ିଉଠେ ଏକ ସ୍ୱଷ୍ଟଦର୍ଶୀ, ଦୃଢ଼ ଅଥଚ କୋମଳ ଏବଂ ମଧୁର ସ୍ନେହ ଦ୍ୱାରା ତଥା ଯଥାଯଥ ବ୍ୟାବହାରିକ ଜ୍ଞାନ ଦ୍ୱାରା । ଏକଥା କେବେ ବି ଭୁଲି ଯାଅ ନାହିଁ ଯେ ଯେଉଁ ସନ୍ତାନକୁ ପୃଥିବୀକୁ ଆଣିଅଛ, ତାହା ପ୍ରତି ତୁମ୍ଭର ଯେଉଁ ଦାୟିତ୍ୱ ଓ କର୍ତ୍ତବ୍ୟ ଅଛି ତାହା ପୂର୍ଣ୍ଣରୂପେ ଏବଂ ଯଥାର୍ଥ ଭାବରେ ସଂପୂର୍ଣ୍ଣ କରିବା ସକାଶେ ପ୍ରତି ମୁହୂର୍ତ୍ତରେ ନିଜେ ନିଜକୁ ଅତିକ୍ରମ କରିବାକୁ ହେବ ।

(ବୁଲେଟିନ୍, ଫେବ୍ରୁଆରି ୧୯୫୧)

# (୩)

## ଶାରୀରିକ ଶିକ୍ଷା

ଚେତନାର ଯେତେ ସ୍ତର ଅଛି ତାହା ମଧ୍ୟରେ ଶାରୀରିକ ସ୍ତରହିଁ ପରିପୂର୍ଣ୍ଣ ଭାବେ ବିଧିବଦ୍ଧ ଉପାୟ, ନିୟମ, ଶୃଙ୍ଖଳା ଓ ପ୍ରଣାଳୀ ଦ୍ୱାରା ନିୟନ୍ତ୍ରିତ ହୁଏ । ଜଡ଼ର ନମନୀୟତା ଏବଂ ଗ୍ରହଣଶୀଳତା ନାହିଁ, ତାହାର ଅଭାବ ପୂର୍ଣ୍ଣ କରିବା ସକାଶେ ସେଠାରେ ଏକ ପୁଙ୍ଖାନୁପୁଙ୍ଖ ସୁଶୃଙ୍ଖଳା ଆଣିବାକୁ ହେବ, ଯାହା ଯୁଗପତ୍ ହେବ ସୁନିର୍ଦ୍ଦିଷ୍ଟ ଓ ବ୍ୟାପକ । ଏହିପରି ସୁଶୃଙ୍ଖଳା ଗଠନ କରିବାବେଳେ ଏହା ଭୁଲିବା ଉଚିତ ନୁହେଁ ଯେ ସତ୍ତାର ସମସ୍ତ ଅଂଶ ପରସ୍ପର ନିର୍ଭରଶୀଳ ଏବଂ ପରସ୍ପର ଅନୁପ୍ରବିଷ୍ଟ । ତଥାପି କୌଣସି ମାନସିକ ବା ପ୍ରାଣିକ ଆବେଗକୁ ସ୍ଥୂଳରୂପ ଦେବାକୁ ହେଲେ ତାକୁ ଗୋଟିଏ ଯଥାଯଥ ସୁନିର୍ଦ୍ଦିଷ୍ଟ କ୍ରିୟା-ପଦ୍ଧତିର ଆଶ୍ରୟ ନେବାକୁ ହେବ । ଶାରୀରିକ ଶିକ୍ଷାକୁ ଫଳପ୍ରଦ କରିବାକୁ ହେଲେ ବହୁତ ପରିଶ୍ରମ କରିବାକୁ ହୁଏ ଏବଂ ବିଶେଷ ଦୂରଦୃଷ୍ଟି ରଖି ପ୍ରଣାଳୀବଦ୍ଧ ଭାବରେ ଟିକିନିଖି ଦେଖି ତାହା ସ୍ଥିର କରିବାକୁ ହୁଏ । ତା'ହେଲେ କ୍ରମେ ତାହା ଅଭ୍ୟାସରେ ପରିଣତ ହେବ : ଶରୀର ହେଲା ବହୁ ଅଭ୍ୟାସରେ ଗଠିତ ଗୋଟିଏ ସତ୍ତା । ତେବେ ସେସବୁକୁ ସୁପରିଚାଳିତ ଏବଂ ସୁନିୟନ୍ତ୍ରିତ କରିବାକୁ ହେବ ଏବଂ ଏକହିଁ ସଙ୍ଗେ ଆବଶ୍ୟକ ନମନୀୟତା ରକ୍ଷା କରିବାକୁ ହେବ ଯେପରିକି ସେଗୁଡ଼ିକ ପରିବେଶ ଏବଂ ସତ୍ତାର ବିକାଶ ଓ ଅଭିବୃଦ୍ଧିର ପ୍ରୟୋଜନ ସଙ୍ଗେ ସାମଞ୍ଜସ୍ୟ ରଖି ଚାଲିପାରିବେ ।

ସମସ୍ତ ଶାରୀରିକ ଶିକ୍ଷା ଆରମ୍ଭ ହେବା ଉଚିତ ଜନ୍ମର ସଙ୍ଗେ ସଙ୍ଗେ ଏବଂ ତାହା ସମଗ୍ର ଜୀବନବ୍ୟାପୀ ଚାଲିବା ଉଚିତ । ଆରମ୍ଭ

କରିବାକୁ ସମୟ ହୋଇ ନାହିଁ ବୋଲି ବା ଶିକ୍ଷା କରିବାର ସମୟ ଅତୀତ ହୋଇଛି ବୋଲି ଭାବିବା ଉଚିତ ନୁହେଁ ।

ଶାରୀରିକ ଶିକ୍ଷାର ତିନୋଟି ପ୍ରଧାନ ଦିଗ ଅଛି :

୧. ଶରୀରର ପ୍ରତ୍ୟେକ କ୍ରିୟା ଉପରେ କର୍ତ୍ତୃତ୍ୱ ସ୍ଥାପନ ଏବଂ ତାହାର ସୁନିୟନ୍ତ୍ରିତ ଶୃଙ୍ଖଳା ।

୨. ଶରୀରର ପ୍ରତ୍ୟେକ ଅଂଶର ଏବଂ ସେସବୁର ଗତିବିଧିର ଏକ ସାମଗ୍ରିକ, ପ୍ରଣାଳୀବଦ୍ଧ ଏବଂ ସାମଞ୍ଜସ୍ୟପୂର୍ଣ୍ଣ ପୁଷ୍ଟିସାଧନ ।

୩. ଶରୀରରେ କୌଣସି ତ୍ରୁଟି, କ୍ଷୁଣ ବା ବିକୃତି ଥିଲେ ତାହାର ସଂଶୋଧନ ।

କୁହାଯାଇ ପାରେ ଯେ ଜନ୍ମର ପ୍ରଥମ କେତେ ଦିନରେ, ଏପରିକି କେତେ ଘଣ୍ଟା ମଧ୍ୟରେ ଶିଶୁ ଶିକ୍ଷାର ପ୍ରଥମ କାର୍ଯ୍ୟସୂଚୀ, ତାହାର ଆହାର, ନିଦ୍ରା, ମଳମୂତ୍ରାଦି ତ୍ୟାଗ ଇତ୍ୟାଦିର ଶିକ୍ଷା ଆରମ୍ଭ ହୋଇଯିବା ଉଚିତ । ଏକେବାରେ ଆରମ୍ଭରୁହିଁ ଶିଶୁ ଯଦି ଭଲ ଅଭ୍ୟାସଗୁଡ଼ିକୁ ଆୟତ୍ତ କରିନେଇ ପାରେ ତେବେ ସମସ୍ତ ଜୀବନରେ ନାନା ଅସୁବିଧା ଏବଂ ବିପତ୍ତିର ହାତରୁ ସେ ମୁକ୍ତି ପାଇବ । ଯେଉଁମାନେ ତାହାର ଶୈଶବ ଅବସ୍ଥାରୁ ଏହି ଯତ୍ନ ନେବେ ସେମାନେ ମଧ୍ୟ ଦେଖିବେ ଯେ ପରେ ସେମାନଙ୍କର କାର୍ଯ୍ୟ ଅନେକ ସହଜ ହୋଇଯାଇଛି ।

ଏକଥା ଅବଶ୍ୟ ଜାଣିବା ଉଚିତ ଯେ ଏହି ଶିକ୍ଷା ଯୁକ୍ତିଯୁକ୍ତ, ଜ୍ଞାନାଲୋକିତ ଏବଂ ଫଳପ୍ରଦ ହେବାକୁ ହେଲେ ମନୁଷ୍ୟର ଶରୀର, ତାହାର ଗଠନ, କ୍ରିୟା-ପ୍ରକ୍ରିୟା ସମ୍ବନ୍ଧରେ ଅନ୍ତତଃ ସେତିକି ଜ୍ଞାନର ପ୍ରୟୋଜନ ଯେଉଁଥିରୁ କମ୍ ହେଲେ ଚଳିବ ନାହିଁ । ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ଶିଶୁ ନିଜ ଶରୀରର ଅଂଶସକଳର କ୍ରିୟାଧାରାକୁ ଲକ୍ଷ୍ୟ କରିବା ଦିଗରେ ଅଭ୍ୟାସ କରିବା ଉଚିତ, ଯାହା ଫଳରେ ସେ ସେସବୁକୁ କ୍ରମଶଃ ନିଜ

ବଶକୁ ଆଣିପାରେ; ଆଉ ମଧ୍ୟ ସମସ୍ତ ଅଙ୍ଗର ଏହି କ୍ରିୟାଧାରା ଯେପରି ସ୍ୱାଭାବିକ ଓ ସାମଞ୍ଜସ୍ୟପୂର୍ଣ୍ଣ ହୁଏ, ସେଥି ପାଇଁ ଯତ୍ନ ନେବାକୁ ହେବ । ବସିବା, ଛିଡ଼ାହେବା, ଅଙ୍ଗଭଙ୍ଗୀ ଓ ଚାଲିବା-ବୁଲିବାର କ୍ଷେତ୍ରରେ ନାନା ବିକୃତ ଅଭ୍ୟାସ ଶିଶୁ ଅବସ୍ଥାରୁ ଅତି ସହଜରେ ଆସିଯାଏ । ପରେ ସମସ୍ତ ଜୀବନ ଉପରେ ଏସବୁର କୁପରିଣାମ ଅତ୍ୟନ୍ତ କ୍ଷତିକାରକ ହୋଇପାରେ । ଯେଉଁମାନେ ଏହି ଶିକ୍ଷା ସମ୍ବନ୍ଧରେ ଯଥାର୍ଥ ମନୋଯୋଗୀ, ଯେଉଁମାନେ ସେମାନଙ୍କ ସନ୍ତାନମାନଙ୍କୁ ସ୍ୱାଭାବିକ ଭାବରେ ଗଢ଼ିଉଠିବା ନିମିତ୍ତ ବିଶେଷ ସୁଯୋଗ ସୁବିଧା ଦେବାକୁ ଚାହାନ୍ତି ସେମାନେ ଏ ବିଷୟରେ ପ୍ରୟୋଜନୀୟ ଇଙ୍ଗିତ ଓ ଉପଦେଶ ସହଜରେ ପାଆନ୍ତି । ବିଷୟଟି କ୍ରମଶଃ ଗଭୀରତର ଭାବରେ ଆଲୋଚିତ ହେଉଛି, ଅନେକ ଗ୍ରନ୍ଥ ପ୍ରକାଶିତ ହୋଇଛି ଏବଂ ହେଉଛି, ଯେଉଁଥିରେ ଏହି ବିଷୟରେ ନିର୍ଦ୍ଦେଶ ଓ ତଥ୍ୟମାନ ମିଳିବ ।

କାର୍ଯ୍ୟ-ପ୍ରଣାଳୀର ବିସ୍ତର ବର୍ଣ୍ଣନା କରିବା ମୋ ପକ୍ଷରେ ସମ୍ଭବ ନୁହେଁ, କାରଣ ପ୍ରତ୍ୟେକଙ୍କ ସକାଶେ ସମସ୍ୟା ଭିନ୍ନ ଭିନ୍ନ ପ୍ରକାରର; ସୁତରାଂ ସମାଧାନ ହେବା ଉଚିତ ପ୍ରତ୍ୟେକ ବ୍ୟକ୍ତିର ପ୍ରକୃତି ଅନୁଯାୟୀ । ଖାଦ୍ୟ ସମ୍ବନ୍ଧରେ ଯତ୍ନ ସହକାରେ ସୁଦୀର୍ଘ ଗବେଷଣା କରାହୋଇଛି । ଶିଶୁମାନଙ୍କର ପୁଷ୍ଟି ସକାଶେ ଖାଦ୍ୟ କି ପ୍ରକାରର ହେବା ଉଚିତ ତାହା ପ୍ରାୟ ସମସ୍ତେ ଜାଣନ୍ତି, ସେସବୁ ନିୟମ ପାଳନ କଲେ ସୁଫଳହିଁ ମିଳିବ । ତେବେ ଏକଥା ମନେରଖିବା ବିଶେଷ ପ୍ରୟୋଜନ ଯେ ଶରୀରର ନିଜସ୍ୱ ଏକ ସହଜ ସୂକ୍ଷ୍ମବୋଧ ଅଛି; ତାହା ଯେପର୍ଯ୍ୟନ୍ତ ଅକ୍ଷୁଣ୍ଣ ଭାବରେ କାର୍ଯ୍ୟ କରୁଥାଏ, ସେପର୍ଯ୍ୟନ୍ତ ସକଳ ମତବାଦଠାରୁ ତାହାହିଁ ବେଶୀ ନିର୍ଭରଯୋଗ୍ୟ । ଅତଏବ ତୁମର ସନ୍ତାନ ସ୍ୱାଭାବିକ ଭାବରେ ବଢ଼ୁ, ଏହା ଯଦି ଚାହଁ ତେବେ ଯେଉଁ ଖାଦ୍ୟରେ ତାହାର ଅନିଚ୍ଛା, ତାହା ଜୋରକରି ତାକୁ ଖୁଆଇବାକୁ ଚେଷ୍ଟା କର ନାହିଁ; କାରଣ ପ୍ରାୟହିଁ ଶରୀରର ଗୋଟିଏ ନିର୍ଭୁଲ ସହଜବୋଧ ଥାଏ, ଯାହାଫଳରେ ସେ ବୁଝିପାରେ କ'ଣ ଖାଇଲେ ତାହାର କ୍ଷତି ହେବ,— ଅବଶ୍ୟ ଶିଶୁଟି ଯଦି ବିଶେଷ ଭାବରେ ଖାମ୍‌ଖିଆଲି ନ ହୋଇଥାଏ ।

ଶରୀର ଯଦି ସ୍ୱାଭାବିକ ଅବସ୍ଥାରେ ଥାଏ,– ଅର୍ଥାତ୍ ତାହା ମଧ୍ୟରେ ପ୍ରାଣର ଆବେଗ କିଂବା ମନର ନାନାବିଧ ଧାରଣା ଆସି ତାକୁ ଚାଳିତ ନ କରେ ତାହାହେଲେ ତାହା ପକ୍ଷରେ କ'ଣ ଭଲ ଓ ପ୍ରୟୋଜନୀୟ ତାହା ସେ ବୁଝିପାରେ । ତେବେ ଏ ଧରଣର ଏକ ସ୍ୱାଭାବିକ ଅବସ୍ଥା ଆସିବା ନିମନ୍ତେ ଶିଶୁକୁ ଯତ୍ନର ସହ ଶିକ୍ଷା ଦେବାକୁ ହେବ ସେ ଯେପରି ତାହାର ପ୍ରୟୋଜନ ଏବଂ ଲୋଭ ମଧ୍ୟରେ ପାର୍ଥକ୍ୟ ବୁଝିପାରେ । ନିଷ୍ପ୍ରୟୋଜନ ଜଟିଳତା ସୃଷ୍ଟି ନ କରି ଯେଉଁ ଖାଦ୍ୟ ଲଘୁପାକ ଓ ସ୍ୱାସ୍ଥ୍ୟକର, ସାରବାନ୍ ଓ କ୍ଷୁଧାବର୍ଦ୍ଧକ ତାହା ଉପରେ ଅନୁରାଗ ଜନ୍ମାଇବାକୁ ହେବ । ଯାହା ଉଦର ପାଇଁ କେବଳ ବୋଝସ୍ୱରୂପ ହୁଏ ଓ ଉଦରକୁ ଭାରି କରେ, ଦୈନନ୍ଦିନ ଖାଦ୍ୟରୁ ତାହାକୁ ତ୍ୟାଗ କରିବାକୁ ହେବ । ବିଶେଷତଃ ଆହାର ଗ୍ରହଣ କରିବାକୁ ହେବ କ୍ଷୁଧା ଅନୁଯାୟୀ, କମ୍ ନୁହେଁ ବା ବେଶୀ ନୁହେଁ ଏବଂ ତାହା ଯେପରି ଲୋଭ ଏବଂ ଅତିଭୋଜନ-ଆକାଙ୍‌କ୍ଷା ଚରିତାର୍ଥର ଉପଲକ୍ଷ୍ୟରେ ନ ହୁଏ । ଶୈଶବରୁ ଜାଣିବା ଉଚିତ ଯେ ଆହାର ଗ୍ରହଣ କରାହୁଏ ଶରୀରକୁ ଶକ୍ତି ଏବଂ ସ୍ୱାସ୍ଥ୍ୟ ଦେବା ସକାଶେ, ରସନା-ପରିତୃପ୍ତି ସକାଶେ ନୁହେଁ । ତାହାକୁ ଏପରି ଖାଦ୍ୟ ଦେବାକୁ ହେବ ଯାହା ତାହାର ପ୍ରକୃତିର ଅନୁକୂଳ ଏବଂ ତାହା ଯେପରି ସର୍ବଦା ପରିଷ୍କୃତ, ପରିଚ୍ଛନ୍ନ ଓ ସ୍ୱାସ୍ଥ୍ୟରକ୍ଷାର ନିୟମରେ ତିଆରି ହୁଏ, ସୁସ୍ୱାଦୁ ଅଥଚ ଖୁବ୍ ସାଧାସିଧା । ଖାଦ୍ୟର ପ୍ରକାର ଏବଂ ପରିମାଣ ନିର୍ଦ୍ଧାରଣ କରିବାକୁ ହେବ ତାହାର ବୟସ ଏବଂ ଦୈନନ୍ଦିନ କର୍ମ ଅନୁସାରେ, ଏବଂ ଏଥିରେ ଯେପରି ଶରୀରର ସକଳ ଅଙ୍ଗର ପୁଷ୍ଟି ଓ ସାବଲୀଳବୃଦ୍ଧି ସକାଶେ ପ୍ରୟୋଜନୀୟ ରାସାୟନିକ ପଦାର୍ଥ ଏବଂ ସକ୍ରିୟ ଉପାଦାନସବୁ ରହେ ସେଥିପ୍ରତି ଦୃଷ୍ଟି ଦେବାକୁ ହେବ ।

କାହିଁକି ନା ଶିଶୁକୁ ଖାଦ୍ୟ ଦିଆହେବ ସ୍ୱାସ୍ଥ୍ୟରକ୍ଷା ଏବଂ ଆବଶ୍ୟକ ଶକ୍ତିଲାଭ ସକାଶେ । ଏହା ଯେପରି ଶାସ୍ତି ବା ଦଣ୍ଡର ଉପାୟରୂପେ ବ୍ୟବହୃତ ନ ହୁଏ ସେଥିପାଇଁ ଖୁବ୍ ସାବଧାନ ହେବାକୁ ହେବ । 'ତୁ ଯଦି ଭଲ ପିଲା ପରି ବ୍ୟବହାର ନ କରୁ ତୋତେ ମିଠାଇ

ଦିଆହେବ ନାହିଁ'— ଏହିପରି କହିବାର ଅଭ୍ୟାସ ଭୟଙ୍କର କୁଫଳପ୍ରଦ । ଏହି ଭାବରେ ତାହାର ଶିଶୁଚେତନାରେ ଏକ ଛାପ ରହିଯାଏ ଯେ ପ୍ରଧାନତଃ ତାହାର ଲୋଭର ପରିତୃପ୍ତି ନିମିତ୍ତ ତାକୁ ଖାଦ୍ୟ ଦିଆଯାଉଛି, ଶରୀରକୁ ସଚଳ ଓ ସକ୍ରିୟ ରହିବା ନିମିତ୍ତ ଅପରିହାର୍ଯ୍ୟ ବସ୍ତୁ ବୋଲି ନୁହେଁ ।

ଆଉ ଗୋଟିଏ ବିଷୟ ଶିଶୁକୁ ପ୍ରଥମରୁ ଶିଖାଇବା ଭଲ : ପରିଷ୍କାର-ପରିଚ୍ଛନ୍ନତା ଓ ସ୍ୱାସ୍ଥ୍ୟକର ଅଭ୍ୟାସ ପ୍ରତି ଅନୁରାଗ । କିନ୍ତୁ ତୁମେ ଯଦି ଶିଶୁ ଭିତରେ ପରିଷ୍କାର-ପରିଚ୍ଛନ୍ନତା ପ୍ରତି ଏହି ରୁଚି ଜନ୍ମାଇବାକୁ ଏବଂ ସ୍ୱାସ୍ଥ୍ୟରକ୍ଷାର ନିୟମାବଳିପ୍ରତି ଅନୁରାଗ ସୃଷ୍ଟି କରିବାକୁ ଚାହଁ ତେବେ ତାହା କରିବ ଖୁବ୍ ସାବଧାନତାର ସହିତ ଯେ ତା' ଭିତରକୁ ରୋଗଭୟ ଯେପରି ପ୍ରବେଶ ନ କରେ । ଶିକ୍ଷାଦେବାର କ୍ଷେତ୍ରରେ ଭୟ ହେଲା ସବୁଠାରୁ ଖରାପ ପ୍ରେରଣା ଏବଂ ଯାହା ଆଶଙ୍କା କରାଯାଏ ତାହାକୁ ଟାଣିଆଣିବାର ତାହାହିଁ ହେଲା ଅବ୍ୟର୍ଥ ଉପାୟ । ତଥାପି ସେ ରୋଗକୁ ଯେପରି ଭୟ ନ କରେ, ସେହିପରି ରୋଗ ଉପରେ କୌଣସି ଆସକ୍ତି ନ ରଖିବା ଉଚିତ । ଗୋଟିଏ ପ୍ରଚଳିତ ବିଶ୍ୱାସ ଅଛି ଯେ ଯାହାର ବୁଦ୍ଧି ଯେତେ ବେଶୀ ତୀକ୍ଷ୍ଣ, ତାହାର ଶରୀର ତେତେବେଶୀ ଦୁର୍ବଳ ହୁଏ । ଏହା ଏକେବାରେ ଭ୍ରାନ୍ତ ଧାରଣା ଏବଂ ଏହାର ମୂଳରେ କୌଣସି ସତ୍ୟ ନାହିଁ । ବୋଧହୁଏ ଏପରି କୌଣସି ଯୁଗ ଥିଲା, ଯେତେବେଳେ ଶାରୀରିକ ଦୁର୍ବଳତା ଉପରେ ଲୋକମାନଙ୍କର ଗୋଟାଏ କଳ୍ପନାପ୍ରବଣ ବିକୃତ ଆସକ୍ତି ଥିଲା, କିନ୍ତୁ ସୁଖର ବିଷୟ ଯେ ସେହି ଭାବ ଚାଲିଯାଇଛି । ଏବେ ସୁଗଠିତ, ସବଳ, ପେଶୀମୟ, ଶକ୍ତିମାନ୍ ଓ ସର୍ବଦିଗରେ ସାମଞ୍ଜସ୍ୟପୂର୍ଣ୍ଣ ଦେହ ତାହାର ନିଜର ଗୁଣ ସକାଶେ ପ୍ରଶଂସା ପାଏ । ଯାହାହେଉ, ଦେଖିବାକୁ ହେବ ଯେ ଶିଶୁମାନେ ଯେପରି ସ୍ୱାସ୍ଥ୍ୟକୁ ମହତ୍ତ୍ୱ ଦିଅନ୍ତି, ଏବଂ ଯାହାର ଶରୀର ରୋଗର ଆକ୍ରମଣକୁ ତଡ଼ି ଦେଇପାରେ ଏପରି ସ୍ୱସ୍ଥ୍ୟବାନ୍ ବ୍ୟକ୍ତିକୁ ଯେପରି ସେମାନେ ଶ୍ରଦ୍ଧା କରନ୍ତି । ଶିଶୁ ଯେବେ କୌଣସି ଅପ୍ରୀତିକର ପ୍ରୟୋଜନ

ବା ଯେଉଁଥିରେ ତାହାର କୌଣସି ଉତ୍ସାହ ନାହିଁ ସେପରି କାର୍ଯ୍ୟ ଏଡ଼ାଇବାକୁ ଚାହେଁ କିଂବା ନିଜର ଖିଆଲ୍ ପୂର୍ଣ୍ଣ କରିବା ନିମିତ୍ତ କୌଣସି ବସ୍ତୁ ପିତାମାତାଙ୍କଠାରୁ ପାଇବାକୁ ସେମାନଙ୍କର ସହାନୁଭୂତି ଚାହେଁ ସେତେବେଳେ ସେ ରୋଗର ବାହାନା କରେ । ଏକଥା ସେମାନଙ୍କୁ ଶୀଘ୍ର ବୁଝାଇଦେବା ଉଚିତ ଯେ ଏପରି ଛଳନାରେ ବେଶିକିଛି ଫଳ ହୁଏ ନାହିଁ, ଏବଂ ଏପରି ବେମାର ହେବା ଦ୍ୱାରା ସେମାନେ ବେଶୀ ପ୍ରଶଂସନୀୟ ହୁଅନ୍ତି ନାହିଁ, ବରଂ ତା'ର ବିପରୀତଟା ହୁଅନ୍ତି । ଦୁର୍ବଳମାନଙ୍କର ଏପରି ଗୋଟାଏ ବିଶ୍ୱାସ ପୋଷଣ କରିବାର ପ୍ରବୃତ୍ତି ଅଛି ଯେ ଦୁର୍ବଳତାହିଁ ସେମାନଙ୍କୁ ବିଶେଷ ଆକର୍ଷଣର ବସ୍ତୁ କରି ରଖିଛି ଏବଂ ଦରକାର ହେଲେ ସେମାନଙ୍କ ସଙ୍ଗର ବା ଚାରିପାଖ ଲୋକଙ୍କର ଦୃଷ୍ଟି ବା ସହାନୁଭୂତି ଆକର୍ଷଣ କରିବା ପାଇଁ ଏହି ଦୁର୍ବଳତାକୁ, ଏପରିକି ରୋଗକୁ ଉପାୟରୂପେ ସେମାନେ ବ୍ୟବହାର କରନ୍ତି । କୌଣସି ପ୍ରକାରରେ ଏହି ଦୂଷିତ ବୃତ୍ତିକୁ ପ୍ରଶ୍ରୟ ଦେଲେ ଚଳିବ ନାହିଁ । ଶିଶୁମାନଙ୍କୁ ବୁଝାଇ ଦେବାକୁ ହେବ ଯେ ରୋଗ ହେଲା ତ୍ରୁଟି ଓ ଅକ୍ଷମତାର ଲକ୍ଷଣ, ସଦ୍‌ଗୁଣ ବା ଆତ୍ମୋତ୍ସର୍ଗର ଲକ୍ଷଣ ନୁହେଁ ।

ସେଥିପାଇଁ ଅଙ୍ଗପ୍ରତ୍ୟଙ୍ଗ ବ୍ୟବହାର କରିବାକୁ ଶିଖିବା ସଙ୍ଗେ ସଙ୍ଗେ ଶିଶୁ ପକ୍ଷରେ ନିତ୍ୟନିୟମିତ ଭାବରେ ସେଗୁଡ଼ିକୁ ସ୍ୱାଭାବିକ ସଞ୍ଚାଳନ ଦ୍ୱାରା ଗଢ଼ିବା ସକାଶେ କିଛି ସମୟ ଦେବା ଖୁବ୍ ଭଲ । ପ୍ରତିଦିନ ୨୦ ବା ୩୦ ମିନିଟ୍, ନିଦରୁ ଉଠିବା ପରେ ହେଲେ ଭଲ, ଏହିପରି ଭାବରେ ଅଭ୍ୟାସ କଲେ ତାହାର ପେଶୀସକଳର ସାମଞ୍ଜସ୍ୟପୂର୍ଣ୍ଣ ପୁଷ୍ଟି ହୁଏ; ଆଉମଧ୍ୟ ସେସବୁର ଯଥାର୍ଥ କ୍ରିୟା ହୁଏ ଏବଂ ଅସ୍ଥିଗ୍ରନ୍ଥିର ଓ ମେରୁଦଣ୍ଡର ଅନମନୀୟତାରୁ ରକ୍ଷାମିଳେ, ଯେଉଁ ଅନମନୀୟତା କି ସାଧାରଣତଃ ଯେବେ ମନେ କରାହୁଏ ତାହାର ବହୁତ ଆଗରୁ ଆସିଯାଏ । ଶିଶୁମାନଙ୍କର ସାଧାରଣ ଶିକ୍ଷାର କାର୍ଯ୍ୟକ୍ରମରେ ବ୍ୟାୟାମ ଏବଂ ଖୋଲା ପବନରେ ଖେଳାଖେଳିର ସ୍ଥାନ ରହିବା ଉଚିତ । ସ୍ୱାସ୍ଥ୍ୟରକ୍ଷା ସକାଶେ ଏହା ପୃଥିବୀର

ସମସ୍ତ ଔଷଧ ଅପେକ୍ଷା ବେଶୀ ଉପକାରୀ । ଦୁର୍ବଳତା କିଂବା ରକ୍ତହୀନତା ଦୂର କରିବା ସକାଶେ ଏକଘଣ୍ଟା ଖରାରେ ବୁଲିବା ଗୋଟିଏ ଘରଭର୍ତ୍ତି ବଳକାରକ ଔଷଧଠାରୁ ବେଶୀ ଉପକାରୀ । ମୋର ପରାମର୍ଶ ଏହି ଯେ ''ଏକେବାରେ ଅସମ୍ଭବ'' ହୋଇ ନ ପଡ଼ିଲେ କୌଣସିମତେ ଔଷଧ ଗ୍ରହଣ କରିବ ନାହିଁ । ଆଉ ''ଏକେବାରେ ଅସମ୍ଭବ'' ଏହି କଥାଟି ଠିକ୍ ଠିକ୍ ଅର୍ଥରେ ଗ୍ରହଣ କରିବାକୁ ହେବ । ଶରୀରଚର୍ଚ୍ଚାର ଏହିପରି ପରିକଳ୍ପନାରେ, କିପରି ସବୁଠାରୁ ଭଲ ଭାବରେ ମନୁଷ୍ୟର ଦେହ ଗଠନ କରିବାକୁ ହେବ, ସେ ବିଷୟରେ କେତେଗୁଡ଼ିଏ ସର୍ବଜନବିଦିତ ପ୍ରଧାନ ସୂତ୍ର ଅଛି; ମାତ୍ର ଏଥିରେ ପୂର୍ଣ୍ଣସାଫଲ୍ୟ ଲାଭ କରିବାକୁ ହେଲେ ପ୍ରତ୍ୟେକ ବ୍ୟକ୍ତି ସମ୍ବନ୍ଧରେ ପୃଥକ୍ ଭାବରେ ସ୍ଥିର କରିବାକୁ ହେବ । ଯଦି ସମ୍ଭବ ହୁଏ, ତେବେ କୌଣସି ଉପଯୁକ୍ତ ଲୋକଙ୍କଠାରୁ କିଂବା ଏ ବିଷୟରେ ଇତି ମଧ୍ୟରେ ଯେଉଁ ବହିସବୁ ପ୍ରକାଶିତ ହୋଇଛି ଅଥବା ହେଉଛି, ସେସବୁର ଯଥାସମ୍ଭବ ସାହାଯ୍ୟ ନେବା ଭଲ ।

ଦୈନନ୍ଦିନ କାର୍ଯ୍ୟ ଯାହା ହେଲେ ମଧ୍ୟ ଶିଶୁର ଯଥେଷ୍ଟ ନିଦ୍ରା ନିମନ୍ତେ ଆବଶ୍ୟକ ସମୟ ରହିବା ଉଚିତ । କିନ୍ତୁ ବୟସ ଅନୁସାରେ ଏହି ସମୟର ପରିମାଣ କମ୍ ବେଶୀ ହେବ । ଦୁଗ୍ଧପୋଷ୍ୟ ଶିଶୁର ଜାଗ୍ରତ ରହିବା ସମୟଠାରୁ, ନିଦ୍ରାର ସମୟ ଦୀର୍ଘତର ହେବା ଦରକାର । ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ଏହି ସମୟ କ୍ରମଶଃ କମ୍ ହେବ । ଯୌବନ ଅବସ୍ଥା ପ୍ରାପ୍ତ ନ ହେବା ପର୍ଯ୍ୟନ୍ତ ନିଦ୍ରାର ସମୟ ଯେପରି ଆଠଘଣ୍ଟାରୁ କମ୍ ନ ହୁଏ । ନିଦ୍ରାର ସ୍ଥାନ ନୀରବ ହେବା ଦରକାର ଏବଂ ସେଠାରେ ମୁକ୍ତ ବାୟୁ ଯାତାୟତ କରିବାର ଉତ୍ତମ ବ୍ୟବସ୍ଥା ରହିବା ଉଚିତ । ଶିଶୁର ରାତ୍ରିର ପ୍ରଥମ ପ୍ରହର ନିଦ୍ରା ଯେପରି ଅକାରଣରେ ବ୍ୟାହତ ନ ହୁଏ । ସ୍ନାୟୁତନ୍ତ୍ରୀସକଳକୁ ବିଶ୍ରାମ ଦେବା ପାଇଁ ମଧ୍ୟରାତ୍ରର ପୂର୍ବ ସମୟ ସବୁଠାରୁ ଉପଯୁକ୍ତ । ଯେଉଁମାନେ ସ୍ନାୟବିକ ସମତା ଏବଂ ସ୍ଥିରତା ଚାହାନ୍ତି ସେମାନଙ୍କୁ ଜାଗ୍ରତ ଅବସ୍ଥାରେ ବି ଦେହକୁ କିପରି ଶିଥିଳ କରିଦେଇ ବିଶ୍ରାମ ନେବାକୁ

ହୁଏ ତାହା ଶିଖିବା ଅପରିହାର୍ଯ୍ୟରୂପେ ପ୍ରୟୋଜନ । ପେଶୀ ଏବଂ ସ୍ନାୟୁସକଳଙ୍କୁ ଢିଲା ବା ଶିଥିଳ କରିବାକୁ ଜାଣିବା ଏକ କଳାବିଶେଷ । ଅଳ୍ପବୟସରୁ ଏହା ଶିଶୁମାନଙ୍କୁ ଶିଖାଇଲେ ଭଲ ହୁଏ । କିନ୍ତୁ ଏପରି ପିତାମାତା ବି ଅଛନ୍ତି ଯେଉଁମାନେ ପିଲାମାନଙ୍କୁ ନିରନ୍ତର ସକ୍ରିୟ ରଖନ୍ତି, ଯେତେବେଳେ ସେମାନେ ଶାନ୍ତ ଭାବରେ ଥାଆନ୍ତି, ସେତେବେଳେ ସେମାନେ ମନେକରନ୍ତି ଯେ ପିଲା ଅସୁସ୍ଥ ହୋଇଛି । ଆଉ ଏପରି ପିତାମାତା ବି ଅଛନ୍ତି, ଯେଉଁମାନେ ସନ୍ତାନମାନଙ୍କର ବିଶ୍ରାମ ଓ ଢିଲା ଭାବରେ ଆରାମ କରିବା ସମୟକୁ ନଷ୍ଟ କରି ସେମାନଙ୍କ ଦ୍ୱାରା ଘରର କାମ କରାନ୍ତି । ବର୍ଦ୍ଧନଶୀଳ ସ୍ନାୟୁମଣ୍ଡଳ ଅବିରାମ ଶ୍ରମର ଚାପ ସହ୍ୟ କରିପାରେ ନାହିଁ । ସେହିପରି ସେମାନଙ୍କ ଉପରେ ଅତିଶ୍ରମ ଅଥବା ସେମାନଙ୍କର ଇଚ୍ଛାବିରୁଦ୍ଧ କାର୍ଯ୍ୟ-ଭାର ଲଦିବାଠାରୁ ଅଧିକ ଅନିଷ୍ଟକର ଆଉ କିଛି ହୋଇ ନ ପାରେ । ପ୍ରଚଳିତ ସଂସ୍କାରବିରୁଦ୍ଧ ହେବା ସତ୍ତ୍ୱେ ମୁଁ କହୁଛି ଯେ ଶିଶୁମାନଙ୍କର ପିତାମାତାଙ୍କୁ ସେବା କରିବା କର୍ତ୍ତବ୍ୟ ବୋଲି ସେମାନଙ୍କଠାରୁ କାର୍ଯ୍ୟ ଦାବି କରିବା ଅନୁଚିତ । ବରଂ ବିପରୀତଟାହିଁ ଅଧିକ ସତ୍ୟ । ଏହା ନିଶ୍ଚୟ ସ୍ୱାଭାବିକ ଯେ ପିତାମାତାହିଁ ସନ୍ତାନର ସେବା କରିବେ ଅନ୍ତତଃ ସେମାନଙ୍କର ଯଥୋଚିତ ଯତ୍ନନେବେ । ଯଦି ଶିଶୁ ଗୃହକର୍ମ ନିଜେ ଗ୍ରହଣ କରେ ଏବଂ ଖେଳ ପରି ତାହା ନିଜେ ଖୁସି ହୋଇ କରେ ତେବେ ଏହାକୁ ଅନୁମୋଦନ କରାଯାଇପାରେ । ଏହା ହେଲେ ସୁଦ୍ଧା ଲକ୍ଷ୍ୟ ରଖିବାକୁ ହେବ ଯେ ଶରୀରର ସ୍ୱାସ୍ଥ୍ୟ ଅକ୍ଷୁଣ୍ଣ ରଖିବା ସକାଶେ ବିଶ୍ରାମ ନିମିତ୍ତ ଯେଉଁ ସମୟ ପ୍ରୟୋଜନ ତାହା ଯେପରି କମି ନ ଯାଏ ।

ମୁଁ କହୁଛି ଯେ ଅଳ୍ପ ବୟସରୁ ସ୍ୱାସ୍ଥ୍ୟ, ସାମର୍ଥ୍ୟ ଓ ସୁସଙ୍ଗତି ପ୍ରତି ଶିଶୁମାନଙ୍କର ଶ୍ରଦ୍ଧା ଜାଗ୍ରତ୍ କରିଦେବା ଉଚିତ । ସୌନ୍ଦର୍ଯ୍ୟ ଉପରେ ଅଧିକ ଗୁରୁତ୍ୱ ଦିଆଯିବା ଉଚିତ । ଛୋଟ ପିଲା ସୌନ୍ଦର୍ଯ୍ୟ ଚାହିଁବେ; ତେବେ ତାହା ଅନ୍ୟକୁ ମୋହିତ କରିବା ସକାଶେ ବା ଯଶଃପ୍ରାପ୍ତି ସକାଶେ ନୁହେଁ, କିନ୍ତୁ ସୌନ୍ଦର୍ଯ୍ୟକୁ ଭଲ ପାଇବା ସକାଶେ । କାରଣ ସୌନ୍ଦର୍ଯ୍ୟର

ଆଦର୍ଶକୁ ଶରୀରରେ ବାସ୍ତବରେ ପରିଣତ କରିବାକୁ ହେବ । ସକଳ ମାନବ-ଦେହରେହିଁ ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗ ମଧ୍ୟରେ ଏବଂ କ୍ରିୟାଶୀଳ ଅବସ୍ଥାରେ ଶରୀରର ସକଳ ଭଙ୍ଗିମା ମଧ୍ୟରେ ଗୋଟିଏ ସାମଞ୍ଜସ୍ୟ ପ୍ରତିଷ୍ଠାର ସମ୍ଭାବନା ରହିଛି । ପ୍ରତ୍ୟେକ ମାନବଦେହ ପ୍ରଥମରୁ ସୁଚିନ୍ତିତ ଶରୀରଚର୍ଚ୍ଚା ପଦ୍ଧତି ଅନୁଶୀଳନ କଲେ ନିଜର ସୁସମତା ପ୍ରତିଷ୍ଠିତ କରିପାରେ ଏବଂ ତାହା ଫଳରେ ସୌନ୍ଦର୍ଯ୍ୟକୁ ପ୍ରକାଶ କରିବା ପାଇଁ ସମର୍ଥ ହୁଏ । ଯେତେବେଳେ ସର୍ବାଙ୍ଗୀଣ ଶିକ୍ଷାର ଅନ୍ୟାନ୍ୟ ଦିଗ ବିଷୟରେ ଆଲୋଚନା କରାଯିବ ସେତେବେଳେ ଦେଖିବା ଯେ ଏହି ସୌନ୍ଦର୍ଯ୍ୟକୁ ବାହାରେ ଦିନେ ରୂପ ଦେବାକୁ ହେଲେ ଭିତରେ କିପରି ଅବସ୍ଥା ରକ୍ଷା କରିବାକୁ ହେବ ।

ଏପର୍ଯ୍ୟନ୍ତ କେବଳ ଶିଶୁଶିକ୍ଷା ସମ୍ବନ୍ଧରେ ମୁଁ କହିଛି; କାରଣ ଯଦି ଠିକ୍ ସମୟରେ ସମ୍ୟକ୍ ଜ୍ଞାନଯୁକ୍ତ ଶାରୀରିକ ଶିକ୍ଷା ଦିଆହୁଏ ତେବେ ଶରୀରକୁ ବହୁତ ତ୍ରୁଟି ଏବଂ ବିକୃତିରୁ ରକ୍ଷା କରାଯାଏ । କିନ୍ତୁ ଯଦି କୌଣସି କାରଣ ବଶତଃ ଏହି ଶିକ୍ଷା ବାଲ୍ୟକାଳରୁ, ଏପରିକି ଯୁବକାବସ୍ଥାରୁ ଦିଆ ନ ହୋଇଥାଏ, ତେବେ ଯେକୌଣସି ବୟସରେ ତାହା ଆରମ୍ଭ କରାଯାଇ-ପାରେ । ଅବଶ୍ୟ ଯେତେ ବିଳମ୍ବରେ ଆରମ୍ଭ କରାହେବ, ସେତେ ଅଧିକ ଖରାପ ଅଭ୍ୟାସର ସମ୍ମୁଖୀନ ହେବାକୁ ହେବ; ବହୁତ କଠିନ ଅଭ୍ୟାସକୁ ନମନୀୟ କରିବାକୁ ହେବ, ଅନେକ ବିକୃତିକୁ ସଂଶୋଧନ କରିବାକୁ ହେବ । ଏହି ପ୍ରସ୍ତୁତିର କାର୍ଯ୍ୟରେ ପ୍ରୟୋଜନ ହେଲା ଅଧିକ ଧୈର୍ଯ୍ୟ ଓ ଅଧ୍ୟବସାୟ; ଶରୀରର ଆକୃତି ଏବଂ ଗତିବୃତ୍ତି ମଧ୍ୟରେ ସୁସଙ୍ଗତି ସ୍ଥାପନ କରିବାକୁ ଗଠନମୂଳକ ପରିକଳ୍ପନା ତା'ପରେ ଆରମ୍ଭ ହୋଇପାରେ । ତେବେ ତୁମ ମଧ୍ୟରେ ଯେଉଁ ସୌନ୍ଦର୍ଯ୍ୟ ପ୍ରାପ୍ତ କରିବାକୁ ଚାହଁ ତାହାର ଜୀବନ୍ତ ଆଦର୍ଶକୁ ଯଦି ଧରି ରଖିପାର ତେବେ ତୁମେ ଲକ୍ଷ୍ୟରେ ଦିନେ ନିଶ୍ଚୟ ପହଞ୍ଚିବ ।

(ବୁଲେଟିନ୍, ଏପ୍ରିଲ ୧୯୫୫)

# (୪)

## ପ୍ରାଣିକ ଶିକ୍ଷା

ସକଳ ପ୍ରକାର ଶିକ୍ଷା ମଧ୍ୟରେ ପ୍ରାଣର ଶିକ୍ଷାହିଁ ବୋଧହୁଏ ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ଓ ଅପରିହାର୍ଯ୍ୟ । ଅଥଚ ଏହାକୁ ସୁସ୍ପଷ୍ଟ ଜ୍ଞାନ ଓ ପଦ୍ଧତି ଅନୁସାରେ କ୍ୱଚିତ୍ ଗ୍ରହଣ ଏବଂ ଅନୁସରଣ କରାଯାଇଥାଏ । ଏହାର କେତେଗୁଡ଼ିଏ କାରଣ ଅଛି : ପ୍ରଥମତଃ ବିଷୟଟି ସମ୍ବନ୍ଧରେ ଆମ୍ଭମାନଙ୍କର ଧାରଣା ଅତ୍ୟନ୍ତ ଗୋଳମାଳିଆ; ଦ୍ୱିତୀୟତଃ କାର୍ଯ୍ୟଟି ଅତ୍ୟନ୍ତ ଦୁରୂହ ଏବଂ ଏଥିରେ ସଫଳତା ସକାଶେ ସହିଷ୍ଣୁତା, ଅଶେଷ ଧୈର୍ଯ୍ୟ ଓ ଅଟଳ ସଂକଳ୍ପଶକ୍ତି ଆବଶ୍ୟକ ।

ବାସ୍ତବରେ ମନୁଷ୍ୟର ସ୍ୱଭାବରେ ପ୍ରାଣ ଏକ ସ୍ୱେଚ୍ଛାଚାରୀ, ପ୍ରଭୁତ୍ୱକାମୀ ଏବଂ ଅତ୍ୟାଚାରୀ ରାଜା । ଯେହେତୁ ତାହା ମଧ୍ୟରେ ସାମର୍ଥ୍ୟ, ଶକ୍ତି, ଉତ୍ସାହ, କାର୍ଯ୍ୟକାରୀ ସକ୍ରିୟତା ଅଛି, ସେଥିପାଇଁ ବହୁତ ଲୋକ ତାକୁ ସମ୍ମାନ କରିଚାଲନ୍ତି ଓ ତାକୁ ସର୍ବଦା ଖୁସି ରଖିବାକୁ ଚେଷ୍ଟା କରନ୍ତି । କିନ୍ତୁ ଏହି ପ୍ରଭୁଟିର ତୃପ୍ତି କୌଣସିମତେ ହୁଏ ନାହିଁ, ଏହାର ଦାବିର କୌଣସି ସୀମା ନାହିଁ । ଦୁଇଟି ପ୍ରଚଳିତ ଧାରଣା, ବିଶେଷ କରି ପାଶ୍ଚାତ୍ୟ ଦେଶରେ ଏହାର ଆଧିପତ୍ୟକୁ ଦୁର୍ଦ୍ଦମନୀୟ ହେବାକୁ ସାହାଯ୍ୟ କରିଛି । ସେଥିରୁ ଗୋଟାଏ ହେଲା ଜୀବନର ଲକ୍ଷ୍ୟ ସୁଖୀ ହେବା; ଅନ୍ୟଟି ହେଲା ମନୁଷ୍ୟ ଜନ୍ମ ହୁଏ ଗୋଟିଏ ନିର୍ଦ୍ଦିଷ୍ଟ ସ୍ୱଭାବ ସହ ଏବଂ ତାହାର ପରିବର୍ତ୍ତନ ଅସମ୍ଭବ ।

ପ୍ରଥମଟି ହେଉଛି ଏକ ଗଭୀର ସତ୍ୟର ବାଳସୁଲଭ ବିକୃତି : ସତ୍ୟ ହେଲା ଏହି ଯେ ସବୁକିଛିର ଭିତ୍ତି ହେଉଛି ସତ୍ତାର ଆନନ୍ଦ ଏବଂ ସେହି ଆନନ୍ଦ ଛଡ଼ା ଜୀବନର କୌଣସି ଅସ୍ତିତ୍ୱ ଅସମ୍ଭବ । କିନ୍ତୁ ଆନନ୍ଦ, ଯାହାକି ଭଗବାନଙ୍କର ଏକ ଗୁଣ ଏବଂ ଅହେତୁକ, ତାହା ସହିତ

ଜୀବନରେ ସୁଖର ସନ୍ଧାନ ଯାହାକି ବହୁ ପରିମାଣରେ ପାରିପାର୍ଶ୍ୱିକ ଅବସ୍ଥା ଉପରେ ନିର୍ଭର କରେ — ତାହାକୁ ଏକ କରି ମିଶାଇ ଦେଲେ ଚଳିବ ନାହିଁ । ସୁଖୀ ହେବା ଆମର ଜନ୍ମଗତ ଅଧିକାର — ଏହି ଦୃଢ଼ ବିଶ୍ୱାସରୁ ସାଧାରଣତଃ ଏପରି ଧାରଣା ଜନ୍ମେ ଯେ ଯେକୌଣସି ପ୍ରକାରରେ ବଞ୍ଚିବାକୁ ହେବ । ଅଜ୍ଞାନାଚ୍ଛନ୍ନ, ଆକ୍ରମଣାତ୍ମକ ଅହମିକାମୟ ଏହି ମନୋଭାବରୁ ଆସେ ସକଳ ଦୁଃଖ ଓ ସଂଘର୍ଷ, ନିରାଶା ଓ ହତାଶା ଏବଂ ତା'ପରେ ସର୍ବଶେଷରେ ଆସେ ଗୋଟାଏ ଭୟଙ୍କର ବିପର୍ଯ୍ୟୟ ।

ପୃଥିବୀ ଆଜି ପ୍ରକୃତରେ ଯେଉଁ ଅବସ୍ଥାରେ ଅଛି, ସେଥିରେ ବ୍ୟକ୍ତିଗତ ସୁଖସୁବିଧା ଜୀବନର ଲକ୍ଷ୍ୟ ନୁହେଁ; କିନ୍ତୁ ବ୍ୟକ୍ତିଗତ ଚେତନାକୁ ଜାଗ୍ରତ କରି ସତ୍ୟମୟ ଚେତନା ବା ଋତଚିତ୍ ଆଡ଼କୁ କ୍ରମଶଃ ଅଗ୍ରସର ହେବା ହେଉଛି ଲକ୍ଷ୍ୟ ।

ଦ୍ୱିତୀୟ ଧାରଣାର ମୂଳରେ ଏହି ତଥ୍ୟ ଅଛି ଯେ ସ୍ୱଭାବର ଆମୂଳ ରୂପାନ୍ତର କରିବାକୁ ହେଲେ ପ୍ରୟୋଜନ ହୁଏ ଅବଚେତନା ଉପରେ ପୂର୍ଣ୍ଣ ଆଧିପତ୍ୟ ସ୍ଥାପନ, ଆଉ ଯାହାକିଛି ନିଶ୍ଚେତନାରୁ ଉଠିଆସେ ତାହାର କଠୋର ନିୟନ୍ତ୍ରଣ । ସାଧାରଣ ମନୁଷ୍ୟ ସକାଶେ ଏଗୁଡ଼ିକ ଜନ୍ମଜନ୍ମାନ୍ତରରୁ ରହିଥିବା ଦୋଷଗୁଣ ଏବଂ ଯେଉଁ ପାରିପାର୍ଶ୍ୱିକ ଅବସ୍ଥା ମଧ୍ୟରେ ସେ ବାସ କରେ ତାହାର ପରିଣାମରୂପେ ଏଗୁଡ଼ିକ ପ୍ରକାଶ ପାଏ । କେବଳ ଗୋଟିଏ ଅସାଧାରଣ ପରିଣତ ଚେତନା ଏବଂ ଭଗବତ୍ କରୁଣା ଏହି ପର୍ବତପ୍ରମାଣ କାର୍ଯ୍ୟ ସମାଧାନ କରିପାରେ । ଏହାଛଡ଼ା ଏଦିଗରେ ଖୁବ କମ୍ ଲୋକ ଚେଷ୍ଟା କରିଛନ୍ତି । ବହୁ ସ୍ୱନାମଧନ୍ୟ ଆଚାର୍ଯ୍ୟ କହିଛନ୍ତି ଯେ ଏହି ଜିନିଷ କେବେ ବି ସମ୍ପନ୍ନ କରାଯାଇପାରେ ନାହିଁ, ଏହା ଗୋଟାଏ ଅସଂଭବ କଳ୍ପନା ତଥାପି ଏହା ସମ୍ପନ୍ନ କରିବା ଅସମ୍ଭବ ନୁହେଁ । ବାରଂବାର ବିଫଳତା ସତ୍ତ୍ୱେ ଯାହାକୁ କୌଣସିକିଛି ନିରୁତ୍ସାହ କରିପାରେ ନାହିଁ, ଏହିପରି ଗୋଟିଏ ସୁନିର୍ଦ୍ଦିଷ୍ଟ ଶୃଙ୍ଖଳା ଏବଂ ଏହିପରି ଗୋଟିଏ ଅଧ୍ୟବସାୟ ଦ୍ୱାରା ବାସ୍ତବରେ ସ୍ୱଭାବର ରୂପାନ୍ତର ହୋଇଛି ।

ପ୍ରଥମରେ ଏକାନ୍ତ ପ୍ରୟୋଜନ ହେଲା ଯେଉଁ ସ୍ୱଭାବର ରୂପାନ୍ତର କରିବା ଆମର ଲକ୍ଷ୍ୟ ତା'ର ଖୁଣ୍ଟିନାଣ୍ଟି ନିଖୁଣ ଭାବରେ ପର୍ଯ୍ୟବେକ୍ଷଣ କରିବା । ଅଧିକାଂଶ କ୍ଷେତ୍ରରେ ଏ କାର୍ଯ୍ୟ ଦୁରୂହ ଏବଂ ପ୍ରାୟ ବ୍ୟର୍ଥତାରେ ପରିଣତ ହୁଏ । ତେବେ ପୁରାତନ ପଦ୍ଧତି ମଧ୍ୟରେ ଗୋଟିଏ ତଥ୍ୟ ଥିଲା; ତାହା ଅନ୍ତରର ଗୋଲକ ଧନ୍ଦାର ଆବିଷ୍କାରକ ସୂତା ପରି ସହାୟକ ହୋଇପାରେ । ସେ ତଥ୍ୟଟି ହେଲା ଏହି ଯେ ପ୍ରତ୍ୟେକର ସ୍ୱଭାବରେ ପ୍ରାୟ ସମାନ ଅନୁପାତରେ ଦୁଇ ପ୍ରକାର ବିପରୀତ ପ୍ରବୃତ୍ତି ରହିଛି – ବ୍ୟକ୍ତିବିଶେଷର କ୍ଷେତ୍ରରେ ଏହି ପାର୍ଥକ୍ୟ ଆହୁରି ସ୍ପଷ୍ଟ – ଏକହିଁ ବସ୍ତୁର ଅନ୍ଧକାରମୟ ଏବଂ ଆଲୋକିତ ଅଂଶତୁଲ୍ୟ ଏହା ରହିଥାଏ । ସେଥିପାଇଁ ଯେଉଁ ବ୍ୟକ୍ତି ଅସାଧାରଣ ମୁକ୍ତହସ୍ତ ତାହା ଭିତରେ ହଠାତ୍ ଭୀଷଣ ଧନଲୋଭ ଦେଖାଦିଏ; ସାହସୀ ବ୍ୟକ୍ତିର ହୁଏତ କେଉଁଠାରେ ଭୀରୁତା ରହିଥାଏ, ଭଲଲୋକ ମଧ୍ୟରେ ହଠାତ୍ ଦେଖାଦିଏ ମନ୍ଦ ପ୍ରବୃତ୍ତି । ପ୍ରାଣ ଯେପରି ପ୍ରତ୍ୟେକଙ୍କୁ ଦେଇଛି ଗୋଟିଏ ଆଦର୍ଶକୁ ରୂପ ଦେବାର ସମ୍ଭାବନା ଓ ସାମର୍ଥ୍ୟ, ସେହିପରି ତାହା ମଧ୍ୟରେ ପୁଣି ପୂର୍ଣ୍ଣକରି ରଖିଛି ନାନା ବିରୁଦ୍ଧ ଉପାଦାନ ଏହା ଯେପରି ସ୍ପଷ୍ଟତଃ ନିର୍ଦ୍ଦେଶ କରେ ଯେ ସିଦ୍ଧିଲାଭ ନିମନ୍ତେ ତାହାକୁ କେଉଁ ପ୍ରକାର ସଂଗ୍ରାମରେ ପ୍ରବେଶ କରିବାକୁ ହେବ ଏବଂ କେଉଁ ପ୍ରକାର ବିଜୟ ଲାଭ କରିବାକୁ ହେବ । ଏହିପରି ଭାବରେ ଦେଖିଲେ ସମସ୍ତ ଜୀବନହିଁ କମ୍ ବେଶୀ ସଜ୍ଞାନ ଭାବରେ ଓ କମ୍ ବେଶୀ ସ୍ୱେଚ୍ଛାରେ ଗୃହୀତ ଗୋଟିଏ ଶିକ୍ଷା । କେତେକ କ୍ଷେତ୍ରରେ ଏହି ଶିକ୍ଷା ଆଲୋକର ଦିଗଟି ପ୍ରକାଶ କରିବାକୁ ସହାୟକ ହୁଏ, ଅନ୍ୟ କ୍ଷେତ୍ରରେ ଏହାର ବିପରୀତ ଅନ୍ଧକାରର ଦିଗକୁ ସାହାଯ୍ୟ କରେ । ଅବସ୍ଥା ଏବଂ ପରିବେଶ ଯଦି ଅନୁକୂଳ ହୁଏ, ତେବେ ଅନ୍ଧକାର ଚାଲିଯାଏ ଓ ଆଲୋକ ବୃଦ୍ଧିପାଏ; ତା ନ ହେଲେ ଅନ୍ୟ କ୍ଷେତ୍ରରେ ବିପରୀତ ଘଟେ । ସୁତରାଂ ପ୍ରତ୍ୟେକର ସ୍ୱଭାବ ରୂପ ନିଏ ପ୍ରକୃତିର ଖିଆଲ ଏବଂ ଜଡ଼ ଓ ପ୍ରାଣମୟ ଜୀବନର ନିୟତି ବା

ନିର୍ଦ୍ଧାରଣ ଅନୁସାରେ ଏବଂ ଏହାର ଅନ୍ୟଥା ହୋଇପାରେ ଯଦି କେବଳ ଏକ ଊର୍ଦ୍ଧ୍ୱତର ଶକ୍ତିର ଜ୍ୟୋତିର୍ମୟ ହସ୍ତକ୍ଷେପ ବା ଏକ ସଚେତନ ସଂକଳ୍ପ ପ୍ରକୃତିକୁ ତା'ର ନିଜର ଖିଆଲ ଅନୁସାରେ ଚାଲିବାକୁ ଛାଡ଼ି ନ ଦେଇ ତାହା ସ୍ଥାନରେ ଆଣିଦିଏ ଏକ ଯୁକ୍ତିସମ୍ମତ ଓ ସ୍ୱଚ୍ଛଦର୍ଶୀ ଶୃଙ୍ଖଳା— ଶିକ୍ଷାର ଯୁକ୍ତିସମ୍ମତ ପଦ୍ଧତି କହିଲେ ଏହି ସଚେତନ ସଂକଳ୍ପକୁହିଁ ବୁଝାଏ ।

ସେହି କାରଣରୁ ଶିଶୁର ପ୍ରାଣ-ସ୍ତରର ଶିକ୍ଷା ଯଥାସମ୍ଭବ ଶୀଘ୍ର ଆରମ୍ଭ କରିବା ପ୍ରୟୋଜନ; ବସ୍ତୁତଃ ଯେବେ ସେ ଇନ୍ଦ୍ରିୟ ପରିଚାଳନା କରିବାକୁ ଶିଖୁଥାଏ ସେହି ସଙ୍ଗେ ସଙ୍ଗେ ସେହି ଶିକ୍ଷା ଆରମ୍ଭ ହେବା ଉଚିତ । ଏହା ଫଳରେ ସେ ବହୁତ କୁଅଭ୍ୟାସରୁ ରକ୍ଷା ପାଇବ, ବହୁତ କ୍ଷତିକର ପ୍ରଭାବ ବର୍ଜନ କରିପାରିବ ।

ପ୍ରାଣିକ ଶିକ୍ଷାର ଦୁଇଟି ପ୍ରଧାନ ଦିଗ ଅଛି । ଦୁଇଟିର ପଦ୍ଧତି ଏବଂ ଲକ୍ଷ୍ୟରେ ବହୁତ ପାର୍ଥକ୍ୟ ଅଛି, କିନ୍ତୁ ଉଭୟହିଁ ସମାନ ମୂଲ୍ୟବାନ୍ । ପ୍ରଥମଟି ହେଲା ଇନ୍ଦ୍ରିୟଗୁଡ଼ିକର ପୁଷ୍ଟିସାଧନ ଏବଂ ବ୍ୟବହାର; ଦ୍ୱିତୀୟଟି ହେଲା ନିଜର ପ୍ରକୃତି ସମ୍ବନ୍ଧରେ ଜ୍ଞାନ ଏବଂ କ୍ରମଶଃ ତାହା ଉପରେ କର୍ତ୍ତୃତ୍ୱ ଅର୍ଜନ, ଶେଷରେ ତାହାର ରୂପାନ୍ତର-ସାଧନ ।

ପୁଣି ଇନ୍ଦ୍ରିୟଗୁଡ଼ିକର ଶିକ୍ଷାର ବହୁତ ଦିଗ ଅଛି; ସତ୍ତାର ପୁଷ୍ଟି ସଙ୍ଗେ ସଙ୍ଗେ ସେହି ଶିକ୍ଷାସବୁକୁ ପରସ୍ପର ସହିତ ଯୁକ୍ତ କରିବା ଉଚିତ; ପ୍ରକୃତପକ୍ଷେ ଏହି ଶିକ୍ଷା କେବେ ବି ବନ୍ଦ ହେବା ଉଚିତ ନୁହେଁ । ଇନ୍ଦ୍ରିୟସକଳର ଯଥାଯଥ ଅନୁଶୀଳନ ଓ ବିକାଶ ଫଳରେ ଏପରି ଶକ୍ତି ଓ ସୂକ୍ଷ୍ମତା ଲାଭ କରାଯାଇପାରେ ଯାହାକି ସାଧାରଣ କ୍ଷେତ୍ରରେ ଆଶା ବି କରାଯାଏ ନାହିଁ ।

ପ୍ରାଚୀନ କାଳର କୌଣସି କୌଣସି ଗୁପ୍ତବିଦ୍ୟା ଅନୁସାରେ ମନୁଷ୍ୟ ଯେତେଗୁଡ଼ିଏ ଇନ୍ଦ୍ରିୟକୁ ବିକାଶ କରିପାରେ, ସେସବୁର ସଂଖ୍ୟା ପାଞ୍ଚରେ ସୀମାବଦ୍ଧ ନୁହେଁ, ଏହା ସାତ ଏବଂ କୌଣସି ବିଶେଷ ସ୍ଥଳରେ ତାହା ବାର ପର୍ଯ୍ୟନ୍ତ ହୋଇପାରେ । କୌଣସି ବିଶେଷ ଯୁଗରେ, କୌଣସି

କୌଣସି ଜାତି ପ୍ରୟୋଜନ ଅନୁସାରେ ଏହି ଅତିରିକ୍ତ ଇନ୍ଦ୍ରିୟଗୁଡ଼ିକର ଅଳ୍ପ ବହୁତ ପୂର୍ଣ୍ଣ ବିକାଶ ସାଧନ କରିଥିଲେ । ଏକ ଯଥାର୍ଥ ଅନୁଶୀଳନର ଧାରା ଅନୁସରଣ କରିଚାଲିଲେ, ଯେଉଁମାନେ ଏହି ଆବିଷ୍କାରଚର୍ଚ୍ଚା ଏବଂ ତାହାର ଫଳାଫଳ ସମ୍ବନ୍ଧରେ ପ୍ରକୃତ ଉତ୍ସାହୀ ସେମାନେ ସମସ୍ତେହିଁ ଏ ସକଳକୁ ଆୟତ୍ତ କରିପାରନ୍ତି । ଯେଉଁ ସମସ୍ତ ବୃତ୍ତିର କଥା ବାରଂବାର ଉଲ୍ଲେଖ କରାହୋଇଛି, ଉଦାହରଣସ୍ୱରୂପ ସେଥିରୁ ଗୋଟିଏ ହେଲା– ଦେହ-ଚେତନାକୁ ପ୍ରସାରିତ କରିବା, ନିଜ ଭିତରୁ ତାକୁ ବାହାରକୁ ଆଣି ଗୋଟିଏ ନିର୍ଦ୍ଦିଷ୍ଟ ବିନ୍ଦୁ ଉପରେ ଏକାଗ୍ର କରିବା ଏବଂ ଏହିପରି ଭାବରେ କୌଣସି ବସ୍ତୁର ଦୂରରୁ ଦର୍ଶନ, ଶ୍ରବଣ, ଆଘ୍ରାଣ, ସ୍ୱାଦଗ୍ରହଣ ଏପରିକି ସ୍ପର୍ଶ ପର୍ଯ୍ୟନ୍ତ ଲାଭ କରାଯାଏ ।

ଏହିସବୁ ଇନ୍ଦ୍ରିୟ ଓ ସେମାନଙ୍କ ବ୍ୟବହାର ସମ୍ପର୍କରେ ସାଧାରଣ ଶିକ୍ଷା ସଙ୍ଗେ ସଙ୍ଗେ ଯେତେ ଶୀଘ୍ର ସମ୍ଭବ ଶିଶୁ ଭିତରେ ଜାଗ୍ରତ କରାଇବାକୁ ହେବ ଭଲମନ୍ଦର ବିଚାର ଓ ସୌନ୍ଦର୍ଯ୍ୟବୋଧ– ଯେଉଁଥିରେ ଶିଶୁ ଯାହା ସୁନ୍ଦର ଓ ସୁସମଞ୍ଜସ, ସରଳ, ସ୍ୱାସ୍ଥ୍ୟକର ଓ ବିଶୁଦ୍ଧ ତାହା ଚିହ୍ନିପାରେ ଓ ଗ୍ରହଣ କରିପାରେ । କାରଣ ଶାରୀରିକ ସ୍ୱାସ୍ଥ୍ୟ ପରି ଆନ୍ତର ଚେତନାର ମଧ୍ୟ ଏକ ସ୍ୱାସ୍ଥ୍ୟ ଅଛି; ଯେପରି ଶରୀର ଏବଂ ଶରୀରର ଗତିବିଧି ମଧ୍ୟରେ ସୌନ୍ଦର୍ଯ୍ୟ ଅଛି ସେହିପରି ଇନ୍ଦ୍ରିୟାନୁଭବ ମଧ୍ୟରେ ବି ସୌନ୍ଦର୍ଯ୍ୟ ଓ ସାମଞ୍ଜସ୍ୟ ଅଛି । ଶିଶୁର ଶକ୍ତି ଓ ବୁଦ୍ଧିର ବିକାଶ ସଙ୍ଗେ ସଙ୍ଗେ ଶିକ୍ଷାର ଅଙ୍ଗରୂପେ ତାକୁ ବୁଝାଇ ଦେବାକୁ ହେବ ଯେ କ୍ଷମତା ଏବଂ ନିପୁଣତା ସଙ୍ଗେ ତାହାର ସୌନ୍ଦର୍ଯ୍ୟବୋଧ ଓ ସୁରୁଚି ଜନ୍ମିବା ଉଚିତ । ତାକୁ ଶିଖାଇବାକୁ ହେବ, ପ୍ରକୃତି ମଧ୍ୟରେ ହେଉ ବା ମାନବକୃତ ସୃଷ୍ଟି ମଧ୍ୟରେ ହେଉ, ସୁନ୍ଦର, ସ୍ୱାସ୍ଥ୍ୟକର, ସମୁନ୍ନତ ଓ ମହତ୍ ବସ୍ତୁସବୁକୁ ଭଲ ପାଇବାକୁ । ଏହା ଯେପରି ହୁଏ ଯଥାର୍ଥ ସୌନ୍ଦର୍ଯ୍ୟବୋଧର କୃଷ୍ଟି ଓ ଏହାହିଁ ତାକୁ ବହୁତ ନିମ୍ନମୁଖୀ ପ୍ରଭାବରୁ ରକ୍ଷା କରିବ । ଗତ ଯୁଦ୍ଧସବୁ ଓ ସେଗୁଡ଼ିକର ପରିଣାମ ସ୍ୱରୂପ ଯେଉଁ ଭୟଙ୍କର ସ୍ନାୟବିକ ଉତ୍ତେଜନା ଆସିଛି ତାହା ସଭ୍ୟତାର ପତନ

ଏବଂ ସମାଜଭଙ୍ଗର ସୂଚନା ଦିଏ; ମନେହୁଏ ଏକ କ୍ରମବର୍ଦ୍ଧମାନ ଅଶ୍ଳୀଳତା ଓ କୁରୁଚି ଯେପରିକି ବ୍ୟଷ୍ଟି ତଥା ସମଷ୍ଟି ଉଭୟ କ୍ଷେତ୍ରରେ ମାନବଜୀବନକୁ ଗ୍ରାସ କରିଛି ଏବଂ ବିଶେଷକରି ସୌନ୍ଦର୍ଯ୍ୟବୋଧ, ଜୀବନର ରସବୋଧ ଓ ଇନ୍ଦ୍ରିୟାନୁଭବ କ୍ଷେତ୍ରରେ ଏହାର ପ୍ରାଦୁର୍ଭାବ ଅନୁଭୂତ ହେଉଛି । ଇନ୍ଦ୍ରିୟସମୂହର ଏକ ନିୟମାନୁଗତ ତଥା ଜ୍ଞାନଦୀପ୍ତ ସଚେତ ଶିକ୍ଷା ଓ କୃଷ୍ଟି ଫଳରେ ଶିଶୁର ସ୍ୱଭାବରେ ମନ୍ଦ ସଂସର୍ଗଜନିତ ଯେଉଁସବୁ ରୁଚିହୀନ ଅଶ୍ଳୀଳତା, ରୂଢ଼ତା ଆଦି ନିମ୍ନ ଧରଣର ବିଷୟସବୁ ଆସିଥାଏ ତାହା କ୍ରମଶଃ ଦୂର ହେବାକୁ ଲାଗେ ଏବଂ ଏପରିକି ତା'ର ଚରିତ୍ର ଉପରେ ମଧ୍ୟ ଏହି ଶିକ୍ଷାର ସୁନ୍ଦର ପ୍ରଭାବ ପଡ଼େ । କାରଣ ଯାହା ଭିତରେ ଏକ ଯଥାର୍ଥ ସତ୍ୟ ସୁମାର୍ଜିତ ରୁଚିର ବିକାଶ ହୋଇଥାଏ, ଏହି ମାର୍ଜିତ ରୁଚିର ପ୍ରସାଦରୁ ସେ ଆଉ ଅଶୋଭନ କ୍ରୂର କଦର୍ଯ୍ୟ କାର୍ଯ୍ୟ କିଛି କରିପାରେ ନାହିଁ । ଏହି ସୁରୁଚି ଯଦି ହୁଏ ଅକପଟ ଏବଂ ସରଳ, ତେବେ ଏହା ଆଣିଦିଏ ମହତ୍ତ୍ୱ ଓ ଔଦାର୍ଯ୍ୟ ଯାହାକି ସ୍ୱତଃସ୍ଫୂର୍ତ୍ତଭାବେ ଶିଶୁର କାର୍ଯ୍ୟ ଓ ବ୍ୟବହାରରେ ପ୍ରକାଶିତ ହୁଏ ଏବଂ ତାହାକୁ ସବୁକିଛି ହୀନ ଓ ବିକୃତ ଗତିବୃତ୍ତିରୁ ଦୂରରେ ରଖେ ।

ଏହାପରେ ସ୍ୱଭାବତଃ ଆସେ ପ୍ରାଣିକ ଶିକ୍ଷାର ଦ୍ୱିତୀୟ ଦିଗଟି, ଅର୍ଥାତ୍ ଚରିତ୍ର ଏବଂ ତାହାର ରୂପାନ୍ତରର କଥା ।

ସାଧାରଣତଃ ପ୍ରାଣର ଶିକ୍ଷା– ତାହାର ଶୁଦ୍ଧି ଏବଂ ତାହା ଉପରେ କର୍ତ୍ତୃତ୍ୱ ସମ୍ବନ୍ଧରେ ଯେଉଁସବୁ ଶିକ୍ଷା ପ୍ରଚଳିତ ଅଛି– ତାହାର ମୂଳ ହେଲା ନିଗ୍ରହ, ଦମନ, କୃଚ୍ଛ୍ରତା ଓ ତପସ୍ୟା । ଏ ପଥ ଅବଶ୍ୟ ଅଧିକ ସହଜ ଏବଂ ଆଶୁଫଳପ୍ରଦ, କିନ୍ତୁ ଗଭୀର ଭାବରେ ଦେଖିଲେ, ନିୟମାନୁଗତ ଏବଂ ପୁଙ୍ଖାନୁପୁଙ୍ଖ ଶିକ୍ଷାଠାରୁ ଏହା କମ୍ ସ୍ଥାୟୀ ଏବଂ କମ୍ ଫଳଦାୟକ । ଏହାଛଡ଼ା ଏହି ପଦ୍ଧତି ଗ୍ରହଣକଲେ ପ୍ରାଣର ସମ୍ମତି, ସାହାଯ୍ୟ ଓ ସହଯୋଗର ସକଳ ସମ୍ଭାବନା ଦୂରକୁ ଚାଲିଯାଏ, ଅଥଚ ବ୍ୟକ୍ତି ଓ ତା'ର କର୍ମର ସର୍ବାଙ୍ଗୀଣ ପରିପୁଷ୍ଟି ସକାଶେ ଏହି ସହଯୋଗ ଏକାନ୍ତ ପ୍ରୟୋଜନ ।

ନିଜ ଭିତରେ ନାନାବିଧ ଗତିଧାରା ସମ୍ବନ୍ଧରେ ସଚେତନ ହେବା

ଏବଂ ନିଜେ କ'ଣ କରୁଛି ଓ କାହିଁକି କରୁଛି, ସେ ସମ୍ପର୍କରେ ସଜ୍ଞାନ ରହିବା– ଏହି ହେଲା ଅପରିହାର୍ଯ୍ୟ ଆରମ୍ଭ । ଶିଶୁକୁ ଅବଶ୍ୟ ଶିଖାଇବାକୁ ହେବ ନିଜକୁ ପର୍ଯ୍ୟବେକ୍ଷଣ କରିବାକୁ, ନିଜର ପ୍ରତିକ୍ରିୟା, ପ୍ରବୃତ୍ତି ଏବଂ ସେସବୁର ଉତ୍ସକୁ ଲକ୍ଷ୍ୟ କରିବାକୁ; ସ୍ୱଚ୍ଛଦର୍ଶୀ ସାକ୍ଷୀ ହୋଇ ତାକୁ ଦେଖିବାକୁ ହେବ ତାହାର କାମନା, ବାସନା, ଆବେଗ ଓ ଉତ୍ତେଜନାର ତରଙ୍ଗାବଳୀକୁ । ନିଜର ସଞ୍ଚୟ, ଅଧିକାର ଓ ପ୍ରଭୁତ୍ୱର ସ୍ପୃହା ତଥା ପ୍ରବୃତ୍ତିସବୁକୁ ଏବଂ ଯେଉଁ ତୁଚ୍ଛ ବଡ଼ିମାର ପୃଷ୍ଠପଟରେ ଏହି ପ୍ରବୃତ୍ତିଗୁଡ଼ିକ ସେମାନଙ୍କର ସହଚର ବିପରୀତ ବୃତ୍ତି ଦୁର୍ବଳତା, ହତୋତ୍ସାହ, ନୈରାଶ୍ୟ ଓ ହତାଶା ଆଦିକୁ ସଙ୍ଗରେ ନେଇ ରହିଛନ୍ତି, ତାହା ଦେଖିବାକୁ ହେବ ।

ସ୍ପଷ୍ଟତଃ ଏହି ପ୍ରକ୍ରିୟା ସେତେବେଳେ କେବଳ କାର୍ଯ୍ୟକାରୀ ହୋଇପାରିବ ଯେତେବେଳେ ପର୍ଯ୍ୟବେକ୍ଷଣ-ଶକ୍ତିର ବୃଦ୍ଧି ସଙ୍ଗେ ସଙ୍ଗେ ଆସିବ କ୍ରମୋନ୍ନତି ଏବଂ ପରିପୂର୍ଣ୍ଣତାଲାଭର ଦୃଢ଼ସଂକଳ୍ପ । ଯେତେବେଳେ ଶିଶୁର ଉପଯୁକ୍ତ ବୟସ ହୋଇଛି ତାକୁ ଏହି ସଂକଳ୍ପ ଶିଖାଇବାକୁ ହେବ । ସାଧାରଣତଃ ଯେଉଁ ବୟସକୁ ଏଥି ନିମନ୍ତେ ଉପଯୁକ୍ତ ବୋଲି ବିଚାର କରାଯାଇଥାଏ ତାହାର ଅନେକ ଆଗରୁ ଅର୍ଥାତ୍ ଖୁବ୍ କମ୍ ବୟସରୁ ଶିଶୁକୁ ଏ ଶିକ୍ଷା ଦେବାକୁ ହେବ ।

ଆତ୍ମ-ଜୟର ଏହି ସଂକଳ୍ପ ଜାଗ୍ରତ କରିବାର ବିଭିନ୍ନ ପଦ୍ଧତି ଅଛି; ବିଭିନ୍ନ ସ୍ଥଳ ଅନୁସାରେ । କାହାରି ସକାଶେ ଯୁକ୍ତିସିଦ୍ଧ ତର୍କ ଫଳପ୍ରଦ, ଅନ୍ୟ ସକାଶେ ହୃଦୟାନୁଭବ ଏବଂ ସଦିଚ୍ଛା; ପୁଣି କାହାରି ସକାଶେ ପ୍ରୟୋଜନ ଆତ୍ମ-ମର୍ଯ୍ୟାଦା ଏବଂ ଆତ୍ମ-ସମ୍ମାନ; ତେବେ ସମସ୍ତଙ୍କ ସକାଶେ ସବୁଠାରୁ କାର୍ଯ୍ୟକାରୀ ଉପାୟ ହେଲା ନିରନ୍ତର ଓ ସତ୍ୟଭାବାତ୍ମକ ଦୃଷ୍ଟାନ୍ତ ।

ଯେବେ ଥରେ ସଂକଳ୍ପ ଦୃଢ଼ଭାବରେ ସ୍ଥାପିତ ହୋଇଛି, ତେବେ ଏକମାତ୍ର କର୍ତ୍ତବ୍ୟ ହେଲା କ୍ରମାଗତ ଲାଗିରହିବା, ପରାଜୟକୁ କେବେ ବି

ଶେଷ ସିଦ୍ଧାନ୍ତ ବୋଲି ମାନି ନ ନେବା । ଯଦି ଚାହଁ ସମସ୍ତ ପ୍ରକାର ଦୁର୍ବଳତା ଏବଂ ପଛକୁ ହଟିବା ପରିହାର କରିବାକୁ ତେବେ ଗୋଟିଏ ମହତ୍ତ୍ୱପୂର୍ଣ୍ଣ ଜିନିଷ ଜାଣିବାକୁ ହେବ, ଯାହାକୁ କେବେବି ଭୁଲିବ ନାହିଁ । ମାଂସପେଶୀର ବୃଦ୍ଧିପରି ଇଚ୍ଛାଶକ୍ତିର ବି ପୁଷ୍ଟି ଓ ବୃଦ୍ଧି ହୁଏ ନିୟମିତ ଓ କ୍ରମୋନ୍ନତ ଅଭ୍ୟାସ ଦ୍ୱାରା । ସାମାନ୍ୟ ଅଥବା ନିତାନ୍ତ ଅକିଞ୍ଚିତ୍କର ସ୍ଥଳରେ ବି ତୁମର ଇଚ୍ଛାଶକ୍ତିର ପାଖରୁ ପୂର୍ଣ୍ଣ ପ୍ରୟାସ ଦାବି କରିବାକୁ ଇତସ୍ତତଃ ହେବ ନାହିଁ; କାରଣ ପ୍ରଚେଷ୍ଟା ଦ୍ୱାରାହିଁ ତାହାର ସାମର୍ଥ୍ୟ ବଢ଼େ; ଧୀରେ ଧୀରେ କଠିନତର କାର୍ଯ୍ୟରେ ନିଜକୁ ନିଯୁକ୍ତ କରିବାକୁ ଶିଖେ । ଯାହା କରିବାକୁ ତୁମେ ସ୍ଥିର କରିଅଛ, ତାହା କରିବାକୁହିଁ ହେବ, ଯାହାବି ହେଉନା କାହିଁକି, ଯଦି ବାରଂବାର ଫେରିଆସି ଆରମ୍ଭ କରିବାକୁ ହୁଏ ତାହାହିଁ ସ୍ୱୀକାର୍ଯ୍ୟ । ପ୍ରଯତ୍ନ ଦ୍ୱାରା ତୁମର ସଂକଳ୍ପ ଦୃଢ଼ ଓ ସମର୍ଥ ହେବ; ଶେଷରେ ତୁମକୁ କେବଳ ସ୍ୱଚ୍ଛ ଦୃଷ୍ଟିରେ ସ୍ଥିର କରିବାକୁ ହେବ କେଉଁ ଲକ୍ଷ୍ୟ ପ୍ରତି ତାହା ତୁମେ ପ୍ରୟୋଗ କରିବ, ଏହା ବ୍ୟତୀତ ଆଉ ଅଧିକ କିଛି କରିବାକୁ ହେବ ନାହିଁ ।

ମୋଟ କଥା ଏହି :— ପ୍ରଥମେ ନିଜର ସ୍ୱଭାବ ସମ୍ବନ୍ଧରେ ପୂର୍ଣ୍ଣ ଜ୍ଞାନ ଦରକାର; ତା'ପରେ ଦରକାର ନିଜର ଗତିବୃତ୍ତି ଉପରେ କର୍ତ୍ତୃତ୍ୱ; ଯାହାଫଳରେକି ଯେଉଁସବୁ ଉପାଦାନର ରୂପାନ୍ତର କରିବାକୁ ହେବ, ସେସବୁ ଉପରେ ପୂର୍ଣ୍ଣ ପ୍ରଭୁତ୍ୱ ଏବଂ ସେସବୁର ରୂପାନ୍ତର ସାଧନ ସମ୍ଭବପର ହୁଏ ।

ସବୁକିଛି ନିର୍ଭର କରେ ଆଦର୍ଶ ଉପରେ; ଏହି ଆତ୍ମ-କର୍ତ୍ତୃତ୍ୱ ଓ ରୂପାନ୍ତରର ପ୍ରୟାସ ଚାହେଁ କେଉଁ ଆଦର୍ଶକୁ । ପ୍ରୟାସ ଆଉ ଫଳାଫଳର ମୂଲ୍ୟ ନିର୍ଣ୍ଣୀତ ହେବ ଆଦର୍ଶର ମୂଲ୍ୟ ଅନୁସାରେ । ଏହାପରେ ଯେତେବେଳେ ମାନସିକ ଶିକ୍ଷା ସମ୍ବନ୍ଧରେ ଆଲୋଚନା କରିବା ସେତେବେଳେ ଏହି ବିଷୟରେ କହିବା ।

(ବୁଲେଟିନ୍, ଅଗଷ୍ଟ ୧୯୫୧)

## (୫)

# ମାନସିକ ଶିକ୍ଷା

ସକଳ ପ୍ରକାର ଶିକ୍ଷା ମଧ୍ୟରେ ମାନସିକ ଶିକ୍ଷାହିଁ ସବୁଠାରୁ ବେଶୀ ପରିଚିତ ଏବଂ ପ୍ରଚଳିତ । କିନ୍ତୁ ଗୋଟିଏ ଦୁଇଟି ବିରଳ ଘଟଣା ଛଡ଼ା ସଚରାଚର ଏହା ମଧ୍ୟରେ ନାନା ତ୍ରୁଟି ରହିଯାଏ; ପରିଣାମରେ ତାହା ହୁଏ ଅସଂପୂର୍ଣ୍ଣ ଏବଂ ଏକେବାରେ ଅପର୍ଯ୍ୟାପ୍ତ ।

ମୋଟାମୋଟି ଭାବରେ ଶିକ୍ଷା କହିଲେ ଲୋକେ ବୁଝନ୍ତି ମନର ଆବଶ୍ୟକ ଶିକ୍ଷା । ଆଉ ଶିଶୁକୁ କେତେକ ବର୍ଷ ପର୍ଯ୍ୟନ୍ତ ଗୋଟାଏ କଠୋର ଶିକ୍ଷା-ପଦ୍ଧତି ଅନୁସାରେ ଶିକ୍ଷା ଦେବା ପରେ– ଯାହାକି ଯଥାର୍ଥ ଶିକ୍ଷା ନୁହେଁ, କେବଳ ତଥ୍ୟ-ଭାବରେ ତା'ର ମସ୍ତିଷ୍କକୁ ନିକମା ପଦାର୍ଥରେ ଭରିଦେବା– ଆମ୍ଭେମାନେ ଭାବୁ ତା'ର ମସ୍ତିଷ୍କର ଉନ୍ନତି ସକାଶେ କର୍ତ୍ତବ୍ୟ ଶେଷ ହେଲା, ବାସ୍ତବରେ ଶିକ୍ଷାର ଅର୍ଥ ଆଦୌ ଏହା ନୁହେଁ । ଏପରିକି ଯଦି ଶିକ୍ଷା ଯଥାର୍ଥ ପରିମାଣରେ ଓ ବିଚାର-ବିବେଚନା ସହିତ ଦିଆଯାଏ ଏବଂ ତାହା ମସ୍ତିଷ୍କର କୌଣସି କ୍ଷତି ନ କରେ, ତେବେ ବି ତାହା ମାନବ-ମନକୁ ସେହିସବୁ କ୍ଷମତା ଦେଇପାରେ ନାହିଁ ଯାହା ତାକୁ ଗୋଟିଏ ଉତ୍ତମ ଏବଂ ଉପଯୋଗୀ ଯନ୍ତ୍ରରୂପେ ତିଆରି କରିପାରେ । ସାଧାରଣତଃ ଯେଉଁ ଶିକ୍ଷା ଦିଆହୁଏ ତାହା ଖୁବ୍ ବେଶି ହେଲେ ମସ୍ତିଷ୍କର ନମନୀୟତାକୁ ବଢ଼ାଇବା ସକାଶେ ଏକ ପ୍ରକାର ବ୍ୟାୟାମ । ଏହି ଭାବରେ ଦେଖିଲେ ମାନବିକ ଶିକ୍ଷାର ଗୋଟିଏ ଗୋଟିଏ ଶାଖା ମନର ଏକ ଏକ ପ୍ରକାର ବ୍ୟାୟାମର ଚିତ୍ର, ଆଉ ପ୍ରତ୍ୟେକ ଭାଗରେ ଯେଉଁ ସୂତ୍ର ବ୍ୟବହାର କରାହୁଏ, ତାହା ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ପରିଭାଷା ମାତ୍ର ।

ମନର ଯାହା ପ୍ରକୃତ ଶିକ୍ଷା ଏବଂ ଯାହା ତାହାକୁ ଉଚ୍ଚତର ଜୀବନ ସକାଶେ ପ୍ରସ୍ତୁତ କରିବ, ତାହାର ଅଛି ପାଞ୍ଚଟି ପ୍ରଧାନ ଧାରା । ସାଧାରଣତଃ ଏସବୁ ଆସନ୍ତି ଗୋଟିକ ପରେ ଅନ୍ୟଟି, ତେବେ ବିଶେଷ ସ୍ଥଳରେ ସେସବୁ ଆଗପଛ ହୋଇ କିଂବା ଏକସଙ୍ଗେ ଆସିପାରନ୍ତି । ସେହି ପାଞ୍ଚଟି ଧାରା ସଂକ୍ଷେପରେ ଏହି :

୧. ଏକାଗ୍ରତାର ଶକ୍ତି; ମନ-ସଂଯୋଗର ସାମର୍ଥ୍ୟବୃଦ୍ଧି ।

୨. ପ୍ରସାର, ବ୍ୟାପ୍ତି, ବୈଚିତ୍ର୍ୟ ଓ ଐଶ୍ୱର୍ଯ୍ୟଦାୟକ ବୃତ୍ତିଚୟର ବିକାଶ ।

୩. ଗୋଟିଏ ମୂଳଭାବ ବା ଉଚ୍ଚତର ଆଦର୍ଶ କିଂବା ଗୋଟିଏ ପରମ ଜ୍ୟୋତିର୍ମୟ ଲକ୍ଷ୍ୟ ଯାହା ଆମ୍ଭମାନଙ୍କର ଜୀବନର ପଥପ୍ରଦର୍ଶକ ହୋଇପାରିବ, ତାକୁ କେନ୍ଦ୍ର କରି ଚିନ୍ତାସମୂହର ସଙ୍ଗଠନ ।

୪. ଚିନ୍ତାନିୟନ୍ତ୍ରଣ, ଅବାଞ୍ଛନୀୟ ଚିନ୍ତାସମୂହର ବର୍ଜନ, ଯାହାଦ୍ୱାରା ଆମେ ଯାହା ଇଚ୍ଛା କରିବୁ ଓ ଯେତେବେଳେ ଇଚ୍ଛା କରିବୁ ତାହାହିଁ କେବଳ ଚିନ୍ତା କରିବୁ ।

୫. ମାନସିକ ନିସ୍ତବ୍ଧତା, ପୂର୍ଣ୍ଣଶାନ୍ତି, ସତ୍ତାର ଊର୍ଦ୍ଧ୍ୱଲୋକସମୂହରୁ ଆଗତ ପ୍ରେରଣାକୁ ଧାରଣ କରିବାର କ୍ରମବର୍ଦ୍ଧମାନ ସାମର୍ଥ୍ୟ ।

ପ୍ରତ୍ୟେକ ବ୍ୟକ୍ତି କ୍ଷେତ୍ରରେ ଶିକ୍ଷାର ଏହି ପଞ୍ଚଧାରା କିପରି ଅନୁସରଣ କରି ଚାଲିବାକୁ ହେବ ଏଠାରେ ତାହାର ବିଶଦ ବିବରଣ ଦେବା ସମ୍ଭବ ନୁହେଁ । ତେବେ କିଛି ସୂଚନା ଦିଆଯାଇପାରେ ।

ଏ କଥା ଅସ୍ୱୀକାର କରିହେବ ନାହିଁ ଯେ ଶିଶୁର ମାନସିକ ଉନ୍ନତିର ସବୁଠାରୁ ପ୍ରଧାନ ବାଧା ହେଲା, ତାହାର ଚିନ୍ତା ନିରନ୍ତର ବିକ୍ଷିପ୍ତ ହେବା । ତାହାର ବିଚାର ପ୍ରଜାପତି ପରି ଏଠି ସେଠି ଉଡ଼ିବୁଲେ, ତାକୁ ଏକାଗ୍ର କରିବାକୁ ହେଲେ ବିପୁଳ ପ୍ରୟାସର ପ୍ରୟୋଜନ । ଅଥଚ ତାହା ମଧ୍ୟରେ ସୁପ୍ତଭାବରେ ରହିଛି ଏହି ଶକ୍ତି । କାରଣ ଯଦି ତାହାର ଆଗ୍ରହ

ଜାଗ୍ରତ କରାଇପାର ତେବେ ସେ ଅଧିକ ଏକାଗ୍ର ହେବାକୁ ସମର୍ଥ ହୁଏ । ତେଣୁ ଏ ଦିଗରେ ଶିକ୍ଷକଙ୍କର ଏପରି ଦକ୍ଷତା ରହିବା ଆବଶ୍ୟକ ଯାହା ଫଳରେ ଶିଶୁ ଏକାଗ୍ର ହେବାରେ ଅଧିକ ସମର୍ଥ ହୁଏ ଓ କୌଣସି କର୍ମ କରୁଥିବା ସମୟରେ ତହିଁରେ ଅଧିକରୁ ଅଧିକ ମନୋନିବେଶ କରିବାର ଓ ପୂରାପୂରି ମଗ୍ନ ହୋଇଯିବାର କ୍ଷମତା ତାହା ଭିତରେ ବୃଦ୍ଧିପାଏ । ଏହି ମନୋଯୋଗ ବଢ଼ାଇବାର କ୍ଷମତାକୁ ବିକଶିତ କରୁଥିବା ସମସ୍ତ ପଦ୍ଧତିହିଁ ଉପାଦେୟ । ଆବଶ୍ୟକତା ଆଉ ପରିସ୍ଥିତି ଅନୁସାରେ ଖେଳଠାରୁ ଆରମ୍ଭ କରି ପୁରସ୍କାର ପର୍ଯ୍ୟନ୍ତ ସବୁକିଛିର ଆଶ୍ରୟ ନିଆଯାଇପାରେ । କିନ୍ତୁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଉଛି ମନସ୍ତାତ୍ତ୍ୱିକ ପଦ୍ଧତି, ସର୍ବୋତ୍ତମ ଉପାୟ ହେଉଛି ଯେଉଁ ଜିନିଷଟି ଶିକ୍ଷା ଦେବାକୁ ହେବ ସେଥିରେ ଶିଶୁର ରୁଚି ଜାଗ୍ରତ କରାଇବା, ଯେଉଁଥିରେ ଆସେ କାର୍ଯ୍ୟ ପ୍ରତି ଆକର୍ଷଣ ଓ ଉନ୍ନତି ସକାଶେ ଦୃଢ଼ ସଂକଳ୍ପ । ଶିକ୍ଷା ପ୍ରତି ଅନୁରାଗ ଯଦି ଶିଶୁକୁ ଦେଇପାର, ତେବେ ତାହାହିଁ ହେଲା ଶ୍ରେଷ୍ଠ ଦାନ । ସେ ଯେପରି ସର୍ବଦା ଆଉ ସର୍ବତ୍ର ଶିକ୍ଷାପ୍ରାପ୍ତ ହେବାକୁ ଅନୁରାଗ ରଖେ । ଜୀବନର ସକଳ ଅବସ୍ଥା, ସକଳ ଘଟଣା ଯେପରି ନିରନ୍ତର ହୁଏ ଅଧିକରୁ ଅଧିକତର ଶିକ୍ଷାଲାଭ କରିବାର ସୁଯୋଗ ।

ସେଥି ପାଇଁ ମନୋଯୋଗ ଏବଂ ଏକାଗ୍ରତା ସଙ୍ଗେ ଆବଶ୍ୟକ ସମ୍ୟକ ପର୍ଯ୍ୟବେକ୍ଷଣ, ଯଥାର୍ଥ ଅନୁଶୀଳନ ଓ ଅଭ୍ରାନ୍ତ ସ୍ମରଣଶକ୍ତି । ପର୍ଯ୍ୟବେକ୍ଷଣର କ୍ଷମତା ବିକାଶ କରାଯାଇପାରେ ନାନାପ୍ରକାର ସ୍ୱତଃସ୍ଫୂର୍ତ୍ତ ଅଭ୍ୟାସ ଦ୍ୱାରା; ଯାହାକିଛି ଶିଶୁର ଚିନ୍ତାକୁ ସଜାଗ, ସତର୍କ, ପ୍ରଖର କରେ ସେସମସ୍ତର ସାହାଯ୍ୟ ନିଆଯାଇପାରେ । ସ୍ମରଣଶକ୍ତି ଅପେକ୍ଷା ବୋଧଶକ୍ତିର ଉନ୍ନତି ଉପରେ ଅଧିକ ଜୋର ଦେବାକୁ ହେବ । ମନୁଷ୍ୟ ଯାହା କେବଳ ବୁଝିପାରେ ତାହାକୁହିଁ ସେ ଠିକ୍‌ରୂପେ ଜାଣିପାରେ; ଶୁଆ ପରି ମୁଖସ୍ଥ କରିଥିବା ବସ୍ତୁ କ୍ରମେ କ୍ରମେ ଝାପ୍‌ସା ହୋଇ ଶେଷରେ ଉଭେଇ ଯାଏ । କିନ୍ତୁ ଯାହା ତୁମେ ଥରେ ବୁଝିପାରିଛ ତାହା କେବେବି

ଭୁଲିଯାଅ ନାହିଁ । ତା'ଛଡ଼ା କୌଣସି ଜିନିଷ ସମ୍ବନ୍ଧରେ ଶିଶୁର 'କିପରି' 'କାହିଁକି' ପ୍ରଶ୍ନର ଉତ୍ତର ଦେବାକୁ କେବେ ବି ଅସ୍ୱୀକାର କରିବ ନାହିଁ । ତୁମେ ନିଜେ ଯଦି ପ୍ରଶ୍ନର ଉତ୍ତର ଦେଇ ନ ପାର, ତେବେ ଯେ ପାରନ୍ତି ବା ଯେଉଁ ବହିରେ ସେବିଷୟରେ ଉଲ୍ଲେଖ ଅଛି ତାହା ବତେଇ ଦିଅ । ଏହିରୂପେ ତୁମେ ଧୀରେ ଧୀରେ ଶିଶୁର ମନରେ ଯଥାର୍ଥ ଅଧ୍ୟୟନର ସ୍ପୃହା ଓ ଜ୍ଞାନାର୍ଜନର ଅକ୍ଳାନ୍ତ ପ୍ରୟାସ ଜାଗ୍ରତ କରାଇ ପାରିବ ।

ଏହିପରି ଭାବରେ ସ୍ୱଭାବତଃ ବିକାଶର ଦ୍ୱିତୀୟ ସ୍ତର ଆସିଯାଉଛି ଯେଉଁଥିରେ ମନ ଆପେ ଆପେ ହେବ ପ୍ରସାରିତ ଓ ସମୃଦ୍ଧ ।

ଶିଶୁର ବିକାଶ ସଙ୍ଗେ ସଙ୍ଗେ ତାକୁ ଦେଖାଇଦେବା ଉଚିତ କିପରି ଯଥାର୍ଥ ଭାବରେ ଜିନିଷଟିକୁ ଗ୍ରହଣ କଲେ ତାହା ଅଧ୍ୟୟନ ନିମନ୍ତେ ଚିତ୍ତାକର୍ଷକ ହୋଇଉଠେ । ଜୀବନର ପ୍ରତ୍ୟେକଟି ଦିନ, ପ୍ରତ୍ୟେକଟି କ୍ଷଣ ହେଲା ଶ୍ରେଷ୍ଠ ଶିକ୍ଷାସ୍ଥଳ,— ଏହା ବିବିଧ ଜଟିଳ, ସମୃଦ୍ଧିଶାଳୀ ଅଭୂତପୂର୍ବ ଅଭିଜ୍ଞତା, ସମାଧାନ ନିମିତ୍ତ ଅପେକ୍ଷମାଣ ସମସ୍ୟା, ସୁସ୍ପଷ୍ଟ ବଳିଷ୍ଠ ଉଦାହରଣ ଏବଂ ଯଥାଯଥ କ୍ରମାବଦ୍ଧ ଘଟଣାରେ ପରିପୂର୍ଣ୍ଣ । ଶିଶୁମାନଙ୍କ ସୁପ୍ତ କୌତୂହଳ ଜାଗ୍ରତ କରିବା ସହଜ ହୁଏ ଯଦି ସେମାନଙ୍କର ଅସଂଖ୍ୟ ପ୍ରଶ୍ନାବଳିର ସରଳ, ପରିଷ୍କାର ଓ ସୁବୋଧ୍ୟ ଉତ୍ତର ଦେଇପାର । ଗୋଟିଏ କୌତୂହଳପୂର୍ଣ୍ଣ ଉତ୍ତର ସଙ୍ଗରେ ଆଣେ ଆହୁରି ଅନେକ ସଦୁତ୍ତର; ଏହି ଭାବରେ ଶିଶୁର ମନୋଯୋଗ ଆକୃଷ୍ଟ ହୁଏ ଏବଂ ଏହା ଫଳରେ ସେ ବିଦ୍ୟାଳୟଠାରୁ ବହୁତ ବେଶୀ ଶିଖେ । ପାଠ୍ୟକ୍ରମ ସମ୍ପର୍କରେ ଏକ ସଯତ୍ନ ଓ ବୁଦ୍ଧିମାନ୍ ନିର୍ବାଚନ ଶିଶୁ ଭିତରେ ସୁସ୍ଥ ଅଧ୍ୟୟନରୁଚି ଜାଗ୍ରତ କରେ ଏବଂ ତାହା ହୁଏ ଏକାଧାରରେ ଶିକ୍ଷାପ୍ରଦ ତଥା ଆକର୍ଷଣୀୟ । କେବେ ବି ସେହିସବୁ ଜିନିଷକୁ ଡରିବ ନାହିଁ, ଯାହା ଶିଶୁର କଳ୍ପନାକୁ ଜାଗ୍ରତ କରାଏ ଓ ତୃପ୍ତି ଦିଏ; କଳ୍ପନାହିଁ ସୃଜନକ୍ଷମ ମାନସିକ ବୃତ୍ତି ଏବଂ ତାହାରି ଦ୍ୱାରାହିଁ ଅଧ୍ୟୟନ ପ୍ରାଣବନ୍ତ ହୁଏ ଏବଂ ମନ ଆନନ୍ଦରେ ବିକଶିତ ହୁଏ ।

ମନର ନମନୀୟତା ଏବଂ ବିଶାଳତା ବଢ଼ାଇବାକୁ ଯାଇ କେବଳ ବିଷୟ-ବସ୍ତୁର ସଂଖ୍ୟା ଏବଂ ବୈଚିତ୍ର୍ୟ ଦେଖିଲେ ଚଳିବ ନାହିଁ; ଲକ୍ଷ୍ୟ ଦେବାକୁ ହେବ ସେହି ଏକହିଁ ବିଷୟ କେତେ ଦିଗରୁ ଓ କେତେ ପ୍ରକାରରେ ଦେଖାଯାଇପାରେ । ଏହିପରି ଶିଶୁ ବୁଝିବାକୁ ଶିଖିବ ଯେ ଏକହିଁ ମାନସିକ ପ୍ରଶ୍ନର ନାନା ପ୍ରକାରରେ ସମ୍ମୁଖୀନ ହେବାକୁ ପଡ଼େ, ଆଲୋଚନା କରାଯାଏ, ସମାଧାନ କରଯାଏ । ଏହା ଫଳରେ ସକଳ ପ୍ରକାର କଠୋରତାରୁ ମନ ମୁକ୍ତ ହୋଇଯିବ, ଚିନ୍ତା ହେବ ଆହୁରି ବହୁମୁଖୀ ଏବଂ ବିଚିତ୍ର, ଗୋଟିଏ ସମୃଦ୍ଧତର ବ୍ୟାପକତର ସମନ୍ୱୟ ସକାଶେ ସେ ପ୍ରସ୍ତୁତ ହୋଇପାରିବ । ଆହୁରି ମଧ ଏହି ଉପାୟରେ ଶିଶୁ ବୁଝିପାରିବ ଯେ ମାନସିକ ଜ୍ଞାନର ମୂଲ୍ୟ ଏକେବାରେ ଆପେକ୍ଷିକ, କ୍ରମେ କ୍ରମେ ତା ମଧରେ ଜ୍ଞାନର ସତ୍ୟତର ଉତ୍ସର ଆବିଷ୍କାର ସକାଶେ ଅଭୀପ୍ସା ଜାଗ୍ରତ ହେବ ।

ବସ୍ତୁତଃ ଶିଶୁର ବିଦ୍ୟାଭ୍ୟାସରେ ଅଗ୍ରଗତି ଓ ବୟସବୃଦ୍ଧି ସଙ୍ଗେ ସଙ୍ଗେ ମନ ଅଧିକ ପରିପକ୍ୱ ହୁଏ ଓ ବ୍ୟାପକତର ତତ୍ତ୍ୱଗୁଡ଼ିକୁ ଅଧିକରୁ ଅଧିକ ହୃଦୟଙ୍ଗମ କରିବାକୁ ସମର୍ଥ ହୁଏ । ତହିଁ ସଙ୍ଗେ ସଙ୍ଗେ ଦେଖାଦିଏ ନିଶ୍ଚୟାତ୍ମକ ବୁଦ୍ଧିର ପ୍ରୟୋଜନୀୟତା, ଦରକାର ହୁଏ ଜ୍ଞାନର ଏକ ଅଟଳ ଭିତ୍ତି ଯାହା ଉପରେ ମନର ଏପରି ସଂଗଠନ ନିର୍ମିତ ହୋଇପାରେ ଯେ କି ମସ୍ତିଷ୍କ ମଧରେ ସଞ୍ଚିତ ବିଚିତ୍ର, ବିକ୍ଷିପ୍ତ, ଏପରିକି ବିରୋଧୀ ଭାବନାସବୁକୁ ମଧ ଶୃଙ୍ଖଳିତ ଓ ସୁସଜ୍ଜିତ କରିପାରେ । ଚିନ୍ତାରାଜ୍ୟରେ ବିଶୃଙ୍ଖଳା ଦୂର କରିବାକୁ ଏହି ସୁନିୟନ୍ତ୍ରଣର ବିଶେଷ ପ୍ରୟୋଜନ ରହିଛି । ପରସ୍ପର ବିରୋଧୀ ଚିନ୍ତାସବୁ ରୂପାନ୍ତରିତ ହୋଇ ଏକ ଅନ୍ୟର ପରିପୂରକ ହୋଇପାରେ, ତେବେ ସେଥିନିମନ୍ତେ ଏପରି ଏକ ଉର୍ଦ୍ଧ୍ୱତର ଭାବ ଆବିଷ୍କାର କରିବାକୁ ହେବ, ଯେଉଁଥିରେ ସେସବୁକୁ ସମନ୍ୱୟମୂଳକ ଭାବେ ମିଳାଇ ରଖିବା ସମ୍ଭବ ହେବ । ପକ୍ଷପାତିତ୍ୱ ଏବଂ ଏକଦେଶଦର୍ଶିତାର କବଳରୁ ମୁକ୍ତ ହେବାକୁ ହେଲେ ଯେତେଦୂର ସମ୍ଭବ ସବୁ ସମସ୍ୟାକୁ ସବୁ ଦିଗରୁ

ଦେଖିବାକୁ ଶିଖିବା ଭଲ; ସେହି ଚିନ୍ତାସବୁକୁ ସକ୍ରିୟ ଏବଂ ସୃଜନକ୍ଷମ କରିବାକୁ ହେଲେ, ପ୍ରତ୍ୟେକ କ୍ଷେତ୍ରରେ ସେ ଯେତେ ଦିଗରୁ ଦେଖୁନା କାହିଁକି ସବୁଗୁଡ଼ିକର ସମନ୍ୱୟ ସାଧନ କରିବାକୁ ହେବ ଏକ ସ୍ୱାଭାବିକ ଆଉ ଯୁକ୍ତିସଙ୍ଗତ ଭାବେରେ । ଯଦି ତୁମର ସମଗ୍ର ଚିନ୍ତାକୁ ଏକ ସୃଜନଶୀଳ ଓ ଗତିଶୀଳ ଶକ୍ତିରେ ପରିଣତ କରିବାକୁ ଚାହଁ ତେବେ ତୁମକୁ ଖୁବ୍ ଯତ୍ନର ସହିତ ବାଛିନେବାକୁ ହେବ ତୁମର ମାନସିକ ସମନ୍ୱୟର କେନ୍ଦ୍ରୀୟ ବିଚାରକୁ; କାରଣ ତାହାରି ଉପରେହିଁ ନିର୍ଭର କରୁଛି ତୁମର ସମନ୍ୱୟ ସାଧନର ମୂଲ୍ୟ । କେନ୍ଦ୍ରଗତ ଭାବ ହେବ ଯେତେ ଉଚ୍ଚତର ଏବଂ ବ୍ୟାପକତର, ଆଉ ଦେଶ-କାଳକୁ ଅତିକ୍ରମ କରି ହେବ ଯେତେ ଅଧିକ ବିଶ୍ୱଜନୀନ ତେତେହିଁ ବହୁସଂଖ୍ୟକ ଜଟିଳ ଭାବନା, ଧାରଣା ଆଉ ବିଚାରସକଳକୁ ସୁବ୍ୟବସ୍ଥିତ ଏବଂ ସୁସମଞ୍ଜସ କରିବାକୁ ତାହା ସମର୍ଥ ହେବ ।

କହିବା ବାହୁଲ୍ୟ ଯେ ଏହି ଗଠନର କାର୍ଯ୍ୟ ଏକ ନିମିଷରେ କରାଯାଏ ନାହିଁ । ନିଜର ସାମର୍ଥ୍ୟ ଓ ତାରୁଣ୍ୟ ରକ୍ଷା କରିବାକୁ ହେଲେ ମନକୁ ନିରନ୍ତର ଉନ୍ନତ କରିବାକୁ ହେବ, ନୂତନ ସବୁ ଜ୍ଞାନର ଆଲୋକରେ ପୁରାତନ ଧାରଣାକୁ କଷି ନେବାକୁ ହେବ । ପୁରାତନ ଧାରଣାର ସୀମାକୁ ବିସ୍ତୃତ କରିଦେଇ ଗ୍ରହଣ କରିବାକୁ ହେବ ନୂତନ ଚିନ୍ତା, ଅର୍ଥାତ୍ ଚିନ୍ତାକୁ ପୁଣି ସଜାଡ଼ିବାକୁ ହେବ, ପୁନର୍ଗଠିତ କରିବାକୁ ହେବ ଯେପରିକି ପ୍ରତ୍ୟେକେ ପରସ୍ପର ସଙ୍ଗେ ମିଳିମିଶି ସେମାନଙ୍କର ଯଥାର୍ଥ ସ୍ଥାନ ପାଆନ୍ତି, ଏବଂ ସମଗ୍ର ଜିନିଷଟି ହୋଇଉଠେ ସୁସମ୍ବନ୍ଧ ଓ ସୁଶୃଙ୍ଖଳ ।

ଯାହାସବୁ କୁହାଗଲା ତାହା ବିଚାରଶୀଳ ମନ ସମ୍ବନ୍ଧରେ,— ଯେଉଁ ମନର ଧର୍ମ ହେଲା ଜ୍ଞାନାର୍ଜନ; କିନ୍ତୁ ଜ୍ଞାନାର୍ଜନ ମାନସିକ କ୍ରିୟାର ଗୋଟିଏ ଦିଗମାତ୍ର; ଅନ୍ତତଃ ସମାନ ପ୍ରୟୋଜନୀୟ ଅନ୍ୟ ଦିଗଟି ହେଲା ନିର୍ମାଣର ବୃତ୍ତି, ଯାହାର କି ରୂପ ଦେବାର ଏବଂ ପରିଣାମରେ କର୍ମ ପାଇଁ ପ୍ରସ୍ତୁତ

କରାଇବାର କ୍ଷମତା ରହିଛି । ମାନସିକ କ୍ରିୟାର ଏହି ଦିଗଟି ବିଶେଷ ମହତ୍ତ୍ୱପୂର୍ଣ୍ଣ ହେଲେ ସୁଦ୍ଧା କ୍ୱଚିତ୍ ଏହାର ସଯତ୍ନ ଅଧ୍ୟୟନ ଏବଂ ଅନୁଶୀଳନ କରାହୋଇଛି । ଯେଉଁମାନେ କୌଣସି ବିଶେଷ ଉଦ୍ଦେଶ୍ୟରେ ମନର ବୃତ୍ତି ଉପରେ କଠୋର ନିୟନ୍ତ୍ରଣ ଆଣିବାକୁ ଚାହାନ୍ତି ସେହିମାନେହିଁ କେବଳ ଏହି ରଚନାତ୍ମକ ବୃତ୍ତିକୁ ପର୍ଯ୍ୟବେକ୍ଷଣ ଓ ସୁନିୟନ୍ତ୍ରଣ କରିବାର କଥା ଭାବନ୍ତି । କିନ୍ତୁ ଏହି ଚେଷ୍ଟା କରିବା ମାତ୍ରେ ସେମାନେ ସମ୍ମୁଖରେ ଦେଖନ୍ତି ପ୍ରାୟ ଅଲଂଘ୍ୟ ବିପୁଳ ବାଧାସବୁ ।

ତଥାପି ମନର ଏହି ଗଠନାତ୍ମକ କ୍ରିୟା ଉପରେ ସଂଯମ ସ୍ଥାପନ କରିବା ଆତ୍ମ-ଶିକ୍ଷାର ଗୋଟିଏ ଅତି ମହତ୍ତ୍ୱପୂର୍ଣ୍ଣ ଦିଗ । କୁହାଯାଇପାରେ ଯେ ଏହା ବ୍ୟତୀତ ମନ ଉପରେ ପ୍ରଭୁତ୍ୱ ପ୍ରାପ୍ତହେବା ସମ୍ଭବ ନୁହେଁ । ଶିକ୍ଷା ଦିଗରୁ ଦେଖିଲେ ସବୁ ପ୍ରକାର ବିଚାର ଗ୍ରହଣଯୋଗ୍ୟ ଏବଂ ସମନ୍ୱୟର ଅନ୍ତର୍ଭୁକ୍ତ ହେବା ଉଚିତ, କାରଣ ସମନ୍ୱୟର ଉଦ୍ଦେଶ୍ୟ ହେଉଛି ଏହା ଯେପରି ଅଧିକରୁ ଅଧିକ ସମୃଦ୍ଧତର ଓ ଜଟିଳତର ହୁଏ; କିନ୍ତୁ କର୍ମକ୍ଷେତ୍ରରେ ଦରକାର ଏହାର ଠିକ୍ ବିପରୀତ । ଯେଉଁ ବିଚାରକୁ ସ୍ୱୀକାର କରି କାର୍ଯ୍ୟରେ ରୂପ ଦେବାକୁ ହେବ, ତାହା ସଂପର୍କରେ କଠୋର ସଂଯମ ସ୍ଥାପନ କରିବାକୁ ହେବ । ମାନସ-ସମନ୍ୱୟର ଆଧାରଭୂତ କେନ୍ଦ୍ରୀୟ ବିଚାର ସଙ୍ଗେ ଯେଉଁ ଭାବସବୁ ମେଳ ରଖି ଚାଲିବେ, କେବଳ ସେହିସବୁ ଭାବକୁ କାର୍ଯ୍ୟରେ ଅଭିବ୍ୟକ୍ତ ହେବାକୁ ଦେବା ଉଚିତ । ଏହାର ଅର୍ଥ ହେଉଛି ଯେଉଁ ବିଚାର ମାନସ ଚେତନାରେ ପ୍ରବେଶ କରିବ ତାହାକୁ କେନ୍ଦ୍ରୀୟ ବିଚାର ସମ୍ମୁଖରେ ଆଣି ରଖିବାକୁ ହେବ । ଇତି ମଧ୍ୟରେ ଯେଉଁସବୁ ଚିନ୍ତାକୁ ଗ୍ରହଣ ଓ ଏକତ୍ରିତ କରାଯାଇଛି, ଏହି ଚିନ୍ତା ଯଦି ସେଥିରେ ଯଥାର୍ଥ ସ୍ଥାନ ପାଏ ତେବେ ମାନସ- ସମନ୍ୱୟ ଭିତରକୁ ତାକୁ ଗ୍ରହଣ କରାଯିବ; ତା ନ ହେଲେ ତାହାକୁ ବାହାରେ ଫୋପାଡ଼ି ଦେବାକୁ ହେବ, ଯେପରିକି କର୍ମ ଉପରେ ତାହାର କୌଣସି ପ୍ରଭାବ ଆସି ନ

ପଡ଼େ । କର୍ମ ଉପରେ ପୂର୍ଣ୍ଣ କର୍ତ୍ତୃତ୍ୱ ଆଣିବାକୁ ହେଲେ ମନଃଶୁଦ୍ଧିର ଏହି ପ୍ରକ୍ରିୟା ଖୁବ୍ ନିମୟିତରୂପେ ଅଭ୍ୟାସ କରିବାକୁ ହେବ ।

ଏହି ଉଦ୍ଦେଶ୍ୟରେ ପ୍ରତ୍ୟହ କିଛି ସମୟ ରଖିବା ଭଲ ଯେତେବେଳେକି ନୀରବରେ ସବୁଚିନ୍ତାକୁ ଦେଖାଯାଏ ଏବଂ ନିଜର ବିଚାର-ସମନ୍ୱୟକୁ ଶୃଙ୍ଖଳିତ ଓ ସୁସମ୍ବନ୍ଧ କରାଯାଏ । ଅଭ୍ୟାସ ଥରେ ଆୟତ୍ତ ହୋଇଗଲେ, କାର୍ଯ୍ୟ ମଧ୍ୟରେ ବି ତୁମ ଚିନ୍ତାବଳି ଉପରେ ତୁମେ ଆୟତ୍ତ ଓ ସଂଯମ ରଖିପାରିବ ଏବଂ ତୁମର କାର୍ଯ୍ୟ ପକ୍ଷରେ ଯେଉଁସବୁ ଚିନ୍ତା ପ୍ରୟୋଜନୀୟ ନୁହେଁ ସେସବୁ ଚିନ୍ତା ଉଠିଆସି ପାରିବ ନାହିଁ । ବିଶେଷତଃ ଏକାଗ୍ରତା ଏବଂ ମନୋଯୋଗର ସାମର୍ଥ୍ୟ ଯଦି ନିରନ୍ତର ଅଭ୍ୟାସ କରାଯାଏ ତେବେ ବାହାର ଚେତନାରେ କେବଳ ପ୍ରୟୋଜନୀୟ ଚିନ୍ତାବଳି ସ୍ଥାନ ପାଇବେ ଏବଂ ଫଳରେ ସେସବୁ ହୋଇଉଠିବ ଅଧିକତର ସକ୍ରିୟ ଓ ଅଧିକତର ଫଳପ୍ରଦ । ଆହୁରି ଯଦି ଏକାଗ୍ରତାକୁ ଏପରି ତୀବ୍ର କରାଯାଏ, ଯେତେବେଳେ କୌଣସି ପ୍ରକାର ଚିନ୍ତା ନ କରି ଚିନ୍ତାଶୂନ୍ୟ ହେବା ଆବଶ୍ୟକ ହୁଏ, ତେବେ ମନର ସକଳ ସ୍ପନ୍ଦନକୁ ବନ୍ଦ କରିଦେଇ ଏକ ଅଖଣ୍ଡ ନୀରବତାରେ ପହଞ୍ଚି ହେବ । ଏହି ନୀରବତାରେ ଜଣେ ନିଜକୁ ଧୀରେ ଧୀରେ ଉର୍ଦ୍ଧ୍ୱତର ମାନସଲୋକସମୂହ ଆଡ଼କୁ ଖୋଲିପାରେ ଏବଂ ଯେଉଁସବୁ ପ୍ରେରଣା ସେଠାରୁ ଆସେ ସେସବୁକୁ ଲିପିବଦ୍ଧ କରିବାକୁ ଶିଖିପାରେ ।

କିନ୍ତୁ ଏହି ଅବସ୍ଥା ପ୍ରାପ୍ତହେବା ଆଗରୁ ବି ନିଶ୍ଚଳନୀରବତାର ନିଜସ୍ୱ ଉପଯୋଗିତା ରହିଛି । ଯେଉଁମାନଙ୍କର ମନ କିଛି ବିକଶିତ ଏବଂ ସକ୍ରିୟ ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ ମନକୁ ବିଶ୍ରାମ ଦେବାକୁ ଜାଣନ୍ତି ନାହିଁ । ଦିନବେଳେ ଏହି ମନର କ୍ରିୟା ଉପରେ କିଛି ସଂଯମ ଥାଏ; କିନ୍ତୁ ରାତ୍ରିରେ ଶରୀର ନିଦ୍ରିତ ହୋଇ ପଡ଼ିଲେ ଜାଗ୍ରତ ଅବସ୍ଥାର ସଂଯମ ଲେଶମାତ୍ର ରହେ ନାହିଁ । ମନ ଅତ୍ୟନ୍ତ କ୍ରିୟାଶୀଳ ହୋଇପଡ଼େ ଆଉ ସମସ୍ତ କ୍ରିୟା ପ୍ରାୟ ଅସମ୍ବନ୍ଧ ହୁଏ । ଏହି କାରଣରୁ ମନରେ ନାନା

ଉତ୍ତେଜନା ସୃଷ୍ଟି ହୁଏ ଓ ଶେଷରେ ଆସେ କ୍ଳାନ୍ତି ଏବଂ ମାନସିକ ଶକ୍ତିର ହ୍ରାସ ।

ଯଥାର୍ଥ ବିଷୟ ହେଲା ମାନବ ଆଧାରର ଆଉସବୁ ଅଂଶ ପରି ମନର ବି ବିଶ୍ରାମ ଆବଶ୍ୟକ, ଆଉ ଏ ବିଶ୍ରାମ ସେ ପାଏ ନାହିଁ ଯେ ପର୍ଯ୍ୟନ୍ତ ଆମ୍ଭେମାନେ ନ ଜାଣୁ କିପରି ତାହା ଦିଆଯାଏ । ମନକୁ ବିଶ୍ରାମ ଦେବାର କଳା ଶିଖିବାକୁ ହେବ । ଗୋଟିଏ ଉପାୟ ହେଲା ମନର କାର୍ଯ୍ୟର ପରିବର୍ତ୍ତନ; କିନ୍ତୁ ସବୁଠାରୁ ଭଲ ବିଶ୍ରାମ ହେଲା ନୀରବତା । ମନର ବୃତ୍ତିସମୂହ କ୍ଷେତ୍ରରେ ବହୁ ଘଣ୍ଟାବ୍ୟାପୀ ନିଦ୍ରାଠାରୁ କେତେକ ମିନିଟ ନିସ୍ତବ୍ଧ ନୀରବତା ଦ୍ୱାରା ଅଧିକ ବିଶ୍ରାମ ମିଳେ ।

ଯେବେ ସଂକଳ୍ପ ଅନୁସାରେ ମନକୁ ନୀରବ କରିପାର, ଗ୍ରହଣଶୀଳ ନୀରବତା ମଧ୍ୟରେ ତାକୁ ଏକାଗ୍ର କର, ତେବେ ଏପରି କୌଣସି ସମସ୍ୟା ରହିବ ନାହିଁ ଯାହାର କି ସମାଧାନ ହୋଇ ନ ପାରେ, ଏପରି କୌଣସି ମାନସିକ ବାଧାବିଘ୍ନ ରହିବ ନାହିଁ ଯାହାକୁ ଦୂର କରାଯାଇ ନ ପାରେ । ଉତ୍ତେଜନା ମଧ୍ୟରେ ଚିନ୍ତା ବିଶୃଙ୍ଖଳ ଓ ଅକ୍ଷମ ହୋଇଯାଏ । ସଜାଗ ନିସ୍ତବ୍ଧତା ମଧ୍ୟରେ ଜ୍ୟୋତି ନିଜକୁ ପ୍ରକାଶ କରେ ଏବଂ ମନୁଷ୍ୟର ନୂତନ ନୂତନ ସାମର୍ଥ୍ୟର ସମ୍ଭାବନା ଖୋଲିଦିଏ ।

(ବୁଲେଟିନ୍, ନଭେମ୍ବର ୧୯୫୧)

(୬)

## ଚୈତ୍ୟ ଓ ଆଧ୍ୟାତ୍ମିକ ଶିକ୍ଷା

ଏପର୍ଯ୍ୟନ୍ତ ଆମ୍ଭେମାନେ ଯେଉଁ ଶିକ୍ଷାର ବିଷୟ ବର୍ଣ୍ଣନା କରିଛୁ, ତାହା ଏହି ପୃଥିବୀରେ ଜନ୍ମଗ୍ରହଣ କରିଥିବା ଯେକୌଣସି ଶିଶୁ ପକ୍ଷରେ ପ୍ରଯୁଜ୍ୟ, ଆଉ ମଧ୍ୟ ଏହା ପୂର୍ଣ୍ଣରୂପେ ମାନବିକ ବୃତ୍ତି-ସମ୍ବନ୍ଧୀୟ । କିନ୍ତୁ ଏତିକିରେ ଶିକ୍ଷାର ସମାପ୍ତି ଘଟେ ନାହିଁ । ପ୍ରତ୍ୟେକ ମନୁଷ୍ୟ ତା' ନିଜ ମଧ୍ୟରେ ତା'ର ସାଧାରଣ ଚେତନାର ଉର୍ଦ୍ଧ୍ୱରେ ଏକ ବୃହତ୍ତର ଚେତନାର ସମ୍ଭାବନାକୁ ଧାରଣ କରି ଚାଲୁଛି ଏବଂ ଏହି ଚେତନାର ମାଧ୍ୟମରେ ସେ ଏକ ବିଶାଳତର ମହତ୍ତର ଜୀବନରେ ପହଞ୍ଚିପାରେ । ବସ୍ତୁତଃ, ପ୍ରତ୍ୟେକ ଅସାଧାରଣ ବ୍ୟକ୍ତିଙ୍କ ମଧ୍ୟରେ ଏହି ଚେତନା ସବୁ ସମୟରେ ତାଙ୍କ ଜୀବନର ସକଳ ପାରିପାର୍ଶ୍ୱିକ ଘଟଣା ଏବଂ ବ୍ୟକ୍ତିଗତ ପ୍ରକ୍ରିୟାଗୁଡ଼ିକୁ ନିୟମନ କରେ ଏବଂ ସଙ୍ଗଠିତ କରେ । ମନୁଷ୍ୟର ମାନସ ଚେତନା ଯାହା ଜାଣେ ନାହିଁ ଏବଂ କରିପାରେ ନାହିଁ, ଏହି ଚେତନା ତାହା ଜାଣେ ଏବଂ କରେ । ଏହା ଏକ ଆଲୋକ ତୁଲ୍ୟ ଯାହା ସତ୍ତାର କେନ୍ଦ୍ରସ୍ଥଳରେ ଜଳୁଛି ଏବଂ ବାହ୍ୟ ଚେତନାର ଘନ ଆବରଣକୁ ଭେଦ କରି ପ୍ରକାଶିତ ହୁଏ । ଏହାର ଅସ୍ତିତ୍ୱ ସମ୍ବନ୍ଧରେ କାହାରି କାହାରି ଗୋଟାଏ ଅସ୍ପଷ୍ଟ ଧାରଣା ଅଛି । ବହୁ ଶିଶୁ ଏହାର ପ୍ରଭାବରେ ପରିଚାଳିତ ହୁଅନ୍ତି ଏବଂ ଅନେକ ସମୟରେ ସେମାନଙ୍କର ସ୍ୱତଃସ୍ଫୂର୍ତ୍ତ ପ୍ରତିକ୍ରିୟାରେ ଏବଂ ଏପରିକି ସେମାନଙ୍କ କଥାବାର୍ତ୍ତାରେ ଏହା ଅତି ସ୍ପଷ୍ଟରୂପେ ପ୍ରକାଶିତ ହେବାର ଦେଖାଯାଏ । ଦୁଃଖର ବିଷୟ ଅଧିକାଂଶ ପିତାମାତା ଏହି ବିଷୟରେ ସଂପୂର୍ଣ୍ଣ ଅଜ୍ଞ ଏବଂ ସେମାନଙ୍କ ସନ୍ତାନ ମଧ୍ୟରେ କ'ଣ ଘଟୁଛି କିଛି ବି ବୁଝି ପାରନ୍ତି ନାହିଁ ।

ସେଥି ପାଇଁ ସେମାନେ ଏହିସବୁ ଘଟଣା ଦେଖି ବିଶେଷ ଖୁସି ହୁଅନ୍ତି ନାହିଁ ଆଉ ସେମାନେ ଯେଉଁ ଶିକ୍ଷା ଶିଶୁକୁ ଦିଅନ୍ତି, ସେଥିରେ ଏ ବିଷୟରେ ଶିଶୁକୁ ଯଥାସମ୍ଭବ ଅଜ୍ଞ ରଖନ୍ତି : ଶିଶୁର ସମସ୍ତ ଦୃଷ୍ଟିକୁ ବାହ୍ୟ ବସ୍ତୁ ଉପରେ ନିବଦ୍ଧ କରାନ୍ତି ଯଦ୍ଦ୍ୱାରା ଶିଶୁ ଭାବେ ଯେ ଏହି ବାହ୍ୟ ବସ୍ତୁହିଁ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ । ବାହ୍ୟ ବସ୍ତୁ ଉପରେ ମନୋନିବେଶ କରିବା ଖୁବ୍ ଉପକାରୀ, କିନ୍ତୁ ଏହା ଯଥାଯଥ ଭାବରେ କରିବାକୁ ହେବ । ଶିକ୍ଷାର ତ୍ରିବିଧ ଧାରା—ଶାରୀରିକ, ପ୍ରାଣିକ, ମାନସିକ—ଏହି ବାହ୍ୟ ଦିଗଟିକୁ ଗ୍ରହଣ କରେ ଏବଂ ମାନବ-ବ୍ୟକ୍ତିତ୍ୱ ଗଠନର କରଣଗୁଡ଼ିକ ସମ୍ବନ୍ଧରେ ଆଲୋଚନା କରେ; ଗୋଟିଏ ଆକାରହୀନ ଅବଚେତନ ପିଣ୍ଡ ମଧ୍ୟରୁ ବ୍ୟକ୍ତିକୁ ତୋଳିଧରେ ଏବଂ ତାକୁ ଗୋଟିଏ ସଚେତନ ଏବଂ ସୁସ୍ପଷ୍ଟ ରୂପ ପ୍ରଦାନ କରେ । କିନ୍ତୁ ଚୈତ୍ୟ ଶିକ୍ଷାରେ ଜୀବନର ଯଥାର୍ଥ ଉଦ୍ଦେଶ୍ୟ କ'ଣ, ପୃଥିବୀରେ ଆମ୍ଭମାନଙ୍କର ଜୀବନ ଧାରଣ କରିବାର ସାର୍ଥକତା କେଉଁଠି, କେଉଁ ରହସ୍ୟ ଉଦ୍‌ଘାଟନ କରିବାରେ ଏହି ଜୀବନ ନିୟୋଜିତ ହେବା ଉଚିତ, ଏବଂ ସେହି ଉଦ୍‌ଘାଟନର ଫଳ କ'ଣ ହେବ, ଶାଶ୍ୱତ ସତ୍ୟ ପାଖରେ ବ୍ୟକ୍ତିର ଆତ୍ମ-ନିବେଦନର ଅର୍ଥ କ'ଣ—ଏହି ସମସ୍ୟାଗୁଡ଼ିକ ଆଲୋଚିତ ହୁଏ । ଏହି ଆବିଷ୍କାରର ବିଷୟ ଚିନ୍ତା କଲାବେଳେ ଖୁବ୍ ସାଧାରଣତଃ ଗୋଟିଏ ରହସ୍ୟମୟ ଭାବ, ଧର୍ମଗତ ଜୀବନର କଥା ମନରେ ଆସେ, କାରଣ ବିଭିନ୍ନ ଧର୍ମହିଁ ଜୀବନର ଏହି ଦିଗଟି ସମ୍ବନ୍ଧରେ ଚର୍ଚ୍ଚା କରିଥାଆନ୍ତି । କିନ୍ତୁ ଏହିପରି ହେବା ଯେ ଅନିବାର୍ଯ୍ୟ ତାହା ନୁହେଁ; ଭଗବାନଙ୍କର ଗୋଟିଏ ରହସ୍ୟମୟ ଧାରଣା ପରିବର୍ତ୍ତେ ଆମ୍ଭେମାନେ ସତ୍ୟର ଗୋଟିଏ ଯୁକ୍ତିସିଦ୍ଧ ଅଧିକ ଦାର୍ଶନିକ ଧାରଣା କରିପାରୁ, କିନ୍ତୁ ସେହି ମୂଳ ଉପଲବ୍ଧି ଏକହିଁ ପ୍ରକାରର ହେବ—କେବଳ ଏହି ମାର୍ଗରେ ଅତ୍ୟଧିକ ତାର୍କିକ ସ୍ଥୂଳବାଦୀମାନେ ମଧ୍ୟ ଯାତ୍ରା କରିପାରିବେ । କାରଣ ଚୈତ୍ୟ-ଜୀବନ ନିମିତ୍ତ ପ୍ରସ୍ତୁତ ହେବାକୁ ହେଲେ ଦେଖାଯାଏ ଯେ ମାନସିକ

ଧାରଣା ଏବଂ ଭାବସମୂହର ମୂଲ୍ୟ ନିତାନ୍ତହିଁ ଗୌଣ । ଅସଲ କଥା ହେଲା ଉପଲବ୍ଧି, କାରଣ ଏହି ଉପଲବ୍ଧି ମଧ୍ୟରେହିଁ ତାହାର ନିଜସ୍ୱ ସତ୍ୟ ଏବଂ ଶକ୍ତି ଥାଏ,– ଏହା ପୂର୍ବରୁ, ସଙ୍ଗରେ ବା ପଛରେ ଥିବା କୌଣସି ମତବାଦ ଉପରେ ଏହା ନିର୍ଭର କରେ ନାହିଁ । ଅଧିକାଂଶ ସ୍ଥଳରେ ମତବାଦ ହେଲା ନିଜ ପାଖରେ ଦେଇଥିବା ନିଜର ବ୍ୟାଖ୍ୟା ମାତ୍ର—ତାହା ହେଲା ଜ୍ଞାନର ଆବରଣ । ଯେଉଁ ପାରିପାର୍ଶ୍ୱିକ ଅବସ୍ଥା ମଧ୍ୟରେ ମନୁଷ୍ୟ ଜନ୍ମ ଗ୍ରହଣ କରିଥାଏ, ଯେଉଁପରି ଶିକ୍ଷା ଲାଭ କରିଥାଏ, ସେହି ଅନୁସାରେ ମନୁଷ୍ୟ ତାହାର ଆରାଧ୍ୟ ଆଦର୍ଶ ଏବଂ ପରମ ତତ୍ତ୍ୱକୁ ନାନା ବେଶ ପିନ୍ଧାଏ । ଯଦି ମନୁଷ୍ୟର ଐକାନ୍ତିକତା ବା ନିଷ୍ଠା ଥାଏ ତେବେ ଉପଲବ୍ଧି ସର୍ବତ୍ର ପ୍ରାୟ ଏକ ହୁଏ; ପାର୍ଥକ୍ୟ କେବଳ ଦେଖାଯାଏ ବ୍ୟାଖ୍ୟାରେ—ନିଜସ୍ୱ ପ୍ରତ୍ୟୟ ଏବଂ ମାନସିକ ଶିକ୍ଷାନୁଯାୟୀ ପ୍ରତ୍ୟେକର ବ୍ୟବହୃତ କଥାରେ ଏବଂ କଥାର ଶବ୍ଦରେ ଏବଂ ବାକ୍ୟରେ । ସମସ୍ତ ସୂତ୍ର ବା ବାଖ୍ୟା କେବଳ ସତ୍ୟର ମୋଟାମୋଟି ପରିଚୟ ମାତ୍ର, ଅଭିଜ୍ଞତା ଯେତିକି ଯେତିକି ସୁନିର୍ଦ୍ଦିଷ୍ଟ ଓ ସୁସଂଗଠିତ ହେଉଥିବ ଏହି ବ୍ୟାଖ୍ୟା ମଧ୍ୟ ସେହି ଅନୁପାତରେ ଅଧିକ ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ହେବା ଉଚିତ । ତଥାପି ଆମକୁ ଯଦି ଚୈତ୍ୟ ଶିକ୍ଷା ସମ୍ବନ୍ଧରେ ଏକ ସାଧାରଣ ସୂଚନା ଦେବାକୁ ହୁଏ ତେବେ ତାହା ଯେତେ ଅପେକ୍ଷିକ ହେଲେ ମଧ୍ୟ, ଚୈତ୍ୟପୁରୁଷ କହିଲେ ଆମେ କ'ଣ ବୁଝୁ ସେ ସମ୍ପର୍କରେ ଏକ ଧାରଣା ରହିବା ଉଚିତ । ଉଦାହରଣସ୍ୱରୂପ କୁହାଯାଇପାରେ ଯେ ଏକ ବ୍ୟକ୍ତିସତ୍ତାର ଏହାହିଁ ହେଉଛି ସୃଜନ-ରହସ୍ୟ— ସମସ୍ତ ସୃଷ୍ଟିର ପରମ-ଉତ୍ସଙ୍କ ଭିତରେ ଯେଉଁ ଅଗଣିତ ସମ୍ଭାବନାସବୁ ସୁପ୍ତ ଭାବରେ ରହିଛି ତା' ଭିତରୁ ଗୋଟିଏ ଧାରା ନିଜକୁ ଦେଶ ଓ କାଳ ଭିତରେ ନିକ୍ଷିପ୍ତ କରେ ଏବଂ ଏକ ଓ ଅଦ୍ୱୈତ ବିଶ୍ୱଚୈତନ୍ୟର ସହାୟତାରେ ଏହି ଧାରା ରୂପ ନିଏ ଏକ ବ୍ୟକ୍ତିସତ୍ତାର ଅନ୍ତର୍ନିହିତ ସତ୍ୟ ବା ନିୟମଭାବେ ଏବଂ କ୍ରମଶଃ ଏକ ବିକାଶଶୀଳ ଅଭିବୃଦ୍ଧି ଫଳରେ ଏହାହିଁ ହୋଇଉଠେ ତାହାର ଚୈତ୍ୟପୁରୁଷ ବା ଅନ୍ତରାତ୍ମା ।

ଅବଶ୍ୟ ମୁଁ ସ୍ପଷ୍ଟ କରିଦେବାକୁ ଚାହେଁ ଯେ ସଂକ୍ଷେପରେ ମୁଁ ଏଠାରେ ଯାହା କହିଲି ତାହା ଏ ସମ୍ପର୍କରେ ସତ୍ୟର ଏକ ପରିପୂର୍ଣ୍ଣ ବ୍ୟାଖ୍ୟା ନୁହେଁ, ଏତିକିରେ ଏ ବିଷୟର ବ୍ୟାଖ୍ୟା ଶେଷ ହୋଇଗଲା ନାହିଁ । ଏକ ବ୍ୟାବହାରିକ ଉଦ୍ଦେଶ୍ୟରେ ଏହା ଏକ ଅତି ସଂକ୍ଷିପ୍ତ ଟିପ୍ପଣୀ ମାତ୍ର, ଯଦ୍ଦ୍ୱାରା ଆମେ ଯେଉଁ ଶିକ୍ଷା ବିଷୟରେ ଏଠାରେ ଆଲୋଚନା କରୁଛୁ, ଏହା ତାହାର ଭିତ୍ତି ହୋଇପାରେ ।

ଚୈତ୍ୟପୁରୁଷର ଜରିଆରେହିଁ ବ୍ୟକ୍ତି ତା'ର ସତ୍ତାର ଅନ୍ତର୍ନିହିତ ସତ୍ୟର ସ୍ପର୍ଶ ପାଏ ଏବଂ ତାହା ତା'ର ଜୀବନର ପରିସ୍ଥିତିର ସମ୍ପର୍କରେ ମଧ୍ୟ ଆସେ । କହିବାକୁ ଗଲେ ଅଧିକାଂଶ କ୍ଷେତ୍ରରେ ଏହି ଚୈତ୍ୟ-ଉପସ୍ଥିତି ପରଦା ଆଢୁଆଳରୁ ଅଜଣା ଅଚିହ୍ନା ରୂପେ କାର୍ଯ୍ୟ କରେ, କିନ୍ତୁ ଆଉ କେତେକ କ୍ଷେତ୍ରରେ ଏହାକୁ ଅନୁଭବ କରିହୁଏ ଏବଂ ଏହାର କ୍ରିୟାକୁ ମଧ୍ୟ ଚିହ୍ନିହୁଏ, ପୁଣି ଏମାନଙ୍କ ଭିତରୁ ଅଳ୍ପ କେଇଜଣଙ୍କ ଭିତରେ ଏହି ଚୈତ୍ୟ-ଉପସ୍ଥିତି ଖୁବ୍ ସ୍ପଷ୍ଟ ହୁଏ ଏବଂ ଏହାର କ୍ରିୟା ମଧ୍ୟ ହୁଏ ଖୁବ୍ ଫଳପ୍ରଦ । ଏହି ବ୍ୟକ୍ତିମାନେ ଜୀବନ-ପଥରେ ଆଗେଇ ଯାଆନ୍ତି ଏକ ଦୃଢ଼ ନିଶ୍ଚୟତା ଓ ଆସ୍ଥାର ସହିତ ଯାହାକି ସେମାନଙ୍କର ଏକାନ୍ତ ନିଜସ୍ୱ, ସେମାନେ ହୋଇ ଉଠନ୍ତି ନିଜ ଭାଗ୍ୟର ନିୟନ୍ତା । ଏହି କର୍ତ୍ତୃତ୍ୱ ଲାଭ କରିବା ନିମନ୍ତେ ଏବଂ ଚୈତ୍ୟସତ୍ତାର ଉପସ୍ଥିତି ସମ୍ପର୍କରେ ସଚେତନ ହୋଇଉଠିବା ନିମନ୍ତେ ଚୈତ୍ୟଶିକ୍ଷାର ଅନୁଶୀଳନ ପ୍ରୟୋଜନ । କିନ୍ତୁ ଏଥିପାଇଁ ଆଉ ଏକ ବିଶେଷ ଉପାଦାନ ଦରକାର, ତାହା ହେଉଛି ବ୍ୟକ୍ତିଗତ ସଂକଳ୍ପ । କାରଣ ଆଜିପର୍ଯ୍ୟନ୍ତ ଚୈତ୍ୟପୁରୁଷର ଆବିଷ୍କାର ଓ ତାହା ସଙ୍ଗେ ଏକତ୍ୱସାଧନ ଶିକ୍ଷାର ସ୍ୱୀକୃତ ବିଷୟବସ୍ତୁ ଭିତରେ ଅନ୍ତର୍ଭୁକ୍ତ ହୋଇ ନାହିଁ । ଏହା ସତ୍ୟ ଯେ ସ୍ୱତନ୍ତ୍ର ଆଲୋଚନାସବୁରେ ଏହି ସମ୍ପର୍କରେ ମୂଲ୍ୟବାନ୍ ଓ ଉପଯୋଗୀ ସୂଚନାସବୁ ମିଳେ, ଏବଂ ଭାଗ୍ୟବାନ୍ ବ୍ୟକ୍ତିମାନେ ଏ ଦିଗରେ ପଥପ୍ରଦର୍ଶନ କରିବାର କ୍ଷମତାଥିବା ଗୁରୁଙ୍କ

ସାକ୍ଷାତ୍ ପାଆନ୍ତି ଯାହାଙ୍କଠାରୁ ଏହି ପଥ ଅନୁସରଣ କରିବା ପାଇଁ ଆବଶ୍ୟକ ସମସ୍ତ ସାହାଯ୍ୟ ମିଳେ । ଅବଶ୍ୟ ଅଧିକାଂଶ ସ୍ଥଳରେ ଏ ଦିଗରେ ଉଦ୍ୟମ ପାଇଁ ବ୍ୟକ୍ତିକୁ ତା'ର ନିଜ ଉଦ୍ୟୋଗ ଉପରେ ନିର୍ଭର କରିବାକୁ ପଡ଼େ । କାରଣ ଏହି ଆବିଷ୍କାର ଏକାନ୍ତ ବ୍ୟକ୍ତିଗତ ଏବଂ ଲକ୍ଷ୍ୟରେ ପହୁଞ୍ଚିବା ପାଇଁ ପ୍ରୟୋଜନ ହେଉଛି ଏକ ଅଟଳ ସିଦ୍ଧାନ୍ତ, ଦୃଢ଼ ସଂକଳ୍ପଶକ୍ତି ଓ ଅକ୍ଳାନ୍ତ ଅଧ୍ୟବସାୟ । କହିବାକୁ ଗଲେ ପ୍ରତ୍ୟେକ ବ୍ୟକ୍ତିକୁ ତା'ର ନିଜର ବାଧାବିଘ୍ନ ଭିତରେ ପଥ କାଟି ଚାଲିବାକୁ ହେବ । ଯେଉଁମାନଙ୍କର ଲକ୍ଷ୍ୟ ସମ୍ପର୍କରେ କିଛି ପରିମାଣରେ ଧାରଣା ରହିଛି, କାରଣ ଯେଉଁମାନେ ଏହି ଲକ୍ଷ୍ୟରେ ପହଞ୍ଚିଛନ୍ତି, ସେମାନେ ଏହି ସମ୍ପର୍କରେ ଊଣା-ଅଧିକେ ସ୍ପଷ୍ଟ ବର୍ଣ୍ଣନା ଦେଇଛନ୍ତି । କିନ୍ତୁ ଏହି ଆବିଷ୍କାରର ପରମ ମୂଲ୍ୟ ଏହାର ସ୍ୱତଃସ୍ଫୂର୍ତ୍ତତା ଓ ଆନ୍ତରିକତା ଭିତରେହିଁ ରହିଥାଏ ଯାହା ସବୁପ୍ରକାର ମାନସିକ ନିୟମର ବାହାରେ । ସେଥିପାଇଁ ଯେ ଏହି ପଥରେ ଚାଲିବାକୁ ଚାହାନ୍ତି ସାଧାରଣତଃ ସେ ପ୍ରଥମେ ଏପରି ଏକ ବ୍ୟକ୍ତିଙ୍କର ସହାୟତା ଖୋଜନ୍ତି ଯେ କି ଏହି ପଥରେ ଗତି କରି ସଫଳତା ଲାଭ କରିଛନ୍ତି ଏବଂ ଯେ ତାଙ୍କୁ ସାହାଯ୍ୟ କରନ୍ତି ଓ ପଥର ସନ୍ଧାନ ଦେଇ ପାରନ୍ତି । ତଥାପି ଏହି ପଥରେ କେତେକ ସାଧକ ଏକାକୀ ଯାତ୍ରା କରନ୍ତି, ସେମାନଙ୍କ ପାଇଁ ଏହି କେତେକ ସାଧାରଣ ସୂଚନା ଅନେକ ଉପଯୋଗୀ ହୋଇପାରେ ।

ଏ ଦିଗରେ ପ୍ରାରମ୍ଭିକ ବିଷୟ ହେଲା ନିଜ ଭିତରେ ସେହି ବସ୍ତୁକୁ ଖୋଜିବା ଯାହା ଦେହ ଓ ଜୀବନର ପରିସ୍ଥିତି ବା ଅବସ୍ଥାର ଅଧୀନ ନୁହେଁ; ତୁମେ ପାଇଥିବା ମାନସିକ ଗଠନ, ତୁମେ କହୁଥିବା ଭାଷା, ତୁମ ପରିବେଶର ଆଚାର ବା ପ୍ରଥା; ତୁମେ ବାସ କରୁଥିବା ଦେଶ ବା ଯୁଗ— ଏ କୌଣସିଟି ଭିତରୁ ଯାହାର ଜନ୍ମ ନୁହେଁ । ତୁମ ସତ୍ତାର ଗଭୀରତାରେ ତାହାକୁହିଁ ଆବିଷ୍କାର କରିବାକୁ ହେବ ଯେ କି ସର୍ବଦା ନିଜ ଭିତରେ ଏକ

ବିଶ୍ୱମୟତାର ବୋଧ, ଏକ ସୀମାହୀନ ବ୍ୟାପ୍ତି, ଏକ ଅଖଣ୍ଡ ନିରବଚ୍ଛିନ୍ନତା ବହନ କରି ଚାଲିଥାଏ । ସେତେବେଳେ ତୁମେ ବିକେନ୍ଦ୍ରୀଭୂତ ହୋଇଯାଅ, ଚତୁର୍ଦିଗରେ ପ୍ରସାରିତ ହୋଇଯାଅ, ନିଜକୁ ଆହୁରି ବିସ୍ତୃତ କରିଦିଅ, ପ୍ରତ୍ୟେକଟି ବସ୍ତୁ ଭିତରେ ଓ ପ୍ରତ୍ୟେକଟି ସତ୍ତା ମଧ୍ୟରେ ତୁମେ ବାସ କରିବାକୁ ଆରମ୍ଭ କର, ବ୍ୟକ୍ତିମାନଙ୍କୁ ପରସ୍ପରଠାରୁ ବିଚ୍ଛିନ୍ନ କରି ରଖୁଥିବା ପ୍ରାଚୀର ଭାଙ୍ଗି ପଡ଼େ । ସମସ୍ତଙ୍କର ଚିନ୍ତା ହୋଇଉଠେ ତୁମର ଚିନ୍ତା, ଅନ୍ୟ ସମସ୍ତଙ୍କ ଅନୁଭୂତିରେ ତୁମେ ସ୍ପନ୍ଦିତ ହୁଅ, ଅନ୍ୟମାନଙ୍କର ହୃଦୟର ଭାବରେ ତୁମ ହୃଦୟ ଆଲୋଡ଼ିତ ହୁଏ, ସମସ୍ତଙ୍କର ଜୀବନ ହୋଇଉଠେ ତୁମର ଜୀବନ । ଯାହା ଜଡ଼ ବୋଲି ମନେ ହେଉଥିଲା ତାହା ହଠାତ୍ ପ୍ରାଣବନ୍ତ ହୋଇଉଠେ, ପ୍ରସ୍ତର ଖଣ୍ଡରେ ଅନୁଭୂତ ହୁଏ ଗତି ଓ ସ୍ପନ୍ଦନ, ବୃକ୍ଷଲତାମାନେ ଅନୁଭବ କରନ୍ତି, ଇଚ୍ଛା କରନ୍ତି, ଯନ୍ତ୍ରଣା ଅନୁଭବ କରନ୍ତି, ପଶୁପକ୍ଷୀମାନେ ସେମାନଙ୍କର ନିଜ ଭାଷାରେ କଥା କହନ୍ତି, ତାହା ଯଦିଓ ଅପରିଣତ ତଥାପି ସ୍ପଷ୍ଟ ଓ ଭାବବ୍ୟଞ୍ଜକ ହୋଇଉଠେ— ସବୁକିଛି ଯେପରି ହୋଇଉଠେ ସୀମାହୀନ କାଳହୀନ ଏକ ଅପରୂପ ଚେତନାରେ ପ୍ରାଣବନ୍ତ ! ଚୈତ୍ୟ ଉପଲବ୍ଧିର ଏହା ଗୋଟିଏ ଦିଗ ମାତ୍ର । ଏହିପରି ଆହୁରି ଅନେକ ଦିଗ ଅଛି । ସବୁଗୁଡ଼ିକ ମିଳି ତୁମକୁ ସାହାଯ୍ୟ କରନ୍ତି ତୁମ ଅହଂକାରର ଗଣ୍ଡି ଓ ତୁମ ବାହ୍ୟ ବ୍ୟକ୍ତିତ୍ୱର ବେଷ୍ଟନୀ ଭିତରୁ ବାହାରି ଆସିବାକୁ, ତୁମ କ୍ରିୟା-ପ୍ରତିକ୍ରିୟାର କ୍ଲୀବତ୍ୱକୁ, ତୁମ ସଙ୍କଳ୍ପର ଅକ୍ଷମତାକୁ ଅତିକ୍ରମ କରିଯିବାକୁ ।

କିନ୍ତୁ ମୁଁ ଆଗରୁ ଯାହା କହିଛି—ଏହି ଉପଲବ୍ଧିରେ ପହଞ୍ଚିବାର ପଥ ଦୀର୍ଘ ଏବଂ ଦୁରୂହ, ସମସ୍ୟାସଙ୍କୁଳ ଓ ନାନା ବାଧାବିପତ୍ତିରେ ପୂର୍ଣ୍ଣ; ସେସବୁର ସମ୍ମୁଖୀନ ହେବାକୁ ହେଲେ ଏପରି ଏକ ଦୃଢ଼ ସଂକଳ୍ପର ପ୍ରୟୋଜନ ଯାହାକି ସମସ୍ତ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପାଇଁ, ସମସ୍ତ ବିଘ୍ନକୁ ଜୟ କରିବା ପାଇଁ ଅଭୀପ୍ସା ପୋଷଣ କରେ । ଏହା ଯେପରି ଜଣେ ଆବିଷ୍କାରକର କୌଣସି ଅଗମ୍ୟ ଓ ଦୁର୍ଭେଦ୍ୟ ଅରଣ୍ୟ ଭିତର

ଦେଇ ଯାତ୍ରା– ଏକ ଅଜଣା ରାଜ୍ୟର ସନ୍ଧାନରେ, ଏକ ମହାନ୍ ଆବିଷ୍କାରର ଲକ୍ଷ୍ୟରେ । ଚୈତ୍ୟପୁରୁଷର ଆବିଷ୍କାର ମଧ୍ୟ ଏହିପରି ଏକ ମହାନ୍ ଆବିଷ୍କାର । ଏକ ନୂତନ ଦେଶର ଆବିଷ୍କାର ପରି ଏ କ୍ଷେତ୍ରରେ ମଧ୍ୟ ସମାନ ସାହସ, ଧୈର୍ଯ୍ୟ ଓ ସହିଷ୍ଣୁତା ଆବଶ୍ୟକ । ଏଥିପାଇଁ ପ୍ରୟାସ କରିବାକୁ ଯେଉଁମାନେ ଦୃଢ଼ପ୍ରତିଜ୍ଞ ଏହି କେତେକ ଉପଦେଶ ସେମାନଙ୍କ ପାଇଁ ଉପଯୋଗୀ ହୋଇପାରେ :

ପ୍ରଥମ ଏବଂ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ଯାହାକୁ କେବେ ବି ଭୁଲିବା କଥା ନୁହେଁ, ତା'ହେଉଛି ମନ ଦ୍ୱାରା ଆଧ୍ୟାତ୍ମିକ ବିଷୟସବୁକୁ ବିଚାର କରିବା ସଂପୂର୍ଣ୍ଣ ଅସମ୍ଭବ । ଯେଉଁମାନେ ଯୋଗସାଧନା ସମ୍ପର୍କରେ ଲେଖିଛନ୍ତି, ସେମାନେ ସମସ୍ତେ ଏହି କଥା କହିଛନ୍ତି, କିନ୍ତୁ ଖୁବ୍ କମ୍ ଲୋକ ଏହାକୁ କାର୍ଯ୍ୟରେ ପରିଣତ କରିଛନ୍ତି । ଅଥଚ ଯୋଗପଥରେ ଅଗ୍ରସର ହେବାକୁ ହେଲେ ସମସ୍ତ ପ୍ରକାର ମାନସିକ ବିଚାର, ମାନସିକ କ୍ରିୟା-ପ୍ରତିକ୍ରିୟା ଓ ମତାମତ ଆଦିରୁ ବିରତ ରହିବା ଏକାନ୍ତ ଅପରିହାର୍ଯ୍ୟ ।

ନିଜର ବ୍ୟକ୍ତିଗତ ସୁଖ, ସନ୍ତୋଷ, ଆରାମ ଓ ଉପଭୋଗ ନିମନ୍ତେ ସମସ୍ତ ଇଚ୍ଛା ଓ ଉଦ୍ୟମକୁ ସଂପୂର୍ଣ୍ଣରୂପେ ବର୍ଜନ କର । ଅଗ୍ରଗତି ନିମନ୍ତେ ହୋଇଉଠ ଏକ ଜ୍ୱଳନ୍ତ ଅଗ୍ନିଶିଖା ପରି, ତୁମ ନିକଟକୁ ଯାହା ବି ଆସୁନା କାହିଁକି, ତାକୁ ଅଗ୍ରଗତି ନିମନ୍ତେ ସହାୟକ ବୋଲି ଗ୍ରହଣ କର ଓ ଅବିଳମ୍ବେ ଆବଶ୍ୟକ ପ୍ରଗତି ସାଧନ କର ।

ତୁମେ କରୁଥିବା ସମସ୍ତ କାର୍ଯ୍ୟରୁ ତୃପ୍ତି ପାଇବାକୁ ଚେଷ୍ଟା କର କିନ୍ତୁ ତୃପ୍ତି ପାଇଁ କୌଣସି କାର୍ଯ୍ୟ କର ନାହିଁ ।

କେବେ ବି ଉତ୍ତେଜିତ, ଭୀତ ବା ବିଚଳିତ ହୁଅ ନାହିଁ । ଯାହା ଆସୁନା କାହିଁକି, ଯେକୌଣସି ଅବସ୍ଥାରେ ଓ ଯେକୌଣସି ବିଷୟରେ ସଂପୂର୍ଣ୍ଣ ଶାନ୍ତ ରୁହ । ତଥାପି ଅଗ୍ରସର ଦିଗରେ କ'ଣ ବାକି ରହିଛି ସେ ସମ୍ପର୍କରେ ଜାଗ୍ରତ ରୁହ ଓ କାଳ ବିଳମ୍ବ ନ କରି ତାହା ସାଧନ କର ।

କେବଳ ବାହ୍ୟରୂପକୁ ଦେଖି କୌଣସି ଘଟଣାର ବିଚାର କରିବ ନାହିଁ । ସେଗୁଡ଼ିକ ବରାବର ଅନ୍ୟ କିଛିକୁ ପ୍ରକାଶ କରିବା ନିମନ୍ତେ ଏକ ଅପାରଗ ଚେଷ୍ଟା ମାତ୍ର, ତାହା ଭିତରେ ଯେଉଁ ପ୍ରକୃତ ସତ୍ୟ ରହିଥାଏ ତାହା ତୁମର ଅଗଭୀର ବିଚାରବୁଦ୍ଧିର ସଂପୂର୍ଣ୍ଣ ଅଗମ୍ୟ ।

କାହାର ଆଚାର-ବ୍ୟବହାର ସମ୍ପର୍କରେ କୌଣସି ଅଭିଯୋଗ କରିବ ନାହିଁ, ଯଦି ତାହାର ଯେଉଁ ସ୍ୱଭାବ ଯୋଗୁଁ ସେ ଏପରି ଆଚରଣ କରୁଛି ସେହି ସ୍ୱଭାବକୁ ବଦଳାଇ ଦେବାର କ୍ଷମତା ତୁମଠାରେ ନ ଥାଏ । ଯଦି ତୁମର ସେପରି କ୍ଷମତା ଥାଏ ତେବେ ଅଭିଯୋଗ କରିବା ପରିବର୍ତ୍ତେ ତା'ର ସ୍ୱଭାବକୁ ବଦଳାଇ ଦିଅ ।

ତୁମେ ଯାହା ବି କରନା କାହିଁକି, ନିଜ ଆଗରେ ଯେଉଁ ଲକ୍ଷ୍ୟ ରଖିଛ ତାହା କେବେ ବି ଭୁଲିଯାଅ ନାହିଁ । ଏହି ମହତ୍ ଆବିଷ୍କାରର ସାଧନାରେ ଛୋଟ ବା ବଡ଼ ବୋଲି କିଛି ନାହିଁ, ସବୁଗୁଡ଼ିକ ସମାନ ଭାବରେ ଗୁରୁତ୍ୱପୂର୍ଣ୍ଣ ଏବଂ ତୁମର ସାଫଲ୍ୟକୁ ତ୍ୱରାନ୍ୱିତ କରିବାରେ ସହାୟକ ହୁଅନ୍ତି କିଂବା ବିଳମ୍ବ ଘଟାନ୍ତି । ଏହିପରି ଭାବରେ ଭୋଜନ ପୂର୍ବରୁ କିଛିକ୍ଷଣ ଏକାଗ୍ର ହୋଇ ଅଭୀପ୍ସା କର ଯେ ତୁମେ ଯେଉଁ ଖାଦ୍ୟ ଗ୍ରହଣ କରୁଛ ତାହା ତୁମ ଶରୀରକୁ ଏପରି ଉପାଦାନ ଆଣିଦେଉ ଯାହାକି ତୁମର ସେହି ମହତ୍ ଆବିଷ୍କାର ନିମନ୍ତେ ଉଦ୍ୟମର ସୁଦୃଢ଼ ଭିତ୍ତିସ୍ୱରୂପ ହେବ ଏବଂ ସେ ଦିଗରେ ଅଧ୍ୟବସାୟ ନିମନ୍ତେ ଆବଶ୍ୟକ ଶକ୍ତି ସଞ୍ଚାର କରିବ ।

ଶୋଇବା ପୂର୍ବରୁ କିଛି ସମୟ ଏହି ଅଭୀପ୍ସାରେ ଏକାଗ୍ର ହୁଅ ଯେ ନିଦ୍ରା ଯେପରି ତୁମର ସ୍ନାୟବିକ କ୍ଳାନ୍ତି ଦୂର କରୁ ଏବଂ ତୁମର ମସ୍ତିଷ୍କରେ ଆଣିଦେଉ ପ୍ରଶାନ୍ତି ଓ ନୀରବତା ଯେପରିକି ନିଦ୍ରାଭଙ୍ଗ ପରେ ତୁମେ ପୁଣି ଦ୍ୱିଗୁଣ ଶକ୍ତି ଓ ଉତ୍ସାହ ନେଇ ତୁମ ମହତ୍ ଆବିଷ୍କାରର ପଥରେ ଯାତ୍ରାରମ୍ଭ କରିବ ।

କୌଣସି କର୍ମରେ ପ୍ରବୃତ୍ତ ହେବା ପୂର୍ବରୁ ଏକାଗ୍ରତାର ସହ ଏହି

ସଂକଳ୍ପ କର ଯେ ତୁମର ସେହି ମହାନ୍ ଆବିଷ୍କାରର ଯାତ୍ରାପଥରେ ଅଗ୍ରପଦକ୍ଷେପ ପାଇଁ ଏହି କର୍ମ ଯେପରି ସହାୟକ ହେଉ, ଅନ୍ତତଃ କୌଣସି ପ୍ରତିବନ୍ଧକ ନ ଆଣୁ ।

କୌଣସି କଥା କହିବାକୁ ଗଲାବେଳେ ଶବ୍ଦ ଉଚ୍ଚାରଣ ପୂର୍ବରୁ ଆବଶ୍ୟକ ସଂଯମ ପ୍ରୟୋଗ କର । କେବଳ ନିତାନ୍ତ ପ୍ରୟୋଜନୀୟ କଥା ବ୍ୟତୀତ ଅନ୍ୟ କିଛି କହ ନାହିଁ, ଯାହାକି ତୁମର ସେହି ମହାନ୍ ଆବିଷ୍କାର ପଥରେ କୌଣସି ଅନ୍ତରାୟ ସୃଷ୍ଟି କରିବ ।

ସଂକ୍ଷେପରେ କହିବାକୁ ଗଲେ, ତୁମ ଜୀବନର ଲକ୍ଷ୍ୟ ଓ ଉଦ୍ଦେଶ୍ୟକୁ କେବେ ବି ଭୁଲ ନାହିଁ । ସେହି ମହାନ୍ ଆବିଷ୍କାର ନିମନ୍ତେ ଜାଗ୍ରତ ସଂକଳ୍ପ ବରାବର ତୁମର ସତ୍ତାର ଉର୍ଦ୍ଧ୍ୱରେ ଜ୍ୟୋତି ଓ ଆଲୋକର ଏକ ବିରାଟ ପକ୍ଷୀ ପରି ବିଚରଣ କରୁ ଓ ତୁମର ପ୍ରତିଟି କ୍ରିୟା ଓ ତୁମର ପ୍ରତିଟି ଗତିବୃତ୍ତିକୁ ତାହା ସର୍ବଦା ପ୍ରଭାବିତ ଓ ସଞ୍ଚାଳିତ କରୁ ।

ତୁମର ଅକ୍ଳାନ୍ତ ଓ ନିରବଚ୍ଛିନ୍ନ ଉଦ୍ୟମ ଫଳରେ ଦିନେ ହଠାତ୍ ଭିତରର ଏକ ଦ୍ୱାର ଖୋଲିଯିବ ଏବଂ ତୁମେ ନିଜକୁ ଦେଖିବ ଜ୍ୟୋତିର ଏକ ଅପରୂପ ଉଭାସ ଭିତରେ ଯାହାକି ଆଣିଦେବ ତୁମକୁ ଅମରତ୍ୱର ନିଶ୍ଚୟତା । ସ୍ପଷ୍ଟ ଭାବରେ ତୁମେ ଉପଲବ୍ଧି କରିବ ଯେ ତୁମେ ଅନାଦି ଅନନ୍ତ କାଳରୁ ରହି ଆସିଥିଲ ଏବଂ ଅନନ୍ତ କାଳଯାଏ ମଧ୍ୟ ରହିଥିବ, କେବଳ ବାହ୍ୟ ଆକାରର ବିନାଶ ଘଟେ ଏବଂ ଯାହା ତୁମର ଯଥାର୍ଥ ସ୍ୱରୂପ ତା' ତୁଳନାରେ ବାହ୍ୟ ଆକାର କେବଳ ଏକ ପରିଚ୍ଛଦ ତୁଲ୍ୟ, ଜୀର୍ଣ୍ଣ ହୋଇଗଲେ ଯାହାକୁ ଫିଙ୍ଗି ଦିଆଯାଏ । ସେତେବେଳେ ତୁମେ ସମସ୍ତ ପ୍ରକାର ଶୃଙ୍ଖଳ ଓ ବନ୍ଧନରୁ ମୁକ୍ତ ହୋଇ ସିଧା ହୋଇ ଛିଡ଼ା ହେବ । ପ୍ରକୃତି ତୁମ ଉପରେ ପରିସ୍ଥିତିର ଯେଉଁ ଗୁରୁଭାର ଲଦି ଦେଇଥିଲା ଓ ଯାହାକୁ ବହନ କରି ଦୁଃଖଭୋଗ କରିବାକୁ ତୁମେ ବାଧ୍ୟ ହୋଇଥିଲ, ଯଦି ତୁମେ ସେହି ବୋଝର ଗୁରୁଭାର ତଳେ ନିଷ୍ପେଷିତ ହୋଇଯିବାକୁ ନ ଚାହିଁବ,

ସେହି ବୋଝଭାରରେ ଚାପି ହୋଇ ବହୁ କଷ୍ଟରେ ଅଗ୍ରଗତି କରିବା ପରିବର୍ତ୍ତେ ଯଦି ତୁମେ ଚାହିଁବ ନିଜ ଭାଗ୍ୟ ସମ୍ବନ୍ଧରେ ସଚେତନ ହୋଇ ନିଜ ଜୀବନର ପ୍ରଭୁରୂପେ ସିଧା ଓ ଦୃଢ଼ ଭାବରେ ଚାଲିବାକୁ, ତେବେ ବର୍ତ୍ତମାନ ତାହା ସମ୍ଭବପର ହେବ ।

ତଥାପି ସ୍ଥୂଳଦେହର ଦାସତ୍ୱରୁ ଏହି ମୁକ୍ତି, ବ୍ୟକ୍ତିଗତ ସମସ୍ତ ଆସକ୍ତିରୁ ଏହି ମୁକ୍ତିକୁ ଚୂଡ଼ାନ୍ତ ସିଦ୍ଧି ବା ପୂର୍ଣ୍ଣତା କୁହାଯାଇ ପାରିବ ନାହିଁ । ଶିଖରରେ ପହଞ୍ଚିବା ପୂର୍ବରୁ ଆହୁରି ଅନେକ ପାହାଚ ଅତିକ୍ରମ କରିବାକୁ ପଡ଼ିବ । ଏବଂ ଏହି ସମସ୍ତ ପାହାଚ ପରେ ମଧ୍ୟ ଆହୁରି ପାହଚସବୁ ରହିଛି ଯାହାକି ଭବିଷ୍ୟତର ଦ୍ୱାର ଉନ୍ମୁକ୍ତ କରିଦେବ । ଏହି ପରବର୍ତ୍ତୀ ପହାଚଗୁଡ଼ିକୁ ମୁଁ ଆଧ୍ୟାତ୍ମିକ ଶିକ୍ଷାର ବିଷୟବସ୍ତୁ ବୋଲି କହୁଛି ।

କିନ୍ତୁ ଏହି ନୂତନ ସ୍ତରରେ ପ୍ରବେଶ କରି ପ୍ରଶ୍ନଟିର ପୁଙ୍ଖାନୁପୁଙ୍ଖ ଆଲୋଚନା ପୂର୍ବରୁ ଏକ ବ୍ୟାଖ୍ୟାର ପ୍ରୟୋଜନ ରହିଛି । ଯେଉଁ ଚୈତ୍ୟଶିକ୍ଷା ସମ୍ପର୍କରେ ଆମେ ଏପର୍ଯ୍ୟନ୍ତ ଆଲୋଚନା କରିଛୁ ଓ ଯେଉଁ ଆଧ୍ୟାତ୍ମିକ ଶିକ୍ଷା ସମ୍ପର୍କରେ ବର୍ତ୍ତମାନ ଆଲୋଚନା କରିବାକୁ ଯାଉଛୁ ଏ ଦୁଇଟି ଶିକ୍ଷାକୁ ପୃଥକ୍ କରାହେବାର ପ୍ରୟୋଜନ କେଉଁଠି ? ଏହା ଆବଶ୍ୟକ, କାରଣ ''ଯୋଗ ସାଧନା''ର ସାଧାରଣ ନାମ ଭିତରେ ଏହି ଦୁଇଟିକୁ ବରାବର ମିଶାଇ ଦିଆଯାଇ ଥାଏ, ଯଦିଓ ଦୁଇଟିର ଲକ୍ଷ୍ୟ ସଂପୂର୍ଣ୍ଣରୂପେ ଭିନ୍ନ ଓ ସ୍ୱତନ୍ତ୍ର । କାରଣ ଗୋଟିକର ଲକ୍ଷ୍ୟ ହେଲା ଏହି ପୃଥିବୀପୃଷ୍ଠରେ ଏକ ଉଚ୍ଚତର ସିଦ୍ଧି ଏବଂ ଅନ୍ୟଟିର ଲକ୍ଷ୍ୟ ହେଲା ସମସ୍ତ ପ୍ରକାର ପାର୍ଥିବ ଅଭିବ୍ୟକ୍ତିରୁ, ଏପରିକି ସମଗ୍ର ବିଶ୍ୱ ଭିତରୁ ବାହାରିଯାଇ ଅବ୍ୟକ୍ତ ଭିତରକୁ ଫେରିଯିବା ।

ସୁତରାଂ ଏପରି କୁହାଯାଇ ପାରେ ଯେ ଚୈତ୍ୟ-ଜୀବନ ହେଉଛି ଏକ ଅମରତ୍ୱର ଜୀବନ, ଅନ୍ତହୀନ କାଳ, ସୀମାହୀନ ଦେଶ, ନିତ୍ୟ ପ୍ରଗତିଶୀଳ ପରିବର୍ତ୍ତନ ଓ ନାମରୂପର ଜଗତରେ ଏକ ନିରବଚ୍ଛିନ୍ନ ଗତି

ଓ ପ୍ରବାହ । କିନ୍ତୁ ଅନ୍ୟପକ୍ଷରେ ଆଧାତ୍ମିକ ଚେତନା ହେଉଛି କେବଳ ଅନନ୍ତ ଓ ଶାଶ୍ୱତ ସହ ଏକ ହୋଇଯିବା, ସ୍ଥାନ ଓ କାଳକୁ ଅତିକ୍ରମ କରି ସମସ୍ତ ସୃଷ୍ଟିର ବାହାରେ ନିଜକୁ ନିକ୍ଷିପ୍ତ କରିବା । ତୁମର ନିଜର ଚୈତ୍ୟପୁରୁଷ ସମ୍ପର୍କରେ ପୂର୍ଣ୍ଣ ଭାବରେ ସଚେତନ ହେବାକୁ ହେଲେ ଏବଂ ଏକ ଚୈତ୍ୟ-ଜୀବନ ଯାପନ କରିବାକୁ ହେଲେ ତୁମ ଭିତରୁ ସମସ୍ତ ସ୍ୱାର୍ଥପରାୟଣତାକୁ ଲୋପ କରିବାକୁ ହେବ, କିନ୍ତୁ ଆଧାତ୍ମିକ ଜୀବନ ଯାପନ କରିବାକୁ ହେଲେ ତୁମକୁ ସଂପୂର୍ଣ୍ଣ ଶୂନ୍ୟ-ସ୍ୱାର୍ଥ ଅର୍ଥାତ୍ ଅହଂଶୂନ୍ୟ ହେବାକୁ ହେବ ।

ଏହି ଆଧାତ୍ମିକ ଶିକ୍ଷା-କ୍ଷେତ୍ରରେ ମଧ ତୁମେ ଯେଉଁ ଲକ୍ଷ୍ୟ ଗ୍ରହଣ କରିବ, ମନର ଭାଷାରେ ତାହା ଭିନ୍ନ ନାମ ଗ୍ରହଣ କରିପାରେ; ତୁମେ ଯେଉଁ ପରିସ୍ଥିତିରେ ବଢ଼ିଛ, ଯେଉଁ ମାର୍ଗ ଗ୍ରହଣ କରିଛ, ତୁମ ପ୍ରବୃତ୍ତି ଓ ମତିଗତିର ଯେଉଁ ଧାରା – ସେହି ଅନୁଯାୟୀ ତାହା ନିରୂପିତ ହୁଏ । ତୁମର ଯଦି ଏକ ଧର୍ମଗତ ପ୍ରବୃତ୍ତି ରହିଥାଏ ତେବେ ତୁମେ ଏହି ଲକ୍ଷ୍ୟର ନାମ ଦେବ ଈଶ୍ୱର ଏବଂ ତୁମର ଆଧାତ୍ମିକ ପ୍ରୟାସକୁ ସର୍ବରୂପ ଓ ସର୍ବଭୂତରେ ଅଧିଷ୍ଠିତ ଈଶ୍ୱରଙ୍କ ସଙ୍ଗେ ଏକ ହୋଇଯିବା ଦିଗରେ ପରିଚାଳିତ ନ କରି ତୁମେ ଚାହିଁବ ବିଶ୍ୱାତୀତ ଓ ସର୍ବାତୀତ ଈଶ୍ୱରଙ୍କ ସଙ୍ଗେ ଏକତ୍ୱ ପ୍ରାପ୍ତ ହେବାକୁ । ଅନ୍ୟମାନେ ଏହି ଲକ୍ଷ୍ୟର ନାମ ଦିଅନ୍ତି ନିର୍ବିଶେଷ ପରମ ବୋଲି, କେହି କେହି କହନ୍ତି ପରମ ଆଦି ଉତ୍ସ ବୋଲି, ଆଉ କିଏ କହନ୍ତି ନିର୍ବାଣ, ପୁଣି କେତେକ ସମସ୍ତ ଜଗତକୁ ଏକ ଅସତ୍ ମାୟା ଓ ଭ୍ରାନ୍ତି ବୋଲି କହି କେବଳ ଏହାକୁହିଁ କହନ୍ତି ଏକମାତ୍ର ବାସ୍ତବତା, (ସତ୍) ଯେଉଁମାନେ ସମସ୍ତ ସୃଷ୍ଟିକୁ ମିଥ୍ୟା ବୋଲି ମନେକରନ୍ତି, ସେମାନଙ୍କ ପାଇଁ ଏହାହିଁ ଏକମାତ୍ର ସତ୍ୟ । ଏହିସବୁ ବିଭିନ୍ନ ସଂଜ୍ଞା ଭିତରୁ ପ୍ରତ୍ୟେକଟିରେ କିଛି ନା କିଛି ସତ୍ୟ ରହିଛି, କିନ୍ତୁ କୌଣସିଟି ପୂର୍ଣ୍ଣାଙ୍ଗ ନୁହେଁ, ପ୍ରକୃତ ସତ୍ୟର କେବଳ ଗୋଟିଏ ଦିଗକୁହିଁ ଏମାନେ ପ୍ରକାଶ

କରନ୍ତି । ଏ କ୍ଷେତ୍ରରେ ମଧ୍ୟ ମାନସିକ ସଂଜ୍ଞା ନିରୂପଣର ବିଶେଷ କିଛି ମୂଲ୍ୟ ନାହିଁ, ତୁମେ ଥରେ ଯେବେ ମଧ୍ୟବର୍ତ୍ତୀ ପାହାଚଗୁଡ଼ିକ ଅତିକ୍ରମ କରିଯାଇଛ ତେବେ ସର୍ବଦା ସେହି ଏକହିଁ ଅନୁଭୂତି ହୁଏ । ତେବେ ଯେକୌଣସି କ୍ଷେତ୍ରରେ ସବୁଠାରୁ ଦ୍ରୁତ ପଦ୍ଧତି ଓ ସବୁଠାରୁ ଫଳପ୍ରଦ ଆରମ୍ଭ ହେଲା ପୂର୍ଣ୍ଣ ଆତ୍ମ-ସମର୍ପଣ । ତାହା ବ୍ୟତୀତ ଲକ୍ଷ୍ୟ ସମ୍ପର୍କରେ ତୁମର ଚିନ୍ତା ଓ ଧାରଣା ସର୍ବାପେକ୍ଷା ଯେତେ ଊର୍ଦ୍ଧ୍ୱକୁ ଯାଇପାରେ— କେତେକଙ୍କ ପାଇଁ ଏହା ହେଉଛନ୍ତି ଈଶ୍ୱର, ଅନ୍ୟ କେତେକଙ୍କ ପାଇଁ ଏହା ହେଉଛି ଏକ ପୂର୍ଣ୍ଣତା— ସେହି ଲକ୍ଷ୍ୟ ନିକଟରେ ସମଗ୍ର ଆତ୍ମ-ସମର୍ପଣ ପରି ପରିପୂର୍ଣ୍ଣ ଆନନ୍ଦ ଆଉ କିଛି ନାହିଁ । ଏହି ସମର୍ପଣ ଯଦି ଅଧ୍ୟବସାୟ ଓ ଉତ୍ସାହର ସହ କରାଯାଏ ତେବେ ଏକ ମୁହୂର୍ତ୍ତ ଆସେ ଯେତେବେଳେ କି ତୁମେ ସମସ୍ତ ପ୍ରକାର ମନର ଧାରଣାକୁ ଅତିକ୍ରମ କରିଯାଅ ଏବଂ ଏପରି ଅନୁଭୂତିରେ ପହଞ୍ଚ ଯାହା ସମସ୍ତ ବର୍ଣ୍ଣନାର ଅତୀତ କିନ୍ତୁ ସତ୍ତା ଉପରେ ତାହାର ପ୍ରଭାବ ସର୍ବଦା ପ୍ରାୟ ଏକ ପ୍ରକାରର ହୋଇଥାଏ । ତୁମର ସମର୍ପଣ ଯେତିକି ଯେତିକି ପୂର୍ଣ୍ଣ ଓ ସର୍ବାଙ୍ଗୀଣ ହେବ, ତୁମେ ଯାହାଙ୍କ ନିକଟରେ ଆତ୍ମ-ନିବେଦନ କରିଛ ତାଙ୍କ ସହ ସଂପୂର୍ଣ୍ଣ ମିଳି ଏକ ହୋଇ ଯିବାକୁ ତୀବ୍ର ଆସ୍ପୃହା ଆସିବ । ଧୀରେ ଧୀରେ ଏହି ଆସ୍ପୃହା ସମସ୍ତ ପାର୍ଥକ୍ୟ ଓ ସମସ୍ତ ପ୍ରତିରୋଧକୁ ଅତିକ୍ରମ କରିଯିବ, ବିଶେଷ କରି ଯଦି ଏହା ସହିତ ଏକ ସ୍ୱତଃସ୍ଫୂର୍ତ୍ତ ଓ ତୀବ୍ର ପ୍ରେମ ରହିଥାଏ, ତେବେ ଏକତ୍ୱ ଦିଗରେ ତା'ର ଜୟଯାତ୍ରାକୁ କେହି ରୋଧ କରିପାରିବ ନାହିଁ ।

ଏହି ଏକତ୍ୱ ଏବଂ ଚୈତ୍ୟପୁରୁଷଙ୍କ ସଙ୍ଗେ ଏକତ୍ୱ ଭିତରେ ଏକ ମୌଳିକ ପ୍ରଭେଦ ରହିଛି । ଚୈତ୍ୟପୁରୁଷଙ୍କ ଏକତ୍ୱ ପ୍ରାପ୍ତିକୁ ଅଧିକରୁ ଅଧିକ ସ୍ଥାୟୀ କରାଯାଇ ପାରେ ଏବଂ କେତେକ କ୍ଷେତ୍ରରେ ଏହା ମଧ୍ୟ ଚିରସ୍ଥାୟୀ ହୋଇଯାଏ ଏବଂ ଏହାକୁ ଉପଲବ୍ଧ କରିଥିବା ବ୍ୟକ୍ତିର ବାହାର କାର୍ଯ୍ୟ କଳାପ ଯାହା ହେଉନା କାହିଁକି ଏହି ଉପଲବ୍ଧ ତାକୁ କେବେ ବି

ଛାଡ଼ି ଯାଏ ନାହିଁ । ଅନ୍ୟ କଥାରେ କହିବାକୁ ଗଲେ କେବଳ ଧ୍ୟାନ ଓ ଏକାଗ୍ରତାବେଳେ ଯେ ଏହି ଏକତ୍ୱର ଉପଲବ୍ଧି ହେବ ତାହା ନୁହେଁ, ଜୀବନର ପ୍ରତ୍ୟେକଟି ମୁହୂର୍ତ୍ତରେ, ନିଦ୍ରା ତଥା ଜାଗରଣ ସବୁ ସମୟରେ ଏହା ଅନୁଭୂତ ହେବ ।

କିନ୍ତୁ ଅନ୍ୟପକ୍ଷରେ ସମସ୍ତ ପ୍ରକାର ରୂପରୁ ମୁକ୍ତି ଓ ରୂପାତୀତ ସଙ୍ଗେ ଏକ ହୋଇଯିବାର ଉପଲବ୍ଧି ପୂରାପୂରି ସ୍ଥାୟୀ ହୋଇ ରହେ ନାହିଁ, କାରଣ ଏହା ସ୍ଥାୟୀ ହୋଇ ରହିବାର ସ୍ୱାଭାବିକ ପରିଣାମ ହେବ ଜଡ଼ ଆଧାର ଅର୍ଥାତ୍ ଶରୀରର ବିଲୟ । କେତେକ ସାଧନା-ମାର୍ଗର ମତ ଅନୁସାରେ ପୂର୍ଣ୍ଣ ଏକତ୍ୱର କୋଡ଼ିଏ ଦିନ ମଧ୍ୟରେ ଦେହର ଏହି ବିଲୟ ଅନିବାର୍ଯ୍ୟ । ତଥାପି ନିଶ୍ଚିତ ଭାବରେ ଯେ ଏପରି ଘଟିବ ଏହା ଠିକ୍ ନୁହେଁ । ଏହି ଉପଲବ୍ଧି କ୍ଷଣସ୍ଥାୟୀ ହେଲେ ମଧ୍ୟ ଚେତନା ଉପରେ ଏହାର ଯେଉଁ କ୍ରିୟା ସଂଘଟିତ ହୁଏ ତାହା କେବେ ବି ଲୋପ ପାଏ ନାହିଁ ଏବଂ ସତ୍ତାର ଆଭ୍ୟନ୍ତରୀଣ ତଥା ବାହ୍ୟ ସମସ୍ତ ସ୍ତରରେ ଏହାର ପ୍ରଭାବ ପଡ଼େ । ଅଧିକନ୍ତୁ, ଥରେ ଏହି ଏକତ୍ୱ ପ୍ରତିଷ୍ଠିତ ହେଲେ ଇଚ୍ଛାନୁସାରେ ପୁଣି ସେହି ଉପଲବ୍ଧି ମିଳିପାରେ, ଅବଶ୍ୟ ସେଥିପାଇଁ ପୂର୍ବର ସେହି ଅବସ୍ଥାରେ କିପରି ନିଜକୁ ରଖାଯାଇପାରେ ତାହା ଜାଣିବାକୁ ହେବ ।

ଅରୂପ ମଧ୍ୟରେ ଏହି ବିଲୟକୁ ପରମମୁକ୍ତି ହିସାବରେ ସେହିମାନେ ଗ୍ରହଣ କରନ୍ତି ଯେଉଁମାନଙ୍କର ସୃଷ୍ଟି ପ୍ରତି କୌଣସି ଆକର୍ଷଣ ନ ଥାଏ ଓ ଯେଉଁମାନେ ଏଠାରୁ ପଳାୟନ କରିବାକୁ ଚାହାନ୍ତି । ବର୍ତ୍ତମାନ ଅବସ୍ଥାରେ ପୃଥିବୀ ଯେ ସେମାନଙ୍କୁ କୌଣସି ସନ୍ତୋଷ ଦେଇପାରେ ନାହିଁ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କିନ୍ତୁ ଯେଉଁ ମୁକ୍ତି ଫଳରେ ପୃଥିବୀର କୌଣସି ପରିବର୍ତ୍ତନ ହେବ ନାହିଁ ବା ଯେଉଁମାନେ ଦୁଃଖ ଯନ୍ତ୍ରଣା ଭୋଗ କରୁଛନ୍ତି ସେମାନଙ୍କ ଜୀବନ ଅବସ୍ଥାରେ କୌଣସି ପରିବର୍ତ୍ତନ ହେବ ନାହିଁ, ଏପରି ମୁକ୍ତି ସେହି ବ୍ୟକ୍ତିମାନଙ୍କୁ କେବେ ବି ସନ୍ତୋଷ ଦେଇ ପାରିବ

ନାହିଁ ଯେଉଁମାନେ କେବଳ ନିଜ ପାଇଁ ଏକ ଆନନ୍ଦମୟ ଜୀବନ ଚାହାନ୍ତି ନାହିଁ, ଯେଉଁମାନେ ଏପରି ଏକ ପୃଥିବୀର ସ୍ୱପ୍ନ ଦେଖନ୍ତି ଯାହାକି ଏହାର ଆପାତ ବିଶୃଙ୍ଖଳା ଓ ଦୁର୍ଦ୍ଦଶାର ଅନ୍ତରାଳରେ ଲୁଚି ରହିଥିବା ଐଶ୍ୱର୍ଯ୍ୟ ଓ ମହିମାକୁ ପ୍ରକାଶ କରିବ । ସେମାନେ ଚାହାନ୍ତି ଯେ ସେମାନଙ୍କ ଆନ୍ତର ଆବିଷ୍କାର ଫଳରେ ଯେଉଁସବୁ ବିସ୍ମୟକର ସମ୍ପଦ ପାଇଛନ୍ତି, ସେଥିରୁ ଅନ୍ୟମନେ ମଧ ଲାଭବାନ୍ ହୁଅନ୍ତୁ । ଏଥି ନିମନ୍ତେ ଉପାୟ ମଧ ସେମାନଙ୍କୁ ଅବଗତ, କାରଣ ବର୍ତ୍ତମାନ ସେମାନେ ଆରୋହଣର ଶିଖର ଦେଶରେ ପହଞ୍ଚି ଅଛନ୍ତି ।

ରୂପମୟ ଜଗତର ସୀମାର ପରପାରରୁ ଆବାହନ କରାଯାଇ-ପାରେ ଏକ ନୂତନ ଶକ୍ତିକୁ, ଚେତନାର ଏକ ନୂତନ ସାମର୍ଥ୍ୟକୁ ଯାହାକି ଆଜିପର୍ଯ୍ୟନ୍ତ ଅଭିବ୍ୟକ୍ତ ହୋଇ ନାହିଁ ଏବଂ ଯାହାର ଆବିର୍ଭାବ ଘଟଣାର ସମସ୍ତ ଧାରାକୁ ବଦଳାଇ ଦେଇପାରେ ଏବଂ ଏକ ନୂତନ ପୃଥିବୀକୁ ଜନ୍ମ ଦେଇପାରେ । କାରଣ ଦୁଃଖ, ଯନ୍ତ୍ରଣା, ଅଜ୍ଞାନତା ଓ ମୃତ୍ୟୁ ଆଦି ସମସ୍ୟାର ଯଥାର୍ଥ ସମାଧାନ କେବେହେଲେ ପୃଥିବୀର ଦୁଃଖ ଯନ୍ତ୍ରଣା ଭିତରୁ ଆତ୍ମବିଲୟ ଦ୍ୱାରା ଅବ୍ୟକ୍ତ ଭିତରକୁ ବ୍ୟକ୍ତିଗତ ପଳାୟନ ନୁହେଁ, କିଂବା ସ୍ରଷ୍ଟାଙ୍କ ନିକଟକୁ ସମଗ୍ର ସୃଷ୍ଟିର ଏକ ଚୂଡ଼ାନ୍ତ ଓ ପୂର୍ଣ୍ଣାଙ୍ଗ ପ୍ରତ୍ୟାବର୍ତ୍ତନ ଦ୍ୱାରା ବିଶ୍ୱର ଦୁଃଖଶୋକରୁ ଏକ ସାମୂହିକ ପଳାୟନ ଯଥାର୍ଥ ସମାଧାନ ନୁହେଁ । ସୃଷ୍ଟିର ବିଲୋପ ଦ୍ୱାରା ତା'ର ସଂଶୋଧନ କରାଯାଇ ନ ପାରେ, ଆବଶ୍ୟକ ହେଉଛି ଏକ ରୂପାନ୍ତର, ଜଡ଼ର ଏକ ପୂର୍ଣ୍ଣ ରୂପାନ୍ତର । ତାହା ସାଧିତ ହେବ ପୂର୍ଣ୍ଣତା ଦିଗରେ ପ୍ରକୃତିର ଊର୍ଦ୍ଧ୍ୱାରୋହଣ ଓ ପ୍ରଗତିର ଯୁକ୍ତିଯୁକ୍ତ ଧାରାକୁ ଅବ୍ୟାହତ ରଖିବା ଦ୍ୱାରା ଏବଂ ନୂତନ ଧରଣର ଜୀବର ସୃଷ୍ଟି ଦ୍ୱାରା ମନୁଷ୍ୟ ତୁଳନାରେ ଯାହାର ଉତ୍କର୍ଷତା ପଶୁ ତୁଳନାରେ ମନୁଷ୍ୟର ଉତ୍କର୍ଷତା ସଙ୍ଗେ ତୁଳନୀୟ ହୋଇପାରେ । ଏହାହିଁ ପୃଥିବୀପୃଷ୍ଠରେ ଏକ ନୂତନ ଶକ୍ତି, ଏକ ନୂତନ ଚେତନା, ଏକ ନୂତନ ସାମର୍ଥ୍ୟ ସୃଷ୍ଟି କରିବ । ସେତେବେଳେ ମଧ ଏକ ନୂତନ ଶିକ୍ଷାର ଆରମ୍ଭ

ହେବ ଯାହାକୁ ଅତିମାନସ ଶିକ୍ଷା ବୋଲି କୁହାଯାଇପାରେ । ଏହାର ସର୍ବଶକ୍ତିମୟୀ ପ୍ରଭାବ କେବଳ ବ୍ୟକ୍ତିସତ୍ତାର ଚେତନା ଉପରେ ନୁହେଁ, ସେମାନେ ଯେଉଁ ଉପାଦାନରେ ଗଠିତ ଏବଂ ଯେଉଁ ପରିବେଶରେ ସେମାନେ ବାସ କରନ୍ତି ତା' ଉପରେ ମଧ୍ୟ କାର୍ଯ୍ୟ କରିବ ।

ଏପର୍ଯ୍ୟନ୍ତ ଆମେ ଯେଉଁସବୁ ଶିକ୍ଷା ବିଷୟରେ ଆଲୋଚନା କରିଛୁ ତାହା ନିମ୍ନରୁ ଊର୍ଦ୍ଧ୍ୱ ଆଡ଼କୁ ସତ୍ତାର ବିଭିନ୍ନ ଅଂଶର ଏକ ଊର୍ଦ୍ଧ୍ୱଗତି ଭିତର ଦେଇ ଚାଲେ । କିନ୍ତୁ ଅତିମାନସ ଶିକ୍ଷା ଠିକ୍ ଏହାର ବିପରୀତ ଭାବରେ ଊର୍ଦ୍ଧ୍ୱରୁ ନିମ୍ନ ଆଡ଼କୁ ଗତିକରେ, ଏହାର ପ୍ରଭାବ ସତ୍ତାର ଗୋଟିଏ ସ୍ତରରୁ ଅନ୍ୟ ଏକ ସ୍ତରକୁ ବିସ୍ତାର ଲାଭ କରି ଶେଷରେ ପହଞ୍ଚେ ଶରୀରରେ । ଏହି ସର୍ବଶେଷ ରୂପାନ୍ତର ଦୃଷ୍ଟିଗୋଚର ହେବା ଭଳି ଅବସ୍ଥାରେ ପହଞ୍ଚିବା ପୂର୍ବରୁ ସତ୍ତାର ଅନ୍ୟାନ୍ୟ ଆଭ୍ୟନ୍ତରୀଣ ଅଂଶର ଆବଶ୍ୟକ ରୂପାନ୍ତର ପ୍ରୟୋଜନ । ତେଣୁ ଶାରୀରିକ ରୂପ ଦେଖି ଅତିମାନସ ଉପସ୍ଥିତିକୁ ବିଚାର କରିବା ଆଦୌ ସଙ୍ଗତ ନୁହେଁ । ଶରୀରର ରୂପାନ୍ତର ଘଟିବ ସର୍ବଶେଷରେ, ସ୍ଥୂଳଶରୀରରେ ତାହାର କୌଣସି ଲକ୍ଷଣ ପ୍ରକାଶ ପାଇବାର ବହୁଦିନ ପୂର୍ବରୁ ଅତିମାନସ ଶକ୍ତି କୌଣସି ସତ୍ତା ଭିତରେ କ୍ରିୟା କରିପାରେ ।

ସଂକ୍ଷେପରେ ଏତିକି କୁହାଯାଇ ପାରେ ଯେ ଅତିମାନସ ଶିକ୍ଷାର ଫଳାଫଳ କେବଳ ମାନବିକ ପ୍ରକୃତିର ଏକ କ୍ରମବିକାଶଶୀଳ ପରିଣତି ଭିତରେ ଓ ତାହାର ଅନ୍ତର୍ନିହିତ ଶକ୍ତିଗୁଡ଼ିକର ବିକାଶ ଓ ଅଭିବୃଦ୍ଧି ଭିତରେ ସୀମାବଦ୍ଧ ହେବ ନାହିଁ । ଏହା ସମସ୍ତ ପ୍ରକୃତିକୁ ରୂପାନ୍ତରିତ କରିବ, ସମଗ୍ର ସତ୍ତାର ଆମୂଳ ରୂପାନ୍ତର ସଂଘଟିତ କରିବ ଏବଂ ଏକ ନୂତନ ଊର୍ଦ୍ଧ୍ୱାରୋହଣ ଦ୍ୱାରା ଏହା ମାନବତ୍ୱକୁ ଅତିକ୍ରମ କରିଯାଇ ଅତିମାନବତ୍ୱ ଦିଗରେ ଅଗ୍ରସର ହେବ ଯାହାର ଶେଷ ପରିଣାମ ହେଉଛି, ପୃଥିବୀପୃଷ୍ଠରେ ଏକ ଦିବ୍ୟ ଅତିମାନସ-ଜାତିର ଆବିର୍ଭାବ ।

(ବୁଲେଟିନ୍, ଫେବ୍ରୁଆରି ୧୯୫୨)

# ଚତୁର୍ବିଧ ତପସ୍ୟା
# ଓ
# ଚତୁର୍ବିଧ ମୁକ୍ତି

## (୧)

## ଶାରୀରିକ ଓ ପ୍ରାଣିକ ତପସ୍ୟା

ଯେଉଁ ପୂର୍ଣ୍ଣାଙ୍ଗ ଶିକ୍ଷା ଆମକୁ ଅତିମାନସ ଉପଲବ୍ଧି ଦିଗରେ ଅଗ୍ରସର କରାଇ ନିଏ, ତାହାର ଅନୁସରଣ ପାଇଁ ପ୍ରୟୋଜନ ହେଉଛି ଚତୁର୍ବିଧ ତପସ୍ୟା ଓ ଚତୁର୍ବିଧ ମୁକ୍ତି ।

ଅନେକ ସମୟରେ ତପସ୍ୟାକୁ ଆତ୍ମନିଗ୍ରହ ସଙ୍ଗେ ସମାନ ବୋଲି ଭୁଲ୍ କରାଯାଏ । ତପସ୍ୟା କହିଲେ ମନରେ ଆସେ ସନ୍ନ୍ୟାସୀର କୃଚ୍ଛ୍ରସାଧନା କଥା, ଯେଉଁ ସନ୍ନ୍ୟାସୀମାନେ ଦେହ, ପ୍ରାଣ ଓ ମନର କ୍ଷେତ୍ରରେ ଆଧ୍ୟାତ୍ମିକ ରୂପାନ୍ତରର ଦୁରୂହ କାର୍ଯ୍ୟଟିକୁ ଏଡ଼ାଇ ଦେବାକୁ ଚାହାନ୍ତି ଓ ଏସବୁର ରୂପାନ୍ତର ସଂପୂର୍ଣ୍ଣ ଅସମ୍ଭବ ବୋଲି ଘୋଷଣା କରି, ଆଧ୍ୟାତ୍ମିକ ପ୍ରଗତିକୁ ବ୍ୟାହତ କରୁଥିବା ବନ୍ଧନ ଓ ଅର୍ଥହୀନ ଜଞ୍ଜାଳ ହିସାବରେ ଏଗୁଡ଼ିକୁ ନିର୍ମମ ଭାବରେ ବର୍ଜନ କରନ୍ତି । ତା' ନ ହେଲେ ଅନ୍ତତଃ ମନେ କରାଯାଏ ଯେ ଦେହ, ମନ ଓ ପ୍ରାଣ ଆଦିର ସଂଶୋଧନ ଅସମ୍ଭବ ଏବଂ ପ୍ରକୃତି ବା ଭଗବାନଙ୍କ କୃପାରୁ ମୃତ୍ୟୁ ଫଳରେ ଏସବୁଥିରୁ ତ୍ରାହି ନ ମିଳିବା ପର୍ଯ୍ୟନ୍ତ ଉଣା ଅଧିକେ ଆନନ୍ଦର ସହିତ ସେଗୁଡ଼ିକୁ ବୋଝସ୍ୱରୂପ କୌଣସିମତେ ବହନ କରିବାକୁ ହେବ, କିଂବା ଅତିବେଶୀରେ ପାର୍ଥିବ ଜୀବନକୁ ନିଜର ପ୍ରଗତି ପାଇଁ କେବଳ ଏକ କ୍ଷେତ୍ର ବୋଲି ମନେ କରାଯାଏ ଏବଂ ତାହାକୁ ଯଥାସମ୍ଭବ କାର୍ଯ୍ୟରେ ଲଗାଇ, ଯଥାଶୀଘ୍ର ନିଜର ଏପରି ଏକ ପୂର୍ଣ୍ଣତା

ପାଇଁ ଲକ୍ଷ୍ୟ ରଖାଯାଏ ଯେତେବେଳେ ସେଗୁଡ଼ିକ ସଂପୂର୍ଣ୍ଣ ଅନାବଶ୍ୟକ ହୋଇପଡ଼ିବେ ଏବଂ ସମସ୍ତ ସମସ୍ୟାର ସମାଧାନ ହୋଇଯିବ ।

କିନ୍ତୁ ଆମ ପାଇଁ ସମସ୍ୟାଟି ସଂପୂର୍ଣ୍ଣ ଭିନ୍ନ । ଆମର ବିଚାରରେ ପାର୍ଥିବ ଜୀବନ କେବଳ ଏକ ଚାଲିବାର ପଥ ବା ଉପାୟ ମାତ୍ର ନୁହେଁ, ରୂପାନ୍ତର ଫଳରେ ଏହା ହୋଇଉଠିବ ଏକ ଲକ୍ଷ୍ୟ ଏବଂ ସିଦ୍ଧି । ଆମେ ଯେତେବେଳେ ତପସ୍ୟା କଥା କହୁ, ତାହା ଶରୀର ପ୍ରତି କୌଣସି ବିତୃଷ୍ଣା ଭାବ ନେଇ ନିଜକୁ ତହିଁରୁ ପୃଥକ୍ ରଖିବା ଅର୍ଥରେ ନୁହେଁ, ଆତ୍ମସଂଯମ ଓ ଆତ୍ମକର୍ତ୍ତୃତ୍ୱର ପ୍ରୟୋଜନ ଅର୍ଥରେହିଁ କୁହାଯାଇଥାଏ । କାରଣ ଏପରି ଏକ ତପସ୍ୟା ଅଛି ଯାହାକି ସନ୍ନ୍ୟାସୀମାନେ କରୁଥିବା ସମସ୍ତ ତପସ୍ୟାଠାରୁ ଅନେକ ଗୁଣରେ ମହତ୍ତର, ପୂର୍ଣ୍ଣତର ଓ କଠିନତର । ତାହା ହେଉଛି ପୂର୍ଣ୍ଣାଙ୍ଗ ରୂପାନ୍ତର ନିମନ୍ତେ ଆବଶ୍ୟକ ହେଉଥିବା ତପସ୍ୟା, ସେହି ଚତୁର୍ବିଧ ତପସ୍ୟା ଯାହା ଅତିମାନସ ସତ୍ୟର ଅଭିବ୍ୟକ୍ତି ପାଇଁ ବ୍ୟକ୍ତିକୁ ପ୍ରସ୍ତୁତ କରେ । ଉଦାହରଣସ୍ୱରୂପ କୁହାଯାଇପାରେ ଯେ ଶରୀରର ପୂର୍ଣ୍ଣତା ପାଇଁ ଆବଶ୍ୟକ ହେଉଥିବା ବ୍ୟାୟାମ ଆଦି ଶାରୀରିକ ଚର୍ଚ୍ଚା ପରି ଖୁବ୍ କମ୍ କଠୋର ତପସ୍ୟା ଅଛି । କିନ୍ତୁ ସେ ବିଷୟ ଆମେ ଯଥାସ୍ଥାନରେ କହିବୁ ।

ଆବଶ୍ୟକ ଚତୁର୍ବିଧ ତପସ୍ୟା ବିଷୟରେ କହିବା ପୂର୍ବରୁ ମୁଁ ଗୋଟିଏ ବିଷୟ ସ୍ପଷ୍ଟ କରିଦେବାକୁ ଚାହେଁ, ଯାହା ସମ୍ପର୍କରେ ଅଧିକାଂଶ ଲୋକଙ୍କର ନାନାପ୍ରକାର ବିଭ୍ରାନ୍ତି ଓ ଭୁଲ୍ ଧାରଣା ରହିଛି : ତାହା ହେଉଛି କୃଚ୍ଛ୍ରସାଧନାକୁ ଆଧ୍ୟାତ୍ମିକ ଶୃଙ୍ଖଳା ବୋଲି ଭୁଲ୍ କରିବା । ଏହି କୃଚ୍ଛ୍ରସାଧନାର ପଦ୍ଧତି ହେଲା ଶରୀରକୁ ପୀଡ଼ା ଓ କଷ୍ଟଦେବା, ଯାହା ଫଳରେ ସେମାନଙ୍କ ମତରେ ଶରୀର-କବଳରୁ ଆତ୍ମାର ମୁକ୍ତି ମିଳିବ, କିନ୍ତୁ ପ୍ରକୃତରେ ଏଗୁଡ଼ିକ ହେଲା ଅଧ୍ୟାତ୍ମ ସାଧନାର ଏକ ଇନ୍ଦ୍ରିୟାନୁଭୂତିମୂଳକ ବିକୃତି । ଯନ୍ତ୍ରଣାଭୋଗ ପାଇଁ ଏହା ଏକ ବିକୃତ ପ୍ରୟୋଜନୀୟତା, ଏକ ଦୁଃଖବିଳାସ ଯାହା ସନ୍ନ୍ୟାସୀମାନଙ୍କୁ ଆତ୍ମନିଗ୍ରହ ଦିଗରେ ପ୍ରେରଣା ଯୋଗାଏ । ସାଧୁର

କଣ୍ଟକ-ଶଯ୍ୟା, କିଂବା ଖ୍ରୀଷ୍ଟିଆନ୍ ତପସ୍ୱୀର ଚାବୁକ୍ ଓ ରୁକ୍ଷ ବସନ ପଛରେ ଅଛି ଏକ ବିକୃତ ଦୁଃଖବାଦ ଓ ଆତ୍ମପୀଡ଼ନର ପ୍ରବୃତ୍ତି, ଯାହା ଊଣା-ଅଧିକେ ପ୍ରଚ୍ଛନ୍ନ, ଅପ୍ରକାଶ୍ୟ ଓ ଅବକ୍ତବ୍ୟ ହୋଇ ରହିଥାଏ । ଏହା ଏକ ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ତୃଷ୍ଣା, ତୀବ୍ର ଓ ଉଗ୍ର ଇନ୍ଦ୍ରିୟବିଳାସ ପାଇଁ ଅବଚେତନାରେ ଯେଉଁ କାମନା ରହିଥାଏ ଏହା ତାହାର ଏକ ପରିଣାମ । ପ୍ରକୃତପକ୍ଷେ ଏସବୁ ଆଧ୍ୟାତ୍ମିକ ଜୀବନଠାରୁ ବହୁ ଦୂରରେ, ଏଗୁଡ଼ିକ ଅତ୍ୟନ୍ତ କୁତ୍ସିତ ଓ ହୀନ, ରୁଗ୍ଣ ଓ ତମସାଚ୍ଛନ୍ନ । ଆଧ୍ୟାତ୍ମିକ ଜୀବନ ହେଉଛି ଏହାର ଠିକ୍ ବିପରୀତ– ଆଲୋକ ଓ ସମତ୍ୱରେ, ସୌନ୍ଦର୍ଯ୍ୟ ଓ ଆନନ୍ଦରେ ପରିପୂର୍ଣ୍ଣ ଏକ ଜୀବନ । ଶରୀର ଉପରେ ଚାଲିଥିବା ମାନସିକ ଓ ପ୍ରାଣିକ ନିଷ୍ଠୁରତାହିଁ ହେଉଛି ଏହିସବୁ ବିକୃତ ଜିନିଷର ସ୍ରଷ୍ଟା ଓ ଉତ୍ସାହଦାତା । କିନ୍ତୁ ନିଷ୍ଠୁରତା, ତାହା ନିଜର ଶରୀର ସମ୍ପର୍କରେ ହେଲେ ମଧ୍ୟ, ତାହାକୁ ନିଷ୍ଠୁରତା ବ୍ୟତୀତ ଅନ୍ୟ କିଛି କୁହାଯିବ ନାହିଁ, ଏବଂ ସମସ୍ତ ନିଷ୍ଠୁରତା ହେଉଛି ଏକ ବିରାଟ ଅଚେତନାର ଲକ୍ଷଣ । ଅଚେତନ ପ୍ରକୃତି ସବୁବେଳେ ଉଗ୍ର ଓ ତୀବ୍ର ଅନୁଭୂତିସବୁ ଚାହେଁ, ସେପରି ନ ହେଲେ ତାକୁ ସନ୍ତୋଷ ମିଳେ ନାହିଁ; ନିଷ୍ଠୁରତା ହେଉଛି ଦୁଃଖବିଳାସ ଓ ଆତ୍ମପୀଡ଼ନର ଏକ ରୂପ, ତେଣୁ ସେ ଏଥିରୁ ଉତ୍କଟ ଅନୁଭୂତିର ସନ୍ତୋଷ ପାଏ । ଏହି ସବୁ ପ୍ରକ୍ରିୟାର ପ୍ରଧାନ ଉଦ୍ଦେଶ୍ୟ ହେଲା ସମସ୍ତ ଅନୁଭୂତିର ବିଲୋପ ଘଟାଇବା, ଯାହା ଫଳରେ କି ଆତ୍ମାର ଉର୍ଦ୍ଧ୍ୱଗମନରେ ଶରୀର କୌଣସି ବାଧା ଦେବ ନାହିଁ । ଏହି ପନ୍ଥାର ଫଳପ୍ରଦତା ସମ୍ପର୍କରେ ସନ୍ଦେହର ଯଥେଷ୍ଟ ଅବକାଶ ରହିଛି । ଏହା ଏକ ଜଣାଶୁଣା କଥା ଯେ ନିଜର ଅଗ୍ରଗତିକୁ ଦ୍ରୁତତର କରିବାକୁ ଚାହୁଁଥିଲେ ବାଧାବିଘ୍ନକୁ ଭୟ କଲେ ଚଳିବ ନାହିଁ, ବରଂ ବିପରୀତ ପକ୍ଷେ କଠିନ କାର୍ଯ୍ୟଟିକୁ ବାଛିନେବା ଦ୍ୱାରା ପ୍ରତିଥର ନିଜର ସଂକଳ୍ପକୁ ଦୃଢ଼ କରିବାକୁ ଓ ସ୍ନାୟୁକୁ ଆହୁରି ଶକ୍ତ ଓ ସମର୍ଥ କରିବା ପାଇଁ ଏକ ସୁଯୋଗ ଉପସ୍ଥିତ ହୁଏ । ବସ୍ତୁତଃ ଭୋଗର ଆତିଶଯ୍ୟ

ଓ ତା'ର ପରିଣାମ-ମୋହକୁ ଜୟ କରିବାକୁ ଯାଇ ତ୍ୟାଗର ଅତିଶଯ୍ୟ ଓ ତା'ର ପରିଣାମ-ବିଲୁପ୍ତିରେ ଆଶ୍ରୟ ନେବା ଅପେକ୍ଷା ଏକ ସୁନ୍ଦର, ସୂକ୍ଷ୍ମ ଓ ସ୍ୱଚ୍ଛ ଜୀବନ ଯାପନ କରିବା ଅଧିକ କଷ୍ଟକର । ଶରୀର ଉପରେ ଅତ୍ୟାଚାର କରି ତାକୁ ଦରିଦ୍ର ଓ ଅଥର୍ବ କରିଦେବା ଅପେକ୍ଷା, ପ୍ରଶାନ୍ତି ଓ ସରଳତା ଭିତରେ ନିଜ ଦେହ-ସତ୍ତାର ଏକ ସମନ୍ୱୟ ଓ ବିକାଶମୂଳକ ଅଭିବୃଦ୍ଧି ଅନେକ ବେଶୀ କଷ୍ଟକର । ଗର୍ବର ସହ ନିଜର ବୈରାଗ୍ୟକୁ ଦେଖାଇ ହେବା ପାଇଁ ଶରୀରକୁ ତା'ର ଅପରିହାର୍ଯ୍ୟ ପୁଷ୍ଟି ଓ ପରିଚ୍ଛନ୍ନ ଅଭ୍ୟାସରୁ ବଞ୍ଚିତ କରିବା ଅପେକ୍ଷା ଏକ ଧୀର, ଶାନ୍ତ ଓ ନିଷ୍କାମ ଜୀବନ ଯାପନ କରିବା ଅନେକ ବେଶୀ କଷ୍ଟକର । ପୁନଶ୍ଚ ବ୍ୟାଧି ପ୍ରତି କୌଣସି ଦୃଷ୍ଟି ନ ଦେଇ ତାକୁ ତୁଚ୍ଛ ମନେ କରିବା ଏବଂ ତାହାର ସର୍ବନାଶୀ କ୍ରିୟାକୁ ଅବାଧରେ ଚାଲିବାକୁ ଛାଡ଼ିଦେବା ଅପେକ୍ଷା ତହାର କବଳରେ ନ ପଡ଼ିବା ଏବଂ ଅନ୍ତର ତଥା ବାହାରର ଏକ ପବିତ୍ରତା, ସମତା ଓ ସମନ୍ୱୟ ଦ୍ୱାରା ତାହାକୁ ଅତିକ୍ରମ କରିବା ଓ ଜୟ କରିବା ଅନେକ ବେଶୀ କଷ୍ଟସାଧ୍ୟ । ଏବଂ ସବୁଠାରୁ କଷ୍ଟକର ବିଷୟ ହେଲା ଚେତନାକୁ ସର୍ବଦା ତା'ର ଶକ୍ତି ଓ କ୍ଷମତାର ଉଚ୍ଚତମ ଶିଖରରେ ରଖିବା ପାଇଁ ସମର୍ଥ ହେବା ଏବଂ ଶରୀରକୁ କୌଣସି ନିମ୍ନତର ପ୍ରେରଣାର ବଶବର୍ତ୍ତୀ ହୋଇ କାର୍ଯ୍ୟ କରିବାକୁ ନ ଦେବା ।

ଏହି ଲକ୍ଷ୍ୟକୁ ଆଖି ଆଗରେ ରଖି ଆମକୁ ଚତୁର୍ବିଧ ତପସ୍ୟା ଆଚରଣ କରିବାକୁ ହେବ ଯାହାର ପରିଣାମ ହେଉଛି ଚତୁର୍ବିଧ ମୁକ୍ତି । ଏହାର ସାଧନା ପାଇଁ ଯେଉଁ ଚାରି ପ୍ରକାର ଶୃଙ୍ଖଳା ବା ତପସ୍ୟା ଆବଶ୍ୟକ ସେଗୁଡ଼ିକ ନିମ୍ନମତେ ନିର୍ଦ୍ଧାରିତ କରାଯାଇପାରେ :

(୧) ପ୍ରେମର ତପସ୍ୟା
(୨) ଜ୍ଞାନର ତପସ୍ୟା
(୩) ଶକ୍ତିର ତପସ୍ୟା
(୪) ସୌନ୍ଦର୍ଯ୍ୟର ତପସ୍ୟା

ଯେଉଁ କ୍ରମରେ ଏହା ରଖାଯାଇଛି ତାହା ଉପରୁ ତଳ ଆଡ଼କୁ । କିନ୍ତୁ ଏଥିରୁ ଯେପରି ଧାରଣା ନ ହୁଏ ଯେ ଏଥିମଧ୍ୟରୁ କେହି କାହା ଅପେକ୍ଷା ଉତ୍କୃଷ୍ଟ ବା ନିକୃଷ୍ଟ, ଅଥବା କମ୍ କିଂବା ବେଶୀ କଷ୍ଟସାଧ ବା ଏହି କ୍ରମରେହିଁ ଏହି ତପସ୍ୟାକୁ ଅନୁସରଣ କରାଯାଇପାରେ ଏବଂ କରାଯିବା ଉଚିତ । ବ୍ୟକ୍ତି ଉପରେହିଁ ନିର୍ଭର କରେ କ୍ରମ, ଗୁରୁତ୍ୱ ଓ ବାଧାବିଘ୍ନରେ ତାରତମ୍ୟର ପ୍ରଶ୍ନ ଏବଂ ଏସମ୍ପର୍କରେ କୌଣସି ନିର୍ଦ୍ଦିଷ୍ଟ ନିୟମ ବାନ୍ଧି ଦିଆଯାଇ ପାରିବ ନାହିଁ । ପ୍ରତ୍ୟେକ ବ୍ୟକ୍ତି ତା'ର ବ୍ୟକ୍ତିଗତ ପ୍ରୟୋଜନ ଓ କ୍ଷମତା ଅନୁଯାୟୀ ନିଜ ପାଇଁ ଏକ ବ୍ୟବସ୍ଥା ଓ ପଦ୍ଧତି ସ୍ଥିର କରିବା ଉଚିତ ।

ଏଠାରେ କେବଳ ଯେତେଦୂର ସମ୍ଭବ ପୂର୍ଣ୍ଣାଙ୍ଗ ଏକ ଆଦର୍ଶ ପଦ୍ଧତି ସମ୍ପର୍କରେ ଏକ ମୋଟାମୋଟି ବର୍ଣ୍ଣନା ଦିଆଯିବ । ତେଣିକି ପ୍ରତ୍ୟେକ ବ୍ୟକ୍ତିକୁ ସ୍ଥିର କରିବାକୁ ହେବ କେତେ ପରିମାଣରେ ଓ କେଉଁ ଭାବରେ ସେ ଏହାର ପ୍ରୟୋଗ କରିବ ।

ସୌନ୍ଦର୍ଯ୍ୟର ତପସ୍ୟା ବା ସାଧନା ଆମକୁ ଦୈହିକ ସଂଯମ ଭିତର ଦେଇ କର୍ମରେ ମୁକ୍ତି ଆଡ଼କୁ ଘେନିଯିବ । ଏ ସମ୍ପର୍କରେ ମୂଳ କାର୍ଯ୍ୟ ହେଲା ଏପରି ଏକ ଦେହ ଗଢ଼ିବା, ଯେ କି ପ୍ରକୃତିରେ ସୁନ୍ଦର, ଭଙ୍ଗୀରେ ସୁଢଳ; ଗତିବିଧିରେ ସହଜ ଓ ସାବଲୀଳ, କ୍ରିୟାପଳାପରେ ସମର୍ଥ ଓ ଶକ୍ତିମାନ୍ ଏବଂ ଯାହାର ସ୍ୱାସ୍ଥ୍ୟ ଓ ଅଙ୍ଗପ୍ରତ୍ୟଙ୍ଗ ତଥା ଇନ୍ଦ୍ରିୟମାନେ ଖୁବ୍ ସୁଦୃଢ଼ ଓ ସବଳ ।

ସାଧାରଣତଃ ଏହିସବୁ ଫଳ ପାଇବାକୁ ହେଲେ ଉତ୍ତମ ଅଭ୍ୟାସସବୁ ଗଠନ କରିବା ଏବଂ ଦୈହିକ ଜୀବନକୁ ସଙ୍ଗଠିତ କରିବା ପାଇଁ ସେଗୁଡ଼ିକର ସହାୟତା ନେବା ଖୁବ୍ ଭଲ । କାରଣ ଏକ ନିୟମବନ୍ଧା ନିର୍ଘଣ୍ଟ ଅନୁସାରେ ଚଳିଲେ ଶରୀର ଅପେକ୍ଷାକୃତ ସହଜ ଭାବରେ କାର୍ଯ୍ୟ କରିପାରେ । ତଥାପି ଦୃଷ୍ଟି ଦେବାକୁ ହେବ ଜଣେ ଯେପରି ନିଜ ଅଭ୍ୟାସର ଦାସ ହୋଇ ନ ଯାଏ, ସେ ଅଭ୍ୟାସ ଯେତେ ଭଲ ହେଉ ପଛେ । ସର୍ବାଧିକ

ନମନୀୟତା ବଜାୟ ରଖିବାକୁ ହେବ ଯେପରି କି ଯେତେଥର ଦରକାର ହେବ ସେହି ଅନୁଯାୟୀ ନିଜ ଅଭ୍ୟାସକୁ ମଧ୍ୟ ପରିବର୍ତ୍ତିତ କରି ହେଉଥିବ ।

ସୁଦୃଢ଼ ଓ ନମନୀୟ ପେଶୀ ସଙ୍ଗରେ ଗଢ଼ିବାକୁ ହେବ ଇସ୍ପାତର ସ୍ନାୟୁ, ଯାହାକି ପ୍ରୟୋଜନ ହେଲେ ସବୁକିଛିକୁ ସହ୍ୟ କରିବାକୁ ସମର୍ଥ ହେବ । କିନ୍ତୁ ତହିଁ ସଙ୍ଗେ ସଙ୍ଗେ ମନେ ରଖିବାକୁ ହେବ ଯେ ଉନ୍ନତି ଓ ଅଭିବୃଦ୍ଧି ପାଇଁ ଯେତିକି ଶକ୍ତି ଆବଶ୍ୟକ, ତା’ ଅପେକ୍ଷା ଅତିରିକ୍ତ ଶ୍ରମ ପାଇଁ ଯେପରି ଶରୀର ପାଖରେ ଦାବି କରା ନ ହୁଏ । ଯାହାସବୁ କ୍ଳାନ୍ତି ଓ ଅବସାଦ ଆଣିଦିଏ ଏବଂ ଶେଷରେ ଦେହଗତ ଉପାଦାନର କ୍ଷୟ ଓ ବିନାଶର କାରଣ ହୁଏ ସେସବୁକୁ ମଧ୍ୟ ଖୁବ୍ ଦୃଢ଼ଭାବରେ ପ୍ରତ୍ୟାଖ୍ୟାନ କରିବାକୁ ହେବ ।

ଯେଉଁ ଶାରୀରିକ ଶିକ୍ଷାର ଲକ୍ଷ୍ୟ ହେଲା ଏକ ଉଚ୍ଚତର ଚେତନାର ଉପଯୁକ୍ତ ବାହନ ହିସାବରେ ଏହି ଦେହକୁ ଗଢ଼ିବା, ସେଥିନିମନ୍ତେ ତାହାକୁ କଠୋର ସଂଯମ ଓ ଅଭ୍ୟାସସବୁକୁ ଆୟତ୍ତ କରିବାକୁ ହେବ; ନିଦ୍ରା, ଖାଦ୍ୟ, ବ୍ୟାୟାମ ଓ ଅନ୍ୟାନ୍ୟ ସମସ୍ତ କାର୍ଯ୍ୟରେ ଖୁବ୍ ନିୟମିତ ହେବାକୁ ହେବ । ପ୍ରତ୍ୟେକ ବ୍ୟକ୍ତି ଖୁବ୍ ସାବଧାନତାର ସହ ନିଜ ଶରୀରର ପ୍ରୟୋଜନସବୁକୁ ଅନୁଧ୍ୟାନ କରିବା ଆବଶ୍ୟକ— କାରଣ ବିଭିନ୍ନ ବ୍ୟକ୍ତିଙ୍କ ପାଇଁ ଏହି ପ୍ରୟୋଜନ ମଧ୍ୟ ଭିନ୍ନ ଭିନ୍ନ ହୁଏ— ଏବଂ ତା’ପରେ ଏକ ସାଧାରଣ କର୍ମସୂଚୀ ସ୍ଥିର କରିନେବାକୁ ହେବ । ଏହି କର୍ମସୂଚୀ ଥରେ ସ୍ଥିର ହୋଇଗଲେ ତାହାକୁ ଖୁବ୍ ନିଷ୍ଠାର ସହ ପାଳନ କରିବା ଉଚିତ, କୌଣସି ଖିଆଲ ବା ଶୈଥିଲ୍ୟକୁ ପ୍ରଶ୍ରୟ ଦେବା ଉଚିତ ନୁହେଁ । ‘ମାତ୍ର ଏଇ ଥରକ’ ବୋଲି କହି କୌଣସି ନିୟମକୁ ଭାଙ୍ଗିବା ଉଚିତ ନୁହେଁ, କାରଣ ବରାବର ଏହାର ପୁନରାବୃତ୍ତି ଘଟିବ ଏବଂ ‘ଥରକ’ ପାଇଁ ତୁମେ ପ୍ରଲୋଭନ ପାଖରେ ହାର୍ ମାନିବା ଅର୍ଥ ନିଜ ସଙ୍କଳ୍ପ- ଶକ୍ତିକୁ ଦୁର୍ବଳ କରି ପକାଇବା ଏବଂ ସବୁପ୍ରକାର ପରାଜୟର ଦ୍ୱାର ଖୋଲିଦେବା ।

ଯେଉଁସବୁ ନୈଶ୍ୟ ଅଭିଯାନରୁ ତୁମକୁ ସଂପୂର୍ଣ୍ଣ ଭଗ୍ନ ଓ ବିପର୍ଯ୍ୟସ୍ତ ହୋଇ ଫେରି ଆସିବାକୁ ହୁଏ, ଯେଉଁସବୁ ଭୋଜି ଓ ଆହାର ତୁମର ପାକସ୍ଥଳୀର ସ୍ୱାଭାବିକ କ୍ରିୟାକୁ ବ୍ୟାହତ କରେ, ସେସବୁକୁ ବନ୍ଦ କରିବାକୁ ହେବ; ଯେଉଁସବୁ ପ୍ରଲୋଭନ, ଆମୋଦପ୍ରମୋଦ, ଉତ୍ସବ-ଉଲ୍ଲାସ ଆଦି ତୁମ ଶକ୍ତିର ଅପଚୟ ଘଟାଏ, ତୁମକୁ ଦୁର୍ବଳ କରିଦିଏ ଏବଂ ଦୈନନ୍ଦିନ କାର୍ଯ୍ୟରେ ବିଘ୍ନ ଘଟାଏ, ସେସବୁକୁ ବନ୍ଦ କରିବାକୁ ହେବ । ଏକ ସଂଯତ, ବିଜ୍ଞ ଓ ସୁନିୟମିତ ଜୀବନ ଯାପନ କରି ଏକ ଯଥାସମ୍ଭବ ପୂର୍ଣ୍ଣ ଓ ନିଖୁଣ ଶରୀର ଗଠନ କରିବା ଦିଗରେ ସମସ୍ତ ଦୈହିକ ମନୋଯୋଗକୁ ଲଗାଇବାକୁ ପଡ଼ିବ । ଏହି ମହାନ୍ ଲକ୍ଷ୍ୟରେ ପହଞ୍ଚିବାକୁ ହେଲେ ଆମକୁ ଛୋଟବଡ଼ ସବୁପ୍ରକାର ଉଚ୍ଛୃଙ୍ଖଳତା ଓ ଅନାଚାରକୁ କଠୋର ଭାବରେ ତ୍ୟାଗ କରିବାକୁ ପଡ଼ିବ; ତମାଖୁ ଓ ମଦ୍ୟପାନ ଆଦିକୁ ସଂପୂର୍ଣ୍ଣ ଛାଡ଼ିବାକୁ ପଡ଼ିବ, କାରଣ ଏହା ଧୀରେ ଧୀରେ କ୍ରିୟା କରୁଥିବା ଏକପ୍ରକାର ବିଷ, ଏବଂ ମଣିଷର ଅଭ୍ୟାସ ହେଉଛି ଏହାର ସେବନ ଓ ବ୍ୟବହାରକୁ ବଢ଼ାଇ ଏକ ଅପରିହାର୍ଯ୍ୟ ପ୍ରୟୋଜନରେ ପରିଣତ କରିବା, ଯାହାର ପରିଣାମ ହେଉଛି ସଙ୍କଳ୍ପ ଓ ସ୍ମୃତିଶକ୍ତିର ବିଲୋପ । ପ୍ରାୟ ସମସ୍ତ ଲୋକ, ଏପରିକି ଅଧିକାଂଶ ବୁଦ୍ଧିଜୀବି ବି ଖାଦ୍ୟ ପ୍ରତି ଅତ୍ୟଧିକ ଆସକ୍ତ ଏବଂ ଏହାର ସୁସ୍ୱାଦୁ ପ୍ରସ୍ତୁତି ଓ ଭୋଜନରେ ବିଶେଷ ଆଗ୍ରହ ପ୍ରକାଶ କରିଥାଆନ୍ତି । କିନ୍ତୁ ଏହା ବଦଳରେ ଆମର ଦେହର ପ୍ରୟୋଜନୀୟତା ସମ୍ପର୍କରେ ପ୍ରାୟ ଏକ ରାସାୟନିକ ଜ୍ଞାନ ରହିବା ଆବଶ୍ୟକ ଏବଂ ତାହା ପୂରଣ କରିବାବେଳେ ଏକ ବୈଜ୍ଞାନିକ ସଂଯମ ରହିବା ଉଚିତ । ଏହି ଖାଦ୍ୟର ସଂଯମ ସହିତ ନିଦ୍ରାର ସଂଯମକୁ ଯୋଗ କରିବା ଉଚିତ । ଏହାର ଅର୍ଥ ନୁହେଁ ନିଦ୍ରାକୁ ସଂପୂର୍ଣ୍ଣ ବର୍ଜନ କରିବାକୁ ହେବ, କିନ୍ତୁ କିପରି ନିଦ୍ରାଯିବାକୁ ହୁଏ ତାହା ଜାଣିବା ଉଚିତ । ନିଦ୍ରା ଯେପରି ଅଚେତନ ଭିତରେ ବୁଡ଼ିଯିବା ନ ହୁଏ, ଯାହାକି ଶରୀରକୁ ପ୍ରଫୁଲ୍ଲ କରିବା ପରିବର୍ତ୍ତେ ଭାରୀ କରିପକାଏ ।

ସ୍ୱଳ୍ପ ଆହାର ଓ ସବୁପ୍ରକାର ଅନାଚାର ଓ ଆତିଶଯ୍ୟର ବର୍ଜନ ଫଳରେ ଘଣ୍ଟା ପରେ ଘଣ୍ଟା ଶୋଇ ରହିବାର ଆବଶ୍ୟକତା ଅନେକ ପରିମାଣରେ କମିଯାଏ । ଅବଶ୍ୟ ସମୟର ପରିମାଣ ଅପେକ୍ଷା ନିଦ୍ରାର ଗୁଣ ବା ଚରିତ୍ର ହେଉଛି ଅଧିକ ଗୁରୁତ୍ୱପୂର୍ଣ୍ଣ । ନିଦ୍ରାରେ ଫଳପ୍ରଦ ଶାନ୍ତି ଓ ବିଶ୍ରାମ ପାଇବାକୁ ଚାହୁଁଥିଲେ ବିଛଣାକୁ ଯିବା ପୂର୍ବରୁ ସାମାନ୍ୟ କିଛି ଖାଇନେବା ଉଚିତ, ଯଥା– କପେ ଗରମ ଦୁଧ ବା ସୁପ୍ ବା ଫଳରସ ଇତ୍ୟାଦି । ଲଘୁ ଆହାର ଫଳରେ ନିଦ୍ରା ଶାନ୍ତିପୂର୍ଣ୍ଣ ହୁଏ । ଯାହା ହେଲେ ବି ଅତ୍ୟଧିକ ଆହାରରୁ ଆମକୁ ବିରତ ହେବାକୁ ହେବ; କାରଣ ତାହା ଫଳରେ ନାନା ଉତ୍ତେଜନା, ଅସ୍ଥିରତା, ଦୁଃସ୍ୱପ୍ନ ଆଦିରେ ନିଦ୍ରାର ବ୍ୟାଘାତ ଘଟିବ; ନହେଲେ ନିତାନ୍ତ ତାମସିକତା, ଜଡ଼ତା ଓ ଗୁରୁତାରେ ଏହା ଆଛନ୍ନ ହେବ । ସବୁଠୁ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଲା ମନକୁ ପରିଷ୍କାର ରଖିବା, ହୃଦୟାବେଗକୁ ତଥା ବାସନାର ବିକ୍ଷୋଭ ଓ ଆନୁଷଙ୍ଗିକ ବ୍ୟସ୍ତତା ଆଦିକୁ ଶାନ୍ତ କରିବା । ଯଦି ଶୋଇବାକୁ ଯିବା ପୂର୍ବରୁ ବହୁତ କଥା କହିଥାଅ, ଖୁବ୍ ଉତ୍ତେଜନାପୂର୍ଣ୍ଣ ଆଲୋଚନା କରିଥାଅ ବା ଅତ୍ୟଧିକ ଚିତ୍ତାକର୍ଷକ ବା ଉତ୍ତେଜନାମୂଳକ କୌଣସି ବହି ପଢ଼ିଥାଅ, ତେବେ ଶୋଇବା ପୂର୍ବରୁ କିଛି ସମୟ ବିଶ୍ରାମ ନେବା ଭଲ । ତାହା ଦ୍ୱାରା ମନ ଅନେକଟା ଶାନ୍ତ ହେବ ଏବଂ ଦେହର ଅଙ୍ଗପ୍ରତ୍ୟଙ୍ଗ ଶୋଇଥିବାବେଳେ ମସ୍ତିଷ୍କରେ ନାନା ବିଶୃଙ୍ଖଳା ଓ ଅରାଜକତାର କ୍ରିୟା ନ ଚାଲି ତାହା ସ୍ଥିର ରହିବ । ଯଦି ଧ୍ୟାନର ଅଭ୍ୟାସ ଥାଏ ତେବେ ଏକ ବିଶାଳ ଓ ବ୍ୟାପକ ଚେତନା ପ୍ରତି ଆସ୍ପୃହା ସହ କୌଣସି ଉଚ୍ଚତର ଶାନ୍ତିପ୍ରଦ ବିଷୟ ଉପରେ କେତେକ ମିନିଟ୍ ଏକାଗ୍ର ହୁଅ । ଏହା ଦ୍ୱାରା ତୁମ ନିଦ୍ରାରେ ବହୁତ ଉପକାର ପାଇବ, ଏବଂ ନିଦ୍ରା ଅବସ୍ଥାରେ ଅଚେତନତାର ଗହ୍ୱର ଭିତରକୁ ପଡ଼ିଯିବାର ଭୟରୁ ଅନେକଟା ରକ୍ଷା ମିଳିବ ।

ଏହିସବୁ ସଂଯମ ଫଳରେ ପୂର୍ଣ୍ଣ ବିଶ୍ରାମ ଓ ଶାନ୍ତିମୟ ନିଦ୍ରାରେ ରାତ୍ରିଟି ଅତିବାହିତ ହେଲା ପରେ ଦିବସର ସଂଯମ ବିଷୟ ଉଠୁଛି ଏବଂ

ଏହାକୁ ବିଜ୍ଞତାର ସହ ସଙ୍ଗଠିତ କରିବାକୁ ହେବ । ଦିବସର କାର୍ଯ୍ୟକୁ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ— ଗୋଟିଏ ହେଉଛି ଶରୀରର ପୁଷ୍ଟି ଓ ଚର୍ଚ୍ଚା ପାଇଁ ସୁଚିନ୍ତିତ, କ୍ରମବିକାଶମୂଳକ ଏକ ବ୍ୟାୟାମର କାର୍ଯ୍ୟକ୍ରମ ଏବଂ ଅନ୍ୟଟି ହେଉଛି ତୁମେ ଯେଉଁ ଧରଣର କାର୍ଯ୍ୟ ହାତକୁ ନେଇଥାଅ ଅର୍ଥାତ୍ ପ୍ରତିଦିନର କର୍ତ୍ତବ୍ୟକର୍ମ । ଏ ଦୁଇଟିକୁ ଶାରୀରିକ ତପସ୍ୟାର ଏକ ଅଙ୍ଗ ହିସାବରେ ଅନ୍ତର୍ଭୁକ୍ତ କରାଯାଇପାରେ । ପ୍ରତ୍ୟେକେ ନିଜର ଶରୀର ପାଇଁ ଯାହା ସବୁଠାରୁ ଉପଯୋଗୀ ସେହି ବ୍ୟାୟାମ ଗ୍ରହଣ କରିବେ ଏବଂ ସମ୍ଭବ ହେଲେ ସେ ସମ୍ବନ୍ଧରେ କୌଣସି ବିଶେଷଜ୍ଞଙ୍କ ପରାମର୍ଶ ନେବେ, ଯେକି ସ୍ଥିର କରିଦେଇ ପାରିବେ କେଉଁ କେଉଁ ବ୍ୟାୟାମ, କେଉଁ କ୍ରମରେ ବା କିପରି ଭାବରେ ଏକତ୍ର କରାଗଲେ ସବୁଠୁ ଭଲ ଫଳ ମିଳିବ । ଏହି ବ୍ୟାୟାମର ନିର୍ବାଚନ ବା ଅନୁଶୀଳନ ସମ୍ପର୍କରେ କୌଣସି ପ୍ରକାର ଖାମଖିଆଲୀ ଭାବ ରଖିଲେ ଚଳିବ ନାହିଁ । ନିଜ ଖୁସି ଅନୁସାରେ ଅଧିକ ସହଜ ଓ ସୁଖପ୍ରଦ ବୋଲି ଏଇଟିକୁ ବା ସେଇଟିକୁ ଗ୍ରହଣ କରିବା ଉଚିତ ନୁହେଁ, ଯେତେବେଳେ କେବଳ ତୁମର ଶିକ୍ଷକ ମନେ କରିବେ ଯେ ତୁମର କାର୍ଯ୍ୟକ୍ରମରେ ପରିବର୍ତ୍ତନ ଆବଶ୍ୟକ ସେତେବେଳେ ସେ ତାହା କରିବେ । ପ୍ରତ୍ୟେକର ଶରୀର କିପରି ଚରମ ପୂର୍ଣ୍ଣତା ଲାଭ କରିବ ବା ଅନ୍ତତଃ ଉନ୍ନତି ଦିଗରେ ଅଗ୍ରସର ହେବ— ଏହି ସମସ୍ୟା ସମାଧାନ ନିମନ୍ତେ ଆବଶ୍ୟକ ପ୍ରଚୁର ଧୈର୍ଯ୍ୟ, ଅଧ୍ୟବସାୟ ଓ ନିୟମାନୁବର୍ତ୍ତିତା । ଲୋକମାନେ ଯାହା ଭାବନ୍ତୁ ପଛକେ ଖେଳାଳିର ଜୀବନ କେବଳ ଏକ ସ୍ଫୂର୍ତ୍ତି ବା ଉଚ୍ଛୃଙ୍ଖଳତାର ଜୀବନ ନୁହେଁ ବରଂ ଠିକ୍ ତା'ର ବିପରୀତ, ଈପ୍ସିତ ଫଳ ପାଇବା ପାଇଁ ସୁନିୟମିତ ପ୍ରୟାସ ଓ ସଂଯତ ଅଭ୍ୟାସରେ ଗଠିତ ଏକ ଜୀବନ ଆବଶ୍ୟକ ଯାହା କୌଣସି ପ୍ରକାର କ୍ଷତିକର ଓ ଅନାବଶ୍ୟକ ଖିଆଲକୁ ପ୍ରଶ୍ରୟ ଦିଏ ନାହିଁ ।

କର୍ମର କ୍ଷେତ୍ରରେ ମଧ୍ୟ ସଂଯମର ଆବଶ୍ୟକତା ରହିଛି । ଏହାର

ପ୍ରଧାନ ବିଷୟ ହେଲା କାର୍ଯ୍ୟ ପାଇଁ କୌଣସି ପସନ୍ଦ ବା ଅପସନ୍ଦ ରଖିବ ନାହିଁ । ଯେଉଁ କାର୍ଯ୍ୟ କରିବ ତାହା ଖୁବ୍ ଉତ୍ସାହର ସହିତ କରିବ । ଯେଉଁ ବ୍ୟକ୍ତି ନିଜର ଚରମ ପୂର୍ଣ୍ଣତାର ଅଭୀପ୍ସା ରଖେ, ତା ପକ୍ଷରେ କାର୍ଯ୍ୟରେ ବଡ଼ ବା ଛୋଟ କିଛି ନାହିଁ, ଅଧିକ ଗୁରୁତ୍ୱପୂର୍ଣ୍ଣ ବା କମ୍ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କିଛି ନାହିଁ । ଯେ ଆତ୍ମକର୍ତ୍ତୃତ୍ୱ ଓ ପ୍ରଗତିର ଅଭିଳାଷ ରଖେ, ସମସ୍ତ ପ୍ରକାର କାର୍ଯ୍ୟ ତା' ପାଇଁ ସମାନ ଭାବରେ ଉପଯୋଗୀ । କୁହାଯାଇଥାଏ ଯେ ଯେଉଁ କାର୍ଯ୍ୟରେ ତୁମର ଆଗ୍ରହ ଅଛି କେବଳ ସେହି କାର୍ଯ୍ୟକୁ ତୁମେ ସୁଚାରୁରୂପେ ସମ୍ପନ୍ନ କରିପାରିବ । ଏହା ସତ୍ୟ, କିନ୍ତୁ ଏହା ଅପେକ୍ଷା ଅଧିକତର ସତ୍ୟ ହେଲା ଜଣେ ଯେକୌଣସି କାର୍ଯ୍ୟ କରୁ ନା କାହିଁକି, ସେ କାର୍ଯ୍ୟ ଯେତେ ନଗଣ୍ୟ ଜଣାଯାଉଥିଲେ ବି ତହିଁରେ ପୂର୍ଣ୍ଣ ଆଗ୍ରହ ସୃଷ୍ଟି କରାଯାଇପାରେ । ଏହି ସିଦ୍ଧିର ଗୋପନ ଚାବି ହେଲା ପୂର୍ଣ୍ଣତା ପ୍ରତି ଏକାନ୍ତ ଆଗ୍ରହ । ତୁମେ ଯେକୌଣସି କାର୍ଯ୍ୟରେ ନିଯୁକ୍ତ ହୁଅନା କାହିଁକି, ନିଜର ବିକାଶ ଓ ଅଗ୍ରଗତି ଦିଗରେ ସଙ୍କଳ୍ପର ସହ ଏହା କରିଯାଅ । ତୁମେ ଯେଉଁ କାମ କରିବ ତାହା ଯଥାସାଧ୍ୟ ଭଲଭାବେ କରିବାକୁ ଯେ ଚେଷ୍ଟା କରିବ, ଖାଲି ସେତିକି ନୁହେଁ, ପୂର୍ଣ୍ଣତା ଦିଗରେ ଏକ ନିରନ୍ତର ପ୍ରୟାସ ଓ ଆନ୍ତରିକତା ନେଇ କାର୍ଯ୍ୟଟିକୁ ଅଧିକରୁ ଅଧିକ ଉତ୍ତମରୂପେ କରିବା ପାଇଁ ଉଦ୍ୟମ କରିବା ଉଚିତ । ଏହି ଭାବରେ ସ୍ଥୂଳ ଦୈହିକ ପରିଶ୍ରମଠାରୁ ଆରମ୍ଭ କରି ସୂକ୍ଷ୍ମ ଚାରୁକଳା ଓ ବୁଦ୍ଧିଗତ କାର୍ଯ୍ୟ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ଖୁବ୍ ଚିତ୍ତାକର୍ଷକ ହୋଇଉଠେ । ଅଗ୍ରଗତିର କ୍ଷେତ୍ର ସୀମାହୀନ ଏବଂ ସାମାନ୍ୟତମ କାର୍ଯ୍ୟକୁ ବି ନିଷ୍ଠାର ସହ କରାଯାଇପାରେ ।

ସ୍ୱାଭାବିକ ଭାବରେ ଏହା କର୍ମରେ ମୁକ୍ତି ଆଡ଼କୁ ଘେନିଯାଏ, କାରଣ କର୍ମ ସମ୍ପର୍କରେ ଆମକୁ ସମସ୍ତ ପ୍ରକାର କୃତ୍ରିମ ସାମାଜିକ ଆଚାର ଓ ସମସ୍ତ କୁସଂସ୍କାରରୁ ମୁକ୍ତ ରହିବାକୁ ହେବ । ଅବଶ୍ୟ ଏହାର ଅର୍ଥ ନୁହେଁ ଯେ ଏକ ଉଚ୍ଛୃଙ୍ଖଳ ଅରାଜକ ଜୀବନ ଯାପନ କରିବ । ବରଂ

ବିପରୀତପକ୍ଷେ ଏ କ୍ଷେତ୍ରରେ ଏପରି ଏକ ବିଧିବିଧାନ ମାନି ଚାଲିବାକୁ ହେବ ଯାହାକି ସମସ୍ତ ସାମାଜିକ ବିଧିବିଧାନଠାରୁ ଅଧିକ କଠୋର, କାରଣ ଏହା କୌଣସି କପଟତା ବରଦାସ୍ତ କରେ ନାହିଁ । ତାହାର ଦାବି ହେଲା ଏକାନ୍ତ ଆନ୍ତରିକତା । ସମସ୍ତ ଶାରୀରିକ କ୍ରିୟା ଏପରି ଭାବେ ସଂଗଠିତ ହେବା ଉଚିତ ଯାହା ଫଳରେ ଶରୀରର ଅଭିବୃଦ୍ଧି ହେବ ସୁସମତା, ଶକ୍ତି ଓ ସୌନ୍ଦର୍ଯ୍ୟ ଦିଗରେ । ଏହି ଲକ୍ଷ୍ୟକୁ ଆଖି ଆଗରେ ରଖି ଆମକୁ ସମସ୍ତ ପ୍ରକାର ଭୋଗଲିପ୍ସାରୁ ଦୂରରେ ରହିବାକୁ ହେବ, ଯୌନସମ୍ଭୋଗ ମଧ୍ୟ ଏହାର ଅନ୍ତର୍ଭୁକ୍ତ । କାରଣ ପ୍ରତ୍ୟେକଟି ଯୌନସମ୍ଭୋଗର ଅର୍ଥ ହେଉଛି ମୃତ୍ୟୁ ଆଡ଼କୁ ଆହୁରି ଏକ ପାଦ ଆଗେଇ ଯିବା । ସେଥି ପାଇଁ ଅତି ପୁରାକାଳରୁ ଅଦ୍ୟାବଧି ସମସ୍ତ ପବିତ୍ର ଓ ଗୁହ୍ୟ ସାଧନ-ପ୍ରଣାଳୀରେ, ଅମୃତତ୍ୱର ଅଭିଳାଷୀ ପ୍ରତ୍ୟେକ ସାଧକ ପାଇଁ ଏହା ସଂପୂର୍ଣ୍ଣ ନିଷିଦ୍ଧ ଥିଲା । ଯୌନକ୍ରିୟାର ପରବର୍ତ୍ତୀ ଅବସ୍ଥା ହେଲା ଊଣା-ଅଧିକେ ଏକ ଦୀର୍ଘ ଅଚେତନା ଭିତରେ ବୁଡ଼ିଯିବା, ଯାହା ସମସ୍ତ ପ୍ରକାର ଖରାପ ଶକ୍ତିର ପ୍ରବେଶ ପାଇଁ ଦ୍ୱାର ଖୋଲି ଦିଏ ଓ ଚେତନାର ପତନ ଘଟାଏ । ଯେ ଅତିମାନସ ଜୀବନ ପାଇଁ ପ୍ରସ୍ତୁତ ହେବାକୁ ଚାହେଁ ସେ କେବେହେଲେ ଭୋଗ ବା ଏପରିକି ବିଶ୍ରାମ ବା ଆରାମର ବାହାନାରେ ନିଜର ଚେତନାକୁ ଶୈଥିଲ୍ୟ ବା ଅଚେତନା ଭିତରେ ପତନ ହେବାକୁ ଦେବ ନାହିଁ । ସେ ବିଶ୍ରାମ ଖୋଜିବ ଶକ୍ତି ଓ ଆଲୋକ ଭିତରେ, ଦୁର୍ବଳତା ଓ ଅଜ୍ଞାନ ଭିତରେ ନୁହେଁ । ତେଣୁ ଯେଉଁମାନେ ବିକାଶ ଓ ଅଗ୍ରଗତି ପାଇଁ ଅଭୀପ୍ସା ରଖନ୍ତି ସେମାନଙ୍କ ପାଇଁ ସଂଯମ ଅପରିହାର୍ଯ୍ୟ । କିନ୍ତୁ ବିଶେଷକରି ଯେଉଁମାନେ ଅତିମାନସ ଅଭିବ୍ୟକ୍ତି ପାଇଁ ନିଜକୁ ପ୍ରସ୍ତୁତ କରିବାକୁ ଚାହାନ୍ତି ସେମାନଙ୍କୁ କେବଳ ସଂଯମ ନୁହେଁ, ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ରକ୍ଷା କରିବାକୁ ହେବ । କୌଣସି ପ୍ରକାର ଅବଦମନ ବା ବାଧ୍ୟତା ପ୍ରୟୋଗ କରି ନୁହେଁ, କିନ୍ତୁ ଏପରି ଏକ ଆନ୍ତଃପ୍ରକ୍ରିୟା ଗ୍ରହଣ କରିବାକୁ ହେବ

ଯାହା ଫଳରେ ପ୍ରଜନନ କାର୍ଯ୍ୟରେ ନିୟୋଜିତ ହେଉଥିବା ଶକ୍ତି, ପ୍ରଗତି ଓ ପୂର୍ଣ୍ଣାଙ୍ଗ ରୂପାନ୍ତର ପାଇଁ ଆବଶ୍ୟକ ଶକ୍ତିରେ ପରିବର୍ତ୍ତିତ ହେବ । ଏହା ଅତି ସ୍ୱତଃସିଦ୍ଧ ଯେ ଏକ ପୂର୍ଣ୍ଣାଙ୍ଗ ଏବଂ ଯଥାର୍ଥ କଲ୍ୟାଣକର ଫଳଲାଭ ଚାହୁଁଥିଲେ ମନ ଓ ପ୍ରାଣର ଚେତନାରୁ ତଥା ଦୈହିକ ଇଚ୍ଛାରୁ ସମସ୍ତ ପ୍ରକାର ଯୌନ ବାସନା ଓ ପ୍ରବୃତ୍ତିକୁ ସଂପୂର୍ଣ୍ଣରୂପେ ଉଚ୍ଛେଦ ଓ ବର୍ଜନ କରିବାକୁ ପଡ଼ିବ । ସମସ୍ତ ପ୍ରକାର ସ୍ଥାୟୀ ଓ ମୌଳିକ ରୂପାନ୍ତର ପ୍ରସାରିତ ହୁଏ ଭିତରୁ ବାହାର ଆଡ଼କୁ, ପ୍ରଥମେ ଭିତରେ ହୋଇଥିବା ରୂପାନ୍ତରର ସ୍ୱାଭାବିକ ଓ ଅନିବାର୍ଯ୍ୟ ପରିଣାମରୂପେହିଁ ବାହ୍ୟ ରୂପାନ୍ତର ସାଧିତ ହୁଏ ।

ମାନବଜାତି ଯେପରି ଅଛି ସେହିପରି ଭାବେ ରହି ଚାଲିବା ପାଇଁ ପ୍ରକୃତିର ଲକ୍ଷ୍ୟ ପୂରଣ ନିମନ୍ତେ ତା'ର ଦାବି ଅଧୀନରେ ଶରୀରକୁ ଛାଡ଼ିଦେବା ବା ନୂତନ ଜାତି ସୃଷ୍ଟି ଦିଗରେ ଏକ ପଦକ୍ଷେପ ରୂପେ ଏହି ଶରୀରକୁ ନିୟୋଜିତ କରିବା– ଏ ଦୁଇଟି ଭିତରୁ ଆମକୁ ନିଷ୍ପତ୍ତିମୂଳକ ଭାବେ ଗୋଟିକୁ ବାଛି ନେବାକୁ ହେବ । ଦୁଇଟି କେବେହେଲେ ଏକ ସଙ୍ଗରେ ଚାଲିପାରିବେ ନାହିଁ, ତୁମକୁ ପ୍ରତ୍ୟେକ ମୁହୂର୍ତ୍ତରେ ନିଷ୍ପତ୍ତି ନେବାକୁ ହେବ ଯେ ତୁମେ ଗତ କାଲିର ମଣିଷ ହୋଇ ରହିବ ନା ଆଗାମୀ କାଲିର ଅତିମାନବତ୍ୱକୁ ଉତ୍ତୀର୍ଣ୍ଣ ହେବ । ଯଦି ତୁମେ ଭବିଷ୍ୟତର ଜୀବନ ପାଇଁ ପ୍ରସ୍ତୁତ ହେବାକୁ ଚାହଁ, ତାହାର ଏକ ସକ୍ରିୟ ଓ ସୁଦକ୍ଷ କର୍ମୀ ହେବାକୁ ଚାହଁ ତେବେ ବର୍ତ୍ତମାନର ଏହି ଗତାନୁଗତିକ ଜୀବନଧାରାରେ ଚାଲି ଏଥିରେ ସଫଳ ହେବାର ଇଚ୍ଛାକୁ ଅସ୍ୱୀକାର କରିବାକୁ ହେବ । ତୁମେ ଯଦି ପୂର୍ଣ୍ଣାଙ୍ଗ ସୌନ୍ଦର୍ଯ୍ୟ ଓ ସମନ୍ୱୟ ଭିତରେ ଆନନ୍ଦମୟ ଜୀବନ ଯାପନ କରିବାକୁ ଚାହଁ ତେବେ ତୁମକୁ ସୁଖଭୋଗର ଲିପ୍‌ସା ପରିତ୍ୟାଗ କରିବାକୁ ପଡ଼ିବ ।

ଏହା ପରେ ସ୍ୱାଭାବିକରୂପେ ଆସେ ପ୍ରାଣର ସଂଯମ ଅର୍ଥାତ୍ ସଂବେଦନ ଓ ଆବେଗ-ଅନୁଭୂତି ଆଦିର ତପସ୍ୟା ଅର୍ଥାତ୍ ଶକ୍ତିର ତପସ୍ୟା । ପ୍ରାଣର ସତ୍ତା ହେଉଛି ଶକ୍ତି ତଥା ସାଫଲ୍ୟଦାୟୀ ଉତ୍ସାହର

ନିବାସସ୍ଥଳୀ । ଏହି ପ୍ରାଣକେନ୍ଦ୍ରରେହିଁ ଚିନ୍ତା ପରିଣତ ହୁଏ ସଂକଳ୍ପରେ ଏବଂ ତାହା ଗତିଶୀଳ କ୍ରିୟାର ରୂପ ନିଏ । ଏହା ମଧ୍ୟ ସତ୍ୟ ଯେ ପ୍ରାଣ ହେଉଛି ବାସନାକାମନା ଓ ଉଗ୍ର ଆବେଗର ଏବଂ ସମାନ ଧରଣର ତୀବ୍ର ପ୍ରତିକ୍ରିୟା, ବିଦ୍ରୋହ ଓ ହତାଶାର ମୂଳ ଆସ୍ଥାନ । ଏଥି ପାଇଁ ପ୍ରଚଳିତ ପ୍ରତିକାର ହେଲା ଏହାର ଗଳାଚିପି ହତ୍ୟା କରିବା ବା ସମସ୍ତ ଅନୁଭୂତିରୁ ବଞ୍ଚିତ କରି ଅନାହାରରେ ରଖିବା; କାରଣ ଏହା ମୁଖ୍ୟତଃ ଆବେଗ, ଅନୁଭୂତି ଓ ସଂବେଦନ ଆଦି ଖାଦ୍ୟ ଉପରେ ବଞ୍ଚି ରହିଥାଏ ଏବଂ ତାହା ନ ମିଳିଲେ ଏହା ନିଦ୍ରାଭିଭୂତ, ନିଷ୍କ୍ରିୟ ଜଡ଼, ଏବଂ ପରିଶେଷରେ ଶୂନ୍ୟ ଓ ମୃତପ୍ରାୟ ହୋଇପଡ଼େ ।

ପ୍ରକୃତରେ ପ୍ରାଣ ତିନୋଟି ଉତ୍ସରୁ ନିଜର ଆହାର ସଂଗ୍ରହ କରେ ।

ସବୁଠାରୁ ସହଜ ପ୍ରାପ୍ୟଟି ଆସେ ନିମ୍ନରୁ : ତାହା ହେଲା ଇନ୍ଦ୍ରିୟାବେଗ ଓ ଅନୁଭୂତି ଆଦି ଆକାରରେ ଆସୁଥିବା ଦୈହିକ ଜଡ଼ଶକ୍ତି । ଦ୍ୱିତୀୟଟି ଆସେ ପ୍ରାଣର ନିଜସ୍ୱ କ୍ଷେତ୍ରରୁ ଯଦି ଏହା ନିଜକୁ ଯଥେଷ୍ଟ ଭାବରେ ପ୍ରସାରିତ ଓ ଗ୍ରହଣଶୀଳ କରେ ଏବଂ ବିଶ୍ୱର ପ୍ରାଣଶକ୍ତିସମୂହ ସଙ୍ଗେ ସଂଯୋଗ ସ୍ଥାପନ କରେ । ତୃତୀୟଟି ହେଲା ଊର୍ଦ୍ଧ୍ୱସ୍ଥ ଆଧ୍ୟାତ୍ମିକ ଶକ୍ତି । ଯଦି ତାହା ଆଡ଼କୁ ଏହା ନିଜକୁ ଉନ୍ମୋଚିତ କରେ ପ୍ରଗତିର ଅଦମ୍ୟ ଅଭୀପ୍ସା ନେଇ, ତେବେ ଏହି ଆଧ୍ୟାତ୍ମିକ ଶକ୍ତି ଓ ପ୍ରେରଣାସମୂହ ଊର୍ଦ୍ଧ୍ୱରୁ ଆସି ଏହା ଭିତରେ ସଂଚାରିତ ହୁଅନ୍ତି ଓ ଏହା ନିଜ ଭିତରେ ସେସବୁକୁ ଗ୍ରହଣ କରିପାରେ ।

ଏସବୁ ସଙ୍ଗରେ ମଣିଷ ସର୍ବଦା ଆଉ ଏକ ଉତ୍ସକୁ ଯୋଗ କରିବାକୁ ଚାହେଁ, ଯାହା ତା'ର ଅଧିକାଂଶ ଦୁର୍ଦ୍ଦଶା ଓ ଦୁର୍ଯୋଗର ମୂଳ କାରଣ ତାହା ହେଉଛି ତା'ର ସ୍ୱଜାତି ପ୍ରାଣୀ ସଙ୍ଗେ ପ୍ରାଣଶକ୍ତିର ଆଦାନପ୍ରଦାନ । ସାଧାରଣତଃ ଦୁଇଜଣଙ୍କ ମଧ୍ୟରେ ଏହା ହୋଇଥାଏ ଓ ଏହାକୁ ସେମାନେ ପ୍ରେମବୋଲି ନାମ ଦିଅନ୍ତି ଯାହାକି ଏକ ମସ୍ତବଡ଼ ଭୁଲ, ପ୍ରକୃତରେ ତାହା

ହେଉଛି ଦୁଇଟି ପ୍ରାଣଶକ୍ତି ଭିତରେ ଆକର୍ଷଣ ଯେ କି ପାରସ୍ପରିକ ଆଦାନ-ପ୍ରଦାନରୁ ଆନନ୍ଦ ପାଏ ।

ସୁତରାଂ ଆମେ ଯଦି ଆମର ପ୍ରାଣଶକ୍ତିକୁ ଭୋକିଲା ରଖିବାକୁ ନ ଚାହୁଁ, ତେବେ ସଂବେଦନ ଓ ଅନୁଭୂତି ସବୁକୁ ବର୍ଜନ କରିବାରେ କୌଣସି ପ୍ରୟୋଜନ ନାହିଁ; ସେସବୁକୁ ସଂପୂର୍ଣ୍ଣ ବାଦ୍ ଦେଇଯିବା ବା ସେମାନଙ୍କର ଗଭୀରତା ଓ ପରିଣାମକୁ ହ୍ରାସ କରିବାର କୌଣସି ଆବଶ୍ୟକତା ନାହିଁ । ତେବେ ବୁଦ୍ଧି ଓ ବିବେଚନାର ସହ ଏବଂ ଯଥାର୍ଥ ବାଛ-ବିଚାର ସହ ସେଗୁଡ଼ିକୁ ନିୟୋଜିତ କରିବାକୁ ହେବ । ଜ୍ଞାନ ଓ ଶିକ୍ଷା ଦିଗରେ ଏହି ସଂବେଦନସବୁ (sensations) ଚମତ୍କାର ଯନ୍ତ୍ରରୂପେ ବ୍ୟବହୃତ ହୋଇପାରନ୍ତି । ତେବେ ଏହି ଉଦ୍ଦେଶ୍ୟ ସାଧନରେ ସେଗୁଡ଼ିକୁ ନିୟୋଜିତ କରିବାକୁ ହେଲେ ଅହଂକାରର ବଶବର୍ତ୍ତୀ ହୋଇ, ଏକ ଅନ୍ଧ ଓ ଅଜ୍ଞାନ ଆବେଗ ବଶରେ ସୁଖ ଓ ଆତ୍ମତୃପ୍ତି ସକାଶେ ଭୋଗର ଯନ୍ତ୍ରରୂପେ ସେଗୁଡ଼ିକୁ ବ୍ୟବହାର କଲେ ଚଳିବ ନାହିଁ ।

କୌଣସି ପ୍ରକାର ବିରକ୍ତି ଓ ବିତୃଷ୍ଣା ନ ରଖି ସବୁକିଛିକୁ ସହ୍ୟ କରିବାର ସାମର୍ଥ୍ୟ ଇନ୍ଦ୍ରିୟଗୁଡ଼ିକୁ ପ୍ରାପ୍ତ ହେବାକୁ ହେବ, କିନ୍ତୁ ତହିଁ ସଙ୍ଗେ ସଙ୍ଗେ ମଧ୍ୟ ବିଭିନ୍ନ ପ୍ରାଣିକ ସ୍ପନ୍ଦନର ପ୍ରକୃତ ଗୁଣ, ମୂଳ ଉତ୍ସ ଓ ପରିଣାମ ସମ୍ପର୍କରେ ଏକ ଯଥାର୍ଥ ଜ୍ଞାନ ଓ ବିଚାରର ବିକାଶ କରିବାକୁ ହେବ । ତା'ହେଲେ କେବଳ ଉକ୍ତ ସ୍ପନ୍ଦନଗୁଡ଼ିକ ଶରୀର ଓ ପ୍ରାଣସତ୍ତାର ସୁସମତା, ସୌନ୍ଦର୍ଯ୍ୟ ଓ ସୁସ୍ୱାସ୍ଥ୍ୟ ଦିଗରେ ଅନୁକୂଳ କିଂବା ପ୍ରତିକୂଳ ତାହା ଜଣା ପଡ଼ିବ । ଅଧିକନ୍ତୁ ଦେହ ଓ ପ୍ରାଣ-ଜଗତର ବିଭିନ୍ନ ଜଟିଳତା ସମ୍ବନ୍ଧରେ ଜ୍ଞାନ ଅର୍ଜନ ପାଇଁ ଏହି ଇନ୍ଦ୍ରିୟଗୁଡ଼ିକୁ ବ୍ୟବହାର କରାଯିବା ଉଚିତ । ଏହିପରି ଭାବରେ ରୂପାନ୍ତରର ମହାନ୍ କାର୍ଯ୍ୟରେ ସେଗୁଡ଼ିକ ପ୍ରକୃତ ସ୍ଥାନ ଗ୍ରହଣ କରିପାରିବେ ।

ସତ୍ତାର ଯଥାର୍ଥ ଉନ୍ନତି ଓ ବିକାଶ ଦିଗରେ ସାହାଯ୍ୟ କରାହୁଏ ପ୍ରାଣକୁ ଆଲୋକିତ, ଶକ୍ତିମାନ୍ ଓ ଶୁଦ୍ଧ କରିବା ଦ୍ୱାରା, ଦୁର୍ବଳ କରିବା

ଦ୍ୱାରା ନୁହେଁ । ତେଣୁ ଅନୁଭୂତିସବୁକୁ ବର୍ଜନ କରିବା ଆହାର ବର୍ଜନ ପରି କ୍ଷତିକାରକ । କିନ୍ତୁ ଯେପରି କେବଳ ଶରୀରର ଅଭିବୃଦ୍ଧି ଓ ଯଥାଯଥ କ୍ରିୟାକୁ ଲକ୍ଷ୍ୟ ରଖି ଉପଯୁକ୍ତ ବିଚାର ସହିତ ଖାଦ୍ୟ ନିର୍ବାଚନ କରିବା ଉଚିତ ସେହିପରି ଅନୁଭୂତିର କ୍ଷେତ୍ରରେ ମଧ୍ୟ ପ୍ରାଣରୂପୀ ମହାନ୍ କ୍ରିୟା ଓ ଗତିଶୀଳ ଯନ୍ତ୍ରର ଅଭିବୃଦ୍ଧି ଓ ପୂର୍ଣ୍ଣତାକୁ ଲକ୍ଷ୍ୟ ରଖି ଅନୁଭୂତିସବୁର ନିର୍ବାଚନ ହେବା ଉଚିତ ଏବଂ ତାହା ଉପରେ ଏକ ବିଜ୍ଞାନସମ୍ମତ ତପସ୍ୟା ଦ୍ୱାରା ସଂଯମ ରହିବା ଆବଶ୍ୟକ । କାରଣ ସତ୍ତାର ଅନ୍ୟାନ୍ୟ ସମସ୍ତ ଅଙ୍ଗ ପରି ବିକାଶ ଓ ଉନ୍ନତି ପାଇଁ ପ୍ରାଣ ନିତାନ୍ତ ଅପରିହାର୍ଯ୍ୟ ।

ପ୍ରାଣକୁ ସୁଶିକ୍ଷିତ, ମାର୍ଜିତ ଓ ଅଧିକ ଅନୁଭୂତିଶୀଳ କରିବା ଦ୍ୱାରା, ଅଧିକ ସୂକ୍ଷ୍ମ ଓ ଯଥାର୍ଥରେ ସୁରୁଚିସମ୍ପନ୍ନ କରିବା ଦ୍ୱାରା ଏହାର ପ୍ରଚଣ୍ଡତା ଓ ପାଶବିକତାକୁ ଜୟ କରାଯାଇପାରେ, ଯାହା ସାଧାରଣତଃ ଅଶୁଦ୍ଧି, ଅଜ୍ଞାନତା ଓ କୁରୁଚିର ଗତିବୃତ୍ତି ।

ବାସ୍ତବରେ ପ୍ରାଣସତ୍ତାକୁ ବିନା ଶିକ୍ଷାରେ ଓ ତା' ନିଜ କର୍ତ୍ତୃତ୍ୱରେ ଛାଡ଼ିଦେବା ଦ୍ୱାରା ସେ ବର୍ତ୍ତମାନ ଯେପରି ସ୍ୱାଭାବିକ ରୂପେ ଅହଂକାରୀ, ବିକୃତ ଓ ଅଶ୍ଳୀଳ ହୋଇ ରହିଛି, ତାହାକୁ ଯଦି ଉପଯୁକ୍ତ ଶିକ୍ଷା ଓ ଆଲୋକ ଦିଆଯାଏ ତେବେ ସେ ଠିକ୍ ସେହିପରି ସ୍ୱାଭାବିକ ରୂପେ ମହାନ୍, ବୀର ଓ ନିଃସ୍ୱାର୍ଥପର ହୋଇଉଠିବ । ଯଦି ପ୍ରତ୍ୟେକ ବ୍ୟକ୍ତି ଜାଣେ ଯେ ନିଜ ଭିତରେ ଥିବା ଏହି ସୁଖଭୋଗର ସ୍ପୃହାକୁ କିପରି ଅତିମାନସ ଐଶ୍ୱର୍ଯ୍ୟପ୍ରାପ୍ତିର ଅଭୀପ୍ସାରେ ରୂପାନ୍ତରିତ କରିବାକୁ ହୁଏ, ତେବେ ତାହାହିଁ ଯଥେଷ୍ଟ । ସେଥି ନିମନ୍ତେ ଯଦି ପ୍ରାଣର ଶିକ୍ଷାକୁ ଆନ୍ତରିକତା ଓ ଅଧ୍ୟବସାୟ ସହିତ ବହୁଦୂର ପର୍ଯ୍ୟନ୍ତ ନିଆଯାଏ, ଏପରି ଏକ ମୁହୂର୍ତ୍ତ ଆସେ ଯେତେବେଳେ ଏହା ଯଥାର୍ଥ ଲକ୍ଷ୍ୟର ମହାନତା ଓ ସୌନ୍ଦର୍ଯ୍ୟ ସମ୍ପର୍କରେ ନିଃସଂଶୟ ହୁଏ ଏବଂ ସମସ୍ତ ପ୍ରକାର ଇନ୍ଦ୍ରିୟଭୋଗର ତୁଚ୍ଛ ଓ ବିଭ୍ରାନ୍ତ ସନ୍ତୋଷକୁ ପରିତ୍ୟାଗ କରି ଭଗବତ୍ ଆନନ୍ଦକୁ ଜୟ କରିବା ପାଇଁ ଆଗେଇ ଯାଏ ।

(ବୁଲେଟିନ୍, ଫେବ୍ରୁଆରି ୧୯୫୩)

## (୨)

# ମାନସିକ ତପସ୍ୟା

ମାନସିକ ତପସ୍ୟାର କଥା କହିବା ମାତ୍ରେ ମନରେ ଉଠେ ଗୋଟାଏ ଦୀର୍ଘକାଳବ୍ୟାପୀ ଧ୍ୟାନର କଥା, ଯାହାଫଳରେ ଚିନ୍ତା ଉପରେ ସଂଯମ ଏବଂ ଶେଷର ଚରମ ପ୍ରାପ୍ତିରୂପେ ଏକ ଆନ୍ତର ନୀରବତା ଦେଖାଦିଏ । ଯୋଗ ସାଧନାରେ ଏହି ଦିଗଟି ଏତେ ପରିଚିତ ଯେ ଏହାର ବିଶେଷ ବ୍ୟାଖ୍ୟା କରିବା ଆଉ ପ୍ରୟୋଜନ ନାହିଁ । କିନ୍ତୁ ଏହାର ଆଉ ଗୋଟିଏ ଦିଗ ଅଛି ଯାହା ସମ୍ବନ୍ଧରେ ଲୋକେ ଖୁବ୍ ଅଳ୍ପ ଜାଣନ୍ତି; ଏହା ହେଲା ବାକ୍‌ସଂଯମ । ଅତି ଅଳ୍ପ କେତେକ ସ୍ଥଳ ଛାଡ଼ିଦେଲେ, ଅଧିକାଂଶ ସ୍ଥଳରେ ବାଚାଳତାର ପ୍ରତିଷେଧକରୂପେ ଏକାନ୍ତ ମୌନବ୍ରତ ରଖା ହୋଇଛି । କିନ୍ତୁ ବାକ୍‌ବିନାଶଠାରୁ ବାକ୍‌ସଂଯମ ଆହୁରି ବେଶୀ ମହତ୍ତର ଏବଂ ଫଳପ୍ରସୂ ତପସ୍ୟା ।

ବୋଧହୁଏ ପୃଥିବୀରେ ମନୁଷ୍ୟହିଁ ସର୍ବପ୍ରଥମ ଜୀବ ଯେ କି ସ୍ପଷ୍ଟରୂପେ ଶବ୍ଦ ବ୍ୟବହାର କରିଛି । ଏଥି ନିମିତ୍ତ ସେ ଗର୍ବ କରେ ଆଉ ଏହି କ୍ଷମତା ପ୍ରୟୋଗ କରିବାରେ ସେ କୌଣସି ବାଛବିଚାର ରଖେ ନାହିଁ । ମନୁଷ୍ୟର ଶବ୍ଦ-କୋଳାହଳରେ ପୃଥିବୀ ବଧିର ହୋଇଯାଇଛି ଏବଂ କେବେ କେବେ ମନେହୁଏ ଯେପରି ତରୁଲତା-ଜଗତର ଶାନ୍ତ-ସୁଷମ-ନୀରବତା କୁଆଡ଼େ ଚାଲିଯାଇଛି ।

ଏକଥା ସମସ୍ତେ ଜାଣନ୍ତି ଯେ ଚିନ୍ତାଶକ୍ତି ଯାହାର ଯେତେ କମ୍, ତାହାର କଥା କହିବା ତେତେ ବେଶୀ ଦରକାର । ଉଦାହରଣସ୍ୱରୂପ ଏକ ଶ୍ରେଣୀର ଆଦିମ ଜାତି ଅଛନ୍ତି ଯେଉଁମାନେ କୌଣସି ଶିକ୍ଷା ପାଇ ନ

ଥାନ୍ତି, ସେମାନେ କଥା ନ କହିଲେ ଚିନ୍ତା କରିପାରନ୍ତି ନାହିଁ । ତୁମେ ଶୁଣି ପାରିବ ଯେ ସେମାନେ ଏକା ଥିବା ସମୟରେ ତୁନି ତୁନି କରି କଟରମଟର କରି କହନ୍ତି । ନିଜ ଚିନ୍ତାର ଅନୁସରଣ କରିବା ପାଇଁ କଥା କହିବା ହେଲା ସେମାନଙ୍କର ଏକମାତ୍ର ଉପାୟ, ଏହାଛଡ଼ା ସେମାନଙ୍କର ଚିନ୍ତା ସ୍ୱଷ୍ଟ ହୋଇପାରେ ନାହିଁ ।

ବହୁତ ଲୋକ ଅଛନ୍ତି, ଏପରିକି ଶିକ୍ଷିତ ଲୋକଙ୍କ ମଧ୍ୟରେ ବି, ଯେଉଁମାନଙ୍କର ଚିନ୍ତାଶକ୍ତି ଦୁର୍ବଳ, ସେମାନେ କଥା କହିବା ଆଗରୁ ଜାଣନ୍ତି ନାହିଁ କ'ଣ କହିବାକୁ ହେବ ସୁତରାଂ ସେମାନଙ୍କର କଥା ହୁଏ ଅସରନ୍ତି ଓ ବିରକ୍ତିକର । ଏହି କାରଣରୁ ସେମାନେ ଗୋଟିଏ କଥାକୁ ବାରଂବାର କହନ୍ତି ବକ୍ତବ୍ୟକୁ ଆହୁରି ସ୍ୱଷ୍ଟ କରିବା ନିମିତ୍ତ ।

ଏପରି ଲୋକ ବି ଅଛନ୍ତି ଯେଉଁମାନେ କହିବା ଆଗରୁ ବିଷୟ ପ୍ରସ୍ତୁତ କରିନିଅନ୍ତି, ମନର ଭାବ ପ୍ରକାଶ କରିବାକୁ ହେଲେ ସେଇସବୁ କଥା ସଜେଇ କରି କହନ୍ତି, କିନ୍ତୁ ହଠାତ୍ କହିବାକୁ ଗଲେ ସେମାନେ ଥତମତ ହୁଅନ୍ତି, କାରଣ ଗୋଟିକ ପରେ ଗୋଟିଏ କ'ଣ କହିବାକୁ ହେବ ତାହା ଆଗରୁ ଚିନ୍ତା କରି ନ ଥା'ନ୍ତି ।

ପୁନଶ୍ଚ ଏପରି ଲୋକ ଅଛନ୍ତି ଯେଉଁମାନେ ଜନ୍ମରୁ ବକ୍ତା ଅର୍ଥାତ୍ ବାକ୍‌ବୀର; ସେମାନଙ୍କ କହିବା କଥା ସ୍ୱତଃସ୍ଫୂର୍ତ୍ତ ଏବଂ ସ୍ୱଷ୍ଟ ହୁଏ ।

ମାନସିକ ତପସ୍ୟା ଦୃଷ୍ଟିରୁ, ଏହିସବୁ ବିଷୟ ବାଚାଳତାର ଶ୍ରେଣୀଭୁକ୍ତ । ମୋ କହିବା ଅନୁସାରେ ବାଚାଳତାର ଅର୍ଥ ହେଲା, ଯେଉଁ କଥାଟି ଏକେବାରେ ଅପରିହାର୍ଯ୍ୟ ନୁହେଁ ତାହା କହିବା । କିନ୍ତୁ ପ୍ରଶ୍ନ ଉଠିପାରେ କ'ଣ ଅପରିହାର୍ଯ୍ୟ ଆଉ କ'ଣ ଅପରିହାର୍ଯ୍ୟ ନୁହେଁ । ଏଥି ନିମିତ୍ତ ଆମ୍ଭେମାନେ ସବୁପ୍ରକାର ଶବ୍ଦକୁ ସାଧାରଣଭାବେ ଶ୍ରେଣୀବଦ୍ଧ କରିବା ।

ପ୍ରଥମତଃ ଭୌତିକ ଜଗତରେ ବାସ୍ତବ ପ୍ରୟୋଜନରୁ ଯେଉଁସବୁ କଥା କୁହାହୁଏ ସେସବୁ କଥାର ସଂଖ୍ୟା ସବୁଠାରୁ ବେଶୀ ଏବଂ ସାଧାରଣ ଜୀବନରେ ଏହାହିଁ ସବୁଠାରୁ ଉପଯୋଗୀ ।

ସବୁ ସମୟରେ ଚବର ଚବର ହେବା ମନେହୁଏ ଯେପରି ଦୈନିକ କାର୍ଯ୍ୟର ଗୋଟାଏ ଅପରିହାର୍ଯ୍ୟ ଅଙ୍ଗ । ତେବେ ଚେଷ୍ଟାକଲେ, ଏହି ବାଚାଳତାକୁ ଖୁବ୍ କମାଇ ଦିଆଯାଇପାରେ । ଦେଖାଯାଏ, ନୀରବତା ମଧ୍ୟରେ ଅଧିକାଂଶ କାର୍ଯ୍ୟ ବହୁତ ଭଲଭାବେ ଏବଂ ଶୀଘ୍ର କରାଯାଇପାରେ । ଏହାହିଁ ଅନ୍ତରରେ ଶାନ୍ତି ଏବଂ ଏକାଗ୍ରତାକୁ ସ୍ଥାୟୀ ହେବାରେ ସହାୟତା କରେ ।

ଯଦି ତୁମେ ଏକାକୀ ନ ରହି ଅନ୍ୟମାନଙ୍କ ସଙ୍ଗରେ ରହୁଥାଅ, ତେବେ ସର୍ବଦା ଯେପରି କଥା କହିବାକୁ ନ ପଡ଼େ, ସେପରି ଅଭ୍ୟାସ କର; ତାହାହେଲେ ଦେଖିବ ଯେ ଆସ୍ତେ ଆସ୍ତେ ଅନ୍ୟ ବ୍ୟକ୍ତିଙ୍କ ସଙ୍ଗେ ତୁମର ଗୋଟାଏ ମନର ମେଳ ହୋଇଯିବ । ସେତେବେଳେ ଖୁବ୍ ଅଳ୍ପ କଥାରେ ଅଥବା ବିନା କଥାରେ ପରସ୍ପର ମନର ଭାବ ବୁଝିପାରିବ । ବାହାରର ଏହି ବାକ୍‌ସଂଯମ ଆନ୍ତର ଶାନ୍ତି ପାଇବାରେ ଖୁବ୍ ସହାୟକ ହୁଏ । ଆଉ ତୁମର ଯଦି ସଦିଚ୍ଛା ଏବଂ ନିରନ୍ତର ଅଭୀପ୍‌ସା ଥାଏ, ତାହାହେଲେ ଏହା ଦ୍ୱାରା ଉନ୍ନତିର ଅନୁକୂଳ ବାତାବରଣ ସୃଷ୍ଟି ହୋଇପାରେ ।

ଅନ୍ୟ ସଙ୍ଗେ ମିଳିତ ଜୀବନରେ ଭୋଜନ, ବସନ ଏବଂ ସ୍ଥୂଳ ପ୍ରୟୋଜନ ସମ୍ବନ୍ଧୀୟ ଶବ୍ଦାବଳୀର ସଙ୍ଗେ ଉତ୍ତେଜନା, ଭାବ ଓ ଆବେଗକୁ ପ୍ରକାଶ କରୁଥିବା ଶବ୍ଦକୁ ମଧ୍ୟ ଯୋଗ କରିବାକୁ ହେବ । ଠିକ୍ ଏହିଠାରେହିଁ ବାହ୍ୟ ନୀରବତାର ଅଭ୍ୟାସ ଅତି ମୂଲ୍ୟବାନ୍ ସହାୟକ ହୁଏ । ଅନୁଭବ ବା ଆବେଗର ଉତ୍ତାଳ ତରଙ୍ଗ ଯେତେବେଳେ ତୁମକୁ ଆକ୍ରମଣ କରେ ଠିକ୍ ସେହି ସମୟରେ ଏହି ନୀରବତାର ଅଭ୍ୟାସହିଁ ତୁମକୁ ବିବେଚନା କରିବାକୁ, ଏବଂ ଦରକାର ହେଲେ ନିଜର ଅନୁଭବକୁ କଥାରେ ପ୍ରକାଶ କରିବା ଆଗରୁ ଘୁଞ୍ଚି ଛିଡ଼ା ହେବାକୁ ଯଥେଷ୍ଟ ସମୟ ଦିଏ । ଏହି ଅଭ୍ୟାସ ଦ୍ୱାରା କେତେ କଳିତକରାଳ ଦୂର କରି ନ ହୁଅନ୍ତା ! ଏହି ଗୁଣଟି ଥିଲେ ବାକ୍‌ଚାତୁର୍ଯ୍ୟ ଫଳରେ ଯେଉଁ ଆଭ୍ୟନ୍ତରୀଣ ବିପର୍ଯ୍ୟୟ ହୁଏ ତାହା ହାତରୁ କେତେବାର ତୁମେ ରକ୍ଷା ପାଇ ନ ଥା'ନ୍ତ !

ଏତେଦୂର ନ ଗଲେ ବି, ନିଜର ବାକ୍‌ବୃତ୍ତି ଉପରେ ଶାସନ ରଖିବ, ହଠାତ୍ ରାଗ, ହିଂସା, ଉତ୍ତେଜନା, ଗରମ ମିଜାଜ ବଶରେ ଜିହ୍ୱାକୁ ଚାଳିତ କରିବ ନାହିଁ । ଝଗଡ଼ାର ପରିଣାମ କେବଳ ଯେ ଖରାପ ତାହା ନୁହେଁ, ବରଂ ତାହା ବାୟୁମଣ୍ଡଳରେ ଗୋଟିଏ ଦୂଷିତ ସ୍ପନ୍ଦନ ଉତ୍ପାଦନ କରେ, କାରଣ ଧ୍ୱନି-ତରଙ୍ଗଠାରୁ ବଳି ବେଶୀ ସଂକ୍ରାମକ ଆଉ କିଛି ନାହିଁ । ଏହିସବୁ ଗତିବୃତ୍ତିକୁ ପ୍ରକାଶିତ ହେବାକୁ ସୁଯୋଗ ଦେବା ଦ୍ୱାରା, ସେସବୁକୁ ତୁମେ ତୁମ ନିଜ ଏବଂ ଅନ୍ୟମାନଙ୍କ ମଧ୍ୟରେ ଚିରସ୍ଥାୟୀ କର ।

ସବୁପ୍ରକାର ଅତି ଅବାଞ୍ଛନୀୟ ବାଚାଳତାର ଅନ୍ତର୍ଭୁକ୍ତ ହେଲା ପରଚର୍ଚ୍ଚା ।

ତୁମେ ଯଦି ଅଭିଭାବକ, ଶିକ୍ଷକ, କିଂବା ବିଭାଗୀୟ କର୍ତ୍ତାରୂପେ ଦାୟିତ୍ୱ ଗ୍ରହଣ ନ କରିଛ, ଅନ୍ୟମାନଙ୍କର କ'ଣ କରିବା ଉଚିତ ବା ଅନୁଚିତ ସେ ସମ୍ବନ୍ଧରେ ତୁମର କିଛି କହିବା ଉଚିତ ନୁହେଁ । ଅନ୍ୟମାନଙ୍କ ବିଷୟରେ ତୁମର ଆଲୋଚନା କରିବା, ସେମାନଙ୍କ ଉପରେ ମତାମତ ଦେବା, ଅଥବା ସେମାନେ କ'ଣ କରନ୍ତି ବା ନ କରନ୍ତି ସେସବୁ ବିଷୟରେ ବାଛ-ବିଚାର କରିବା, କିଂବା ସେମାନଙ୍କ ସମ୍ବନ୍ଧେ ଅନ୍ୟ ଲୋକ କ'ଣ ଭାବନ୍ତି, ତାହାର ପୁନରୁକ୍ତି କରିବା— ଏହି ସବୁଥିରୁ ତୁମକୁ ବିରତ ହେବାକୁ ହେବ ।

ଏପରି ହୋଇପାରେ ଯେ କୌଣସି ଏକ ବିଭାଗ, ଏକ ବ୍ୟବସାୟ-ପ୍ରତିଷ୍ଠାନ, କିଂବା କୌଣସି ଏକ ସାଧାରଣ କାର୍ଯ୍ୟରେ କ'ଣ ଘଟୁଛି ସେ ସମ୍ବନ୍ଧରେ ରିପୋର୍ଟ ଦେବା ସ୍ୱାଭାବିକରୂପେ ତୁମ କର୍ତ୍ତବ୍ୟର ଗୋଟିଏ ଅଙ୍ଗ ହୋଇପାରେ । ଏପରି ସ୍ଥଳରେ କେବଳ କାର୍ଯ୍ୟ ମଧ୍ୟରେ ରିପୋର୍ଟ ସୀମାବଦ୍ଧ ରହିବା ଉଚିତ; ବ୍ୟକ୍ତିଗତ ବିଷୟ ତାକୁ ଯେପରି ସ୍ପର୍ଶ ନ କରେ । ତାହା ସଂପୂର୍ଣ୍ଣ ନିରପେକ୍ଷ ହେବା ଉଚିତ । ସେଠାରେ ବ୍ୟକ୍ତିଗତ ପ୍ରତିକ୍ରିୟା, ପକ୍ଷପାତିତ୍ୱ, ସହାନୁଭୂତି, କିଂବା ଦ୍ୱେଷର କୌଣସି ସ୍ଥାନ ରହିବ ନାହିଁ । ବିଶେଷତଃ, ନିଜର କ୍ଷୁଦ୍ର ରାଗ ଦ୍ୱେଷ ନିଜ ଉପରେ ନ୍ୟସ୍ତ କାର୍ଯ୍ୟରେ ଯେପରି ପ୍ରବେଶ ନ କରେ ।

ସେ ଯାହାହେଉ ସାଧାରଣତଃ ଅନ୍ୟାନ୍ୟ ବ୍ୟକ୍ତିଙ୍କ ସମ୍ବନ୍ଧରେ ଯେତେ କମ୍ କୁହାହୁଏ, ଏପରିକି ସେମାନଙ୍କ ପ୍ରଶଂସା ବି ହେଉ, ତେତେ ଭଲ । ନିଜ ଭିତରେ କ'ଣ ଘଟୁଛି, ତାହା ଜାଣିବା କଠିନ, ପୁଣି ଅନ୍ୟ ଭିତରେ କ'ଣ ଘଟୁଛି ତାହା ଜାଣିବ କିପରି ? ସୁତରାଂ କୌଣସି ବ୍ୟକ୍ତି ବିଷୟରେ ଚୂଡ଼ାନ୍ତ ରାୟ ଦେବାରୁ ବିରତ ହୁଅ, ହୁଏତ ତାହା ବିଦ୍ୱେଷମୂଳକ ନ ହୋଇପାରେ, କିନ୍ତୁ ନିଶ୍ଚୟ ମୂର୍ଖତା ।

ଚିନ୍ତା ଯେତେବେଳେ ଭାଷାରେ ପ୍ରକାଶିତ ହୁଏ, ସେତେବେଳେ ସେହି ଶବ୍ଦ-ସ୍ପନ୍ଦନର ଏପରି ଶକ୍ତି ଥାଏ, ଯାହା ଅତି ସ୍ଥୂଳ ବସ୍ତୁର ସଙ୍ଗେ ଚିନ୍ତାକୁ ଯୋଗ କରିଦିଏ ଏବଂ ତଦ୍ୱାରା ଚିନ୍ତା ଏକ ସ୍ଥୂଳ କାର୍ଯ୍ୟକାରୀ ବାସ୍ତବ ରୂପ ଗ୍ରହଣ କରେ । ସେଥି ନିମିତ୍ତ କୌଣସି ବ୍ୟକ୍ତି ବା ବସ୍ତୁ ସମ୍ବନ୍ଧରେ ମନ୍ଦ କଥା କହିବା ଉଚିତ ନୁହେଁ ଏବଂ ଯେଉଁସବୁ କଥା ଭାଗବତ ସିଦ୍ଧିର ବିରୋଧୀ ସେସବୁ କଥା ମୁଖରେ ଉଚ୍ଚାରଣ କରିବା ଉଚିତ ନୁହେଁ । ଏହା ଏକ ଅଲଘଂନୀୟ ସର୍ବସାଧାରଣ ନିୟମ । ତେବେ ଏହାର ବି ବ୍ୟତିକ୍ରମ ଅଛି । କୌଣସି ବସ୍ତୁକୁ ସମାଲୋଚନା କରିବା ଉଚିତ ନୁହେଁ ଯଦି ସେହି ବସ୍ତୁକୁ ଦୂର କରିବାକୁ ବା ରୂପାନ୍ତର କରିବାକୁ ତୁମର ସଚେତନ ସାମର୍ଥ୍ୟ ଓ ସକ୍ରିୟ ସଂକଳ୍ପ ଶକ୍ତି ନାହିଁ । ବାସ୍ତବରେ ଏହି ସଚେତନ ସାମର୍ଥ୍ୟ ଓ ସକ୍ରିୟ ସଂକଳ୍ପ ଶକ୍ତି ଜଡ଼ ମଧ୍ୟରେ ଶକ୍ତି ସଞ୍ଚାର କରି କୁପ୍ରଭାବର ସ୍ପନ୍ଦନକୁ ପ୍ରତିରୋଧ ଓ ପ୍ରତ୍ୟାଖ୍ୟାନ କରିବାର ସମ୍ଭାବନାକୁ ଗଢ଼ିତୋଳେ, ଏବଂ ଶେଷରେ ସେହି ସ୍ପନ୍ଦନ ଏତେ ଶୁଦ୍ଧ ହୋଇଯାଏ ଯେ ଜଡ଼ କ୍ଷେତ୍ରରେ ଆଉ ତାହା ପୂର୍ବ ପରି ପ୍ରକାଶିତ ହୁଏ ନାହିଁ ।

ଏହି କାର୍ଯ୍ୟ ନିର୍ବିଘ୍ନରେ, ନିରାପଦରେ କେବଳ ସେହିମାନେ କରି ପାରିବେ ଯେଉଁମାନଙ୍କର ନିତ୍ୟବାସ ଅଧ୍ୟାତ୍ମଲୋକରେ, ଯାହାଙ୍କର ମନୋବୃତ୍ତି ସମୂହ ଆତ୍ମାର ଆଲୋକରେ ଆଲୋକିତ, ସତ୍ୟର ବଳବୀର୍ଯ୍ୟରେ ପରିପୂର୍ଣ୍ଣ । ଦିବ୍ୟକର୍ମୀ ସେହି, ଯେ ସକଳ ପକ୍ଷପାତ

ଆସକ୍ତିରୁ ମୁକ୍ତ, ଯେ ନିଜ ଭିତରେ ଅହଂର ସମସ୍ତ ବନ୍ଧନକୁ ଭାଙ୍ଗିଦେଇଛି, ଏବଂ ଯେ ପୃଥିବୀରେ ଅତିମାନସ ସିଦ୍ଧିର ଗୋଟିଏ ନିଖୁଣ, ନିର୍ମଳ, ନୈର୍ବ୍ୟକ୍ତିକ ଯନ୍ତ୍ର ଛଡ଼ା ଆଉ କିଛି ନୁହେଁ ।

ଆଉ ମଧ୍ୟ ଏକ ପ୍ରକାରର ଶବ୍ଦ ଅଛି, ଯାହା ଭାବ, ମତାମତ, ଚିନ୍ତା ଓ ଗବେଷଣାର ଫଳାଫଳକୁ ପ୍ରକାଶ କରେ । ଏହା ହେଲା ବୁଦ୍ଧିଜଗତ ଏବଂ ଆମ୍ଭେମାନେ ଭାବିପାରୁ ଯେ ଏହି ଜଗତର ଲୋକେ ଅଧିକତର ବିବେଚନାଶୀଳ, ସ୍ଥିରମତି ଏବଂ ଏଠାରେ କଠିନ ସଂଯମର ସେତେ ପ୍ରୟୋଜନ ନାହିଁ । କିନ୍ତୁ ବିଷୟଟି ଏକେବାରେ ଏପରି ନୁହେଁ । ଏହି ଚିନ୍ତାଜଗତ ଓ ଜ୍ଞାନଜଗତରେ ମନୁଷ୍ୟ ଆଣିଛି ବ୍ୟକ୍ତିଗତ ବିଶ୍ୱାସର ଉଦ୍ଧାମତା, ଦଳଗତ ଅସହିଷ୍ଣୁତା, ନିଜସ୍ୱ ରୁଚି-ଅରୁଚିର ଉତ୍କଟ ଦାବି । ଏଠାରେ ମଧ୍ୟ ସେହି ବାକ୍‌ସଂଯମ ପ୍ରୟୋଜନ ଏବଂ ସର୍ବଦା ସତର୍କତା ସହିତ ପରିହାର କରିବାକୁ ହେବ ସେହିସବୁ ଭାବର ଆଦାନ-ପ୍ରଦାନ ଯାହା ତିକ୍ତ ଏବଂ ନିରର୍ଥକ ଯୁକ୍ତିତର୍କ ଆଡ଼କୁ ନେଇଯାଏ । ପୁଣି ମଧ୍ୟ ବର୍ଜନ କରିବାକୁ ହେବ ସେହିସବୁ ପ୍ରକାର ମତ-ବିରୋଧିତା ଯାହାର ପରିଣାମ ହୁଏ ପ୍ରଚଣ୍ଡ ବିତର୍କ, ଏପରିକି ମନର ସଂକୀର୍ଣ୍ଣତାରୁ ଜାତ କଳହ । ଏହି ସଂକୀର୍ଣ୍ଣତା ସହଜରେ ଦୂର ହୁଏ ଯେବେ ମନୋରାଜ୍ୟର ବହୁ ଊର୍ଦ୍ଧ୍ୱସ୍ତରକୁ ଉଠିଯିବାକୁ ହୁଏ ।

ବସ୍ତୁତଃ ଯେତେବେଳେ ଜାଣ ଯେ ମାନସିକ ଶବ୍ଦ, ଚିନ୍ତାସକଳ ବାକ୍ୟର ଅତୀତ କିଛିକୁ ପ୍ରକାଶ କରିବାର ଗୋଟାଏ ଉପାୟ ମାତ୍ର, ସେତେବେଳେ ଦଳଗତ ସଂକୀର୍ଣ୍ଣତା ଏକେବାରେ ଅସମ୍ଭବ ହୋଇପଡ଼େ । ପ୍ରତ୍ୟେକ ଚିନ୍ତାରେ ଥାଏ ସତ୍ୟର ଟିକିଏ ଅଂଶ କିଂବା ଗୋଟିଏ ଦିଗ । ଏପରି କୌଣସି ଚିନ୍ତା ନାହିଁ ଯାହା ଚରମ ସତ୍ୟ ।

ବସ୍ତୁସକଳ ଆପେକ୍ଷିକ ଭାବରେ ସତ୍ୟ, ଏହା ବୁଝିପାରିଲେ ନିଜ କଥାରେ ସମତା ଏବଂ ସଂଯମ ରଖିବାକୁ ବହୁତ ସହାୟତା ମିଳେ । ଏହି ବିଷୟରେ ଜଣେ ଅଭିଜ୍ଞ ତତ୍ତ୍ୱଜ୍ଞାନୀ ଏହିପରି କହୁଥିବାର ମୁଁ ଶୁଣିଛି :

''ଏକେବାରେ ଖରାପ ବୋଲି କୌଣସି ବସ୍ତୁ ନାହିଁ; କିନ୍ତୁ ବସ୍ତୁସକଳ ନିଜ ନିଜର ଯଥାର୍ଥ ସ୍ଥାନରେ ନାହାନ୍ତି ବୋଲି ଖରାପ । ପ୍ରତ୍ୟେକ ଜିନିଷକୁ ଯଥାସ୍ଥାନରେ ରଖିଦିଅ, ଦେଖିବ ପୃଥିବୀ ହୋଇଉଠିବ ସୁସମଞ୍ଜସ ।''

ତେବେ କାର୍ଯ୍ୟ ଦୃଷ୍ଟିରୁ କୌଣସି ଭାବନା (Idea)ର ମୂଲ୍ୟ ନିର୍ଭର କରେ ତାହାର ବ୍ୟାବହାରିକ ସାମର୍ଥ୍ୟ ଓ ସାର୍ଥକତା ଉପରେ । ଏକଥା ଅବଶ୍ୟ ସତ୍ୟ ଯେ ବ୍ୟକ୍ତିବିଶେଷ ଅନୁସାରେ ଏହି ପାର୍ଥକ୍ୟର ତାରତମ୍ୟ ହୁଏ । କୌଣସି ଭାବନା (Idea) ଜଣକ ମଧ୍ୟରେ ଦିଏ ପ୍ରବଳ ପ୍ରେରଣା, ଉତ୍ସାହ, ପୁଣି ତାହା ଅନ୍ୟ ପାଖରେ ଏକେବାରେ ନିରର୍ଥକ । ତେବେ ସାମର୍ଥ୍ୟଟି ସଂକ୍ରାମକ । ଆଉ କେତେଗୁଡ଼ିଏ ଭାବନାର ବିଶ୍ୱରୂପାନ୍ତରକାରିଣୀ ଶକ୍ତି ଅଛି । ଏହିସବୁକୁ ଭାଷାରେ ପ୍ରକାଶ କରିବା ଉଚିତ; ଚେତନାର ଆକାଶରେ ଏମାନେ ହେଲେ ପଥପ୍ରଦର୍ଶନକାରୀ ମୁଖ୍ୟ ନକ୍ଷତ୍ର, ଏବଂ ଏହିସବୁ ପୃଥିବୀକୁ ତାହାର ଚରମ ସିଦ୍ଧିର ଆଡ଼କୁ ଚାଳିତ କରନ୍ତି ।

ଶେଷରେ ଶିକ୍ଷା ସମ୍ବନ୍ଧରେ ଯେଉଁସବୁ ଶବ୍ଦ ବ୍ୟବହୃତ ହୁଏ ତାହା ସମ୍ବନ୍ଧେ କିଛି କହିବା । ଏହିସବୁ ଶବ୍ଦର ବ୍ୟବହାର ଶିଶୁଶ୍ରେଣୀଠାରୁ ବିଶ୍ୱବିଦ୍ୟାଳୟ ପାଠ୍ୟକ୍ରମ ପର୍ଯ୍ୟନ୍ତ ବିସ୍ତୃତ, ଆଉ ଚିତ୍ତ-ବିନୋଦନ କିଂବା ଉପଦେଶ ନିମିତ୍ତ କଳା ଓ ସାହିତ୍ୟର ଯେଉଁ ସମ୍ଭାର ସୃଷ୍ଟି କରାହୋଇଛି, ମନୁଷ୍ୟ ସେସବୁକୁ ବାଦ୍ ନ ଦେଇ ଏହା ମଧ୍ୟରେ ଗଣନା କରିବା ଉଚିତ । ଏପରି କ୍ଷେତ୍ରରେ ସବୁ ନିର୍ଭର କରୁଛି କାର୍ଯ୍ୟର ମହତ୍ତ୍ୱ ଉପରେ; କିନ୍ତୁ ବିଷୟଟି ଏତେ ବ୍ୟାପକ ଯେ ଏଠାରେ ତାହା ଆଲୋଚନା କରିବା ସମ୍ଭବ ନୁହେଁ । ବସ୍ତୁତଃ, ଯାହା ହେଉ, ଆଜିକାଲି ଅତି ଆଧୁନିକ ବୈଜ୍ଞାନିକ ଆବିଷ୍କାରସବୁକୁ ଶିକ୍ଷାରେ ଲଗାଇବା ସକାଶେ ବହୁ ଯତ୍ନ ଏବଂ ପ୍ରଶଂସନୀୟ ଉଦ୍ୟମ କରାହେଉଛି । ଯାହାହେଉ ଏଠାରେ ବି ସତ୍ୟର ସାଧକକୁ ତପଶ୍ଚରଣ କରିବାକୁ ପଡ଼ିବ ।

ସାଧାରଣତଃ ଗୋଟିଏ ଧାରଣା ହୋଇଛି ଯେ ଶିଶୁ ଓ

ବୟସ୍କମାନଙ୍କ ଶିକ୍ଷା-ବ୍ୟବସ୍ଥାରେ ଗୁରୁଭାର ଲାଘବ କରିବା ନିମିତ୍ତ କିଛି ହାଲୁକା ଆମୋଦଜନକ ଏବଂ ତୁଚ୍ଛ ଉପଭୋଗ୍ୟ ବିଷୟ ରହିବା ଅବଶ୍ୟ ପ୍ରୟୋଜନ । ଗୋଟାଏ ଦୃଷ୍ଟିରୁ କେତେକ ପରିମାଣରେ ଏହା ସତ୍ୟ; ତେବେ ଦୁଃଖର ବିଷୟ ଏହି ଯେ ମନୁଷ୍ୟର ଏହି ସ୍ୱୀକୃତି, ତା'ର ଅସଂସ୍କୃତ ନିମ୍ନ ପ୍ରକୃତିର ବିକାଶ ନିମିତ୍ତ ଗୋଟାଏ ବାହାନାରେ ପରିଣତ ହୋଇଛି । ସବୁଠାରୁ ବେଶୀ ହୀନ ବୃତ୍ତି, ସବୁଠାରୁ ବେଶୀ କଦର୍ଯ୍ୟ ବୃତ୍ତି, ଏହି ସ୍ୱୀକୃତିର ଆଶ୍ରୟ ନେଇ ଜୀବନର ଅପରିହାର୍ଯ୍ୟ ବସ୍ତୁ ବୋଲି ଆଜି ନିଜକୁ ଜାହିର ଓ ପ୍ରତିଷ୍ଠିତ କରିବାକୁ ଚାହୁଁଛି । ଯଥାର୍ଥରେ ଏହା ଠିକ୍ ନୁହେଁ । ନୀଚତାରେ ନିଜକୁ ଭସେଇ ନ ଦେଇ ବିଶ୍ରାମ କରାଯାଇପାରେ । ଚପଳତାରେ ବୁଡି ନ ଯାଇ ତୃପ୍ତି ଉପଭୋଗ କରାଯାଇପାରେ, ସତ୍ତାର ଅତି ସ୍ଥୂଳ ବସ୍ତୁକୁ ବାହାରେ ପ୍ରକଟ ନ କରି ବି ବିଶ୍ରାମ କରାଯାଇପାରେ । ତପସ୍ୟାର ଦିଗରୁ ଦେଖିଲେ, ଏହିସବୁ ଆବଶ୍ୟକତା ପ୍ରକୃତରେହିଁ ବଦଳିଯାଏ; ବିଶ୍ରାମ ହୋଇଉଠେ ଆନ୍ତର ନୀରବତା, ବିରାମ ହୁଏ ଧ୍ୟାନ, ଆରାମ ହୁଏ ଆନନ୍ଦ ।

ବହୁ ମୁଖରେ ସମର୍ଥିତ ଏହି ପ୍ରକାର ଆମୋଦ-ପ୍ରମୋଦର ପ୍ରୟୋଜନ, ଚେଷ୍ଟାରେ ଶୈଥିଲ୍ୟ, ଅଳ୍ପ-ବହୁତ ବା ପୂରାପୂରି ଜୀବନ-ଲକ୍ଷ୍ୟର ବିସ୍ମୃତି, ଏପରିକି ଜୀବନ-ଧାରଣର ଉଦ୍ଦେଶ୍ୟ ଭୁଲିଯିବା,— ଏସବୁକୁ ସ୍ୱାଭାବିକ ଏବଂ ଅପରିହାର୍ଯ୍ୟ ବୋଲି କହିବା ଉଚିତ ନୁହେଁ; ବରଂ ଏହା ଗୋଟିଏ ଦୁର୍ବଳତା ଯାହା ପାଖରେ ବ୍ୟକ୍ତି ନିଜକୁ ସମର୍ପଣ କରିଦିଏ ତୀବ୍ରତାର ଅଭାବ, ସଙ୍କଳ୍ପର ଅସ୍ଥିରତା, ଅଜ୍ଞାନ, ଅଚେତନା ଏବଂ ତାମସିକତା ଯୋଗୁଁ । ଏହିସବୁ ବୃତ୍ତିକୁ ଅସ୍ୱୀକାର କର, ଶୀଘ୍ରହିଁ ଦେଖିବ ଯେ ସେସବୁ ଆଉ ପ୍ରୟୋଜନ ବୋଲି ବୋଧ ହେବେ ନାହିଁ, ଏପରିକି ସେସବୁ ପ୍ରତି ଏକ ସମୟରେ ଘୃଣା ଆଉ ବିରକ୍ତି ଆସିବ । ତାହାହେଲେ ମନୁଷ୍ୟ-ସୃଷ୍ଟ ବହୁତ ବସ୍ତୁ ଯାହାକୁ କୁହାଯାଉଛି

ଆମୋଦଜନକ କିନ୍ତୁ ଯଥାର୍ଥରେ ଯାହା ନିମ୍ନଗାମୀ କରାଏ, ସେହିସବୁ ଆମ ସମର୍ଥନ ଓ ଉତ୍ସାହ ହରାଇବ ।

ତେବେ, ଆଲୋଚନାର ବିଷୟବସ୍ତୁ ଉପରେ ଉଚ୍ଚାରିତ ଶବ୍ଦର ମୂଲ୍ୟ ନିର୍ଭର କରେ,— ଏପରି ବିଶ୍ୱାସ କରିବା ଉଚିତ ନୁହେଁ । ଅନ୍ୟାନ୍ୟ ବିଷୟ ପରି ଆଧ୍ୟାତ୍ମିକ ବିଷୟରେ ବି ବହୁତ କଥା କୁହାଯାଇପାରେ, କିନ୍ତୁ ଏହିପରି ବିଷୟରେ ବାଚାଳତା ଭୟଙ୍କର ବିପଜ୍ଜନକ । ଉଦାହରଣ ସ୍ୱରୂପ, ନୂତନ ସାଧକ ଯାହାକିଛି ଅଳ୍ପ ଶିଖିଥାଏ, ତାହା ଅନ୍ୟକୁ ଜଣାଇବାକୁ ସର୍ବଦା ଇଚ୍ଛୁକ ହୁଏ । କିନ୍ତୁ ସେ ଏହି ପଥରେ ଯେତେ ଅଗ୍ରସର ହୁଏ ସେତେ ବୁଝିପାରେ ଯେ ତାହାର ଜ୍ଞାନ ଅତି ଅଳ୍ପ ଏବଂ ଅନ୍ୟକୁ ଉପଦେଶ ଦେବାକୁ ଚେଷ୍ଟା କରିବା ଆଗରୁ ନିଜର ଜ୍ଞାନ ସମ୍ବନ୍ଧରେ ନିଃସନ୍ଦେହ ହେବା ପ୍ରୟୋଜନ । ଶେଷରେ ସେ ବୁଦ୍ଧିମାନ୍ ହୋଇ ବୁଝିପାରେ ଯେ ଅଳ୍ପ କେତେକ ମିନିଟ୍ ସକାଶେ ଫଳପ୍ରଦ କିଛି କହିବାକୁ ହେଲେ ତାହା ଆଗରୁ ଅନେକ ଘଣ୍ଟା ପର୍ଯ୍ୟନ୍ତ ନୀରବରେ ମନକୁ ଏକାଗ୍ର କରିବା ଆବଶ୍ୟକ । ଏହା ବ୍ୟତୀତ, ଆନ୍ତର ଜୀବନରେ ଆଧ୍ୟାତ୍ମିକ ପ୍ରୟାସ କ୍ଷେତ୍ରରେ ଆହୁରି କଠୋର ନିୟମ ରଖିବାକୁ ହେବ : ‘‘ବିଶେଷ ପ୍ରୟୋଜନ ନ ହେଲେ ଆଦୌ କିଛି କହିବା ଉଚିତ ନୁହେଁ ।’’

ଏକଥା ସମସ୍ତେ ଜାଣନ୍ତି ଯେ, ସାଧନାଲବ୍ଧ ଅଭିଜ୍ଞତାର କଥା କେବେ ବି କହିବା ଉଚିତ ନୁହେଁ, କହିଲେ ଆଗେଇ ଯିବାର ସଞ୍ଚିତ ଶକ୍ତି ଏକ ମୁହୂର୍ତ୍ତରେ ନଷ୍ଟ ହୋଇଯାଏ । ଗୁରୁଙ୍କ ପାଖରେ ଏହି ନିୟମର ବ୍ୟତିକ୍ରମ ହୁଏ ଯେବେ ତାଙ୍କଠାରୁ ସାଧକ କୌଣସି ଅନୁଭୂତିର ଅର୍ଥ ଜାଣିବାକୁ ଓ ଉପଦେଶ ପାଇବାକୁ ଚାହେଁ । ବସ୍ତୁତଃ କେବଳ ଗୁରୁଙ୍କ ପାଖରେ ଏହିସବୁ ବିଷୟ କହିଲେ କୌଣସି ବିପଦ ନାହିଁ, କାରଣ ସେ ଜ୍ଞାନୀ, ତୁମର ଅନୁଭୂତିର ଉପାଦାନସବୁ କିପରି ଆହୁରି ଊର୍ଦ୍ଧ୍ୱାରୋହଣର ସୋପାନରୂପେ ବ୍ୟବହାର କରାଯାଇ ପାରେ ସେ ତୁମକୁ ଦେଖାଇ ଦିଅନ୍ତି ।

ଏହା ସତ୍ୟ ଯେ ନିଜର ବ୍ୟକ୍ତିଗତ ବିଷୟ ସମ୍ବନ୍ଧରେ ବି ଗୁରୁଙ୍କୁ ମାନିବାକୁ ହୁଏ ସେହି ଏକହିଁ ବାକ୍-ସଂଯମର ନିୟମ । ପ୍ରକୃତି-ରାଜ୍ୟରେ ସକଳ ଜିନିଷ ଗତିଶୀଳ; ଯାହା ଆଗକୁ ଯାଏ ନାହିଁ, ତାହା ପଛକୁ ଫେରି ଯିବାକୁ ବାଧ୍ୟ ହୁଏ । ନିଜର ଶିଷ୍ୟତୁଲ୍ୟ ଗୁରୁଙ୍କୁ ବି ଉନ୍ନତି-ପଥରେ ଆଗେଇ ଯିବାକୁ ହେବ, ତେବେ ତାଙ୍କ ଉନ୍ନତିର କ୍ଷେତ୍ର ହେବ ଅନ୍ୟ ସ୍ତରରେ । ତାଙ୍କ ପକ୍ଷରେ ବି ନିଜ ଅନୁଭୂତିର କଥା କହିବା ସହାୟକ ନୁହେଁ; କଥାରେ ବ୍ୟକ୍ତ କଲେ ଅଭିଜ୍ଞତାରେ ଥିବା ସକ୍ରିୟ ଶକ୍ତି ବହୁ ପରିମାଣରେ ଲୋପ ପାଇଯାଏ । ଅନ୍ୟ ଦିଗରେ ଗୁରୁ ଶିଷ୍ୟମାନଙ୍କ ପାଖରେ ନିଜର ଅନୁଭୂତି ବର୍ଣ୍ଣନା କରିବା ଦ୍ୱାରା ସେମାନଙ୍କର ବୁଦ୍ଧି-ବିଚାରରେ ବିଶେଷ ସାହାଯ୍ୟ କରନ୍ତି, ଫଳତଃ ସେମାନଙ୍କର ଉନ୍ନତି ଘଟେ । କେଉଁ ଦିଗରେ କେତେ ପରିମାଣରେ ନିୟମ ଭଙ୍ଗ କରିବାକୁ ହେବ, କିଂବା କରିବା ସମ୍ଭବ ତାହା ସ୍ଥିର କରିବା ଭାର ତାଙ୍କ ସୁବିବେଚନା ଉପରେ ନିର୍ଭର କରେ । ତେବେ ତାଙ୍କ ବ୍ୟାଖ୍ୟାରେ ଯେପରି ଗର୍ବ ବା ଆତ୍ମଗରିମା ପ୍ରବେଶ ନ କରେ, କାରଣ ସାମାନ୍ୟତମ ଦମ୍ଭ ବି ତାଙ୍କୁ ଭଣ୍ଡ ପଦବୀକୁ ଟାଣି ଆଣିପାରେ ।

ଶିଷ୍ୟମାନଙ୍କୁ ମୁଁ କହୁଛି "ଗୁରୁ ଯେପରି ହୁଅନ୍ତୁ ନା କାହିଁକି, ସର୍ବଦା ତାଙ୍କର ଅନୁଗତ ହୋଇ ରହ; ଯେତେଦୂର ତୁମର କ୍ଷମତା ଅଛି, ସେତେଦୂର ସେ ତୁମକୁ ନେଇଯିବେ । ତେବେ ଯଦି ଭଗବାନଙ୍କୁ ଗୁରୁରୂପେ ପାଇବାର ସୌଭାଗ୍ୟ ଥାଏ ତେବେ ତୁମ ସିଦ୍ଧିର କୌଣସି ସୀମା ରହିବ ନାହିଁ ।"

ତଥାପି ଭଗବାନ୍ ପୃଥିବୀରେ ମନୁଷ୍ୟରୂପ ଧାରଣ କଲେ ବି ତାଙ୍କୁ ଉନ୍ନତିର ଏହି ଏକହିଁ ନିୟମ ମାନି ଚଳିବାକୁ ହୁଏ । ଯେଉଁ ଶରୀର ତାଙ୍କର ଆବାସଭୂମି, ଯାହା ତାଙ୍କର ପ୍ରକାଶର ଯନ୍ତ୍ର, ତାକୁ ବି ନିରବଚ୍ଛିନ୍ନ ଉନ୍ନତି କରି ଚାଲିବାକୁ ହୁଏ ଏବଂ ତାଙ୍କର ଆତ୍ମ-ପ୍ରକାଶର ଯନ୍ତ୍ର ଯେଉଁ ନିୟମ ମାନି ଚାଲେ ତାହା ସଙ୍ଗେ ପାର୍ଥିବ ଉନ୍ନତିର ସାଧାରଣ ନିୟମର ଘନିଷ୍ଠ ସମ୍ପର୍କ ଥାଏ । ଭଗବାନ୍ ଏହି ପୃଥିବୀକୁ ଆସି ନିଖୁଣ ପରିପୂର୍ଣ୍ଣ

କେବଳ ସେତେବେଳେ ହୋଇପାରନ୍ତି ଯେତେବେଳେ ମନୁଷ୍ୟ ଏହି ପରିପୂର୍ଣ୍ଣତା ବୁଝିବାକୁ ଏବଂ ପ୍ରକାଶ କରିବାକୁ ସମର୍ଥ ହୁଏ । ତାହା ସମ୍ଭବ ହୁଏ ସେହି ଦିନ, ଯେଉଁ ଦିନ ମନୁଷ୍ୟ ଭଗବାନଙ୍କ ପ୍ରତି ପ୍ରେମରେ ସବୁକିଛି କରେ, ବର୍ତ୍ତମାନ ପରି ତାଙ୍କ ପ୍ରତି କର୍ତ୍ତବ୍ୟବୋଧରେ ନୁହେଁ । ସେତେବେଳେ ପ୍ରୟାସ ଓ ସଂଘର୍ଷ ପରିବର୍ତ୍ତରେ ପ୍ରଗତି ହୋଇଉଠେ ଆନନ୍ଦ । କିଂବା ଆହୁରି ସ୍ପଷ୍ଟ ଭାବରେ କହିବାକୁ ଗଲେ ସେତେବେଳେ ଆନନ୍ଦର ମଧ୍ୟଦେଇ ସତ୍ତାର ପୂର୍ଣ୍ଣ ସହଯୋଗ ଦ୍ୱାରା ପ୍ରଗତି ହୁଏ, ଅହଂକାରର ବାଧାକୁ ବଳପୂର୍ବକ ଦମନ କରି ନୁହେଁ, ଯାହାର ଅର୍ଥ କଠୋରଶ୍ରମ, ଏପରିକି ମହାନ୍ ଦୁଃଖ ।

ସର୍ବଶେଷରେ ମୁଁ ତୁମକୁ ଏତିକି କହୁଛି : ଯଦି ତୁମେ ଚାହଁ ତୁମମାନଙ୍କର ବାଣୀ ସତ୍ୟକୁ ପ୍ରକାଶ କରୁ, ଶବ୍ଦବ୍ରହ୍ମର ଶକ୍ତି ଲାଭ କରୁ, ତାହା ହେଲେ ବକ୍ତବ୍ୟ ବିଷୟ ଆଗରୁ ଭାବ ନାହିଁ, ଆଗରୁ ସ୍ଥିର କରି ଯାଅ ନାହିଁ, କ'ଣ କହିବା ଭଲ ହେବ, ଅଥବା କ'ଣ କହିବା ମନ୍ଦ ହେବ, ଅଥବା ଆଗରୁ ବିଚାର କରି ଯାଅ ନାହିଁ ତୁମ କଥାର ଫଳ କ'ଣ ହେବ । ମନକୁ ନିସ୍ତବ୍ଧ କର, ଯଥାର୍ଥ ଭାବ ସହ ସ୍ଥିର ହୋଇ ରୁହ, ଏହି ମନୋଭାବ ହେଲା ପୂର୍ଣ୍ଣପ୍ରଜ୍ଞା, ପୂର୍ଣ୍ଣଜ୍ଞାନ, ପୂର୍ଣ୍ଣଚେତନା ଆଡ଼କୁ ନିରନ୍ତର ଅଭୀପ୍ସା । ଯେବେ ତୁମର ଅଭୀପ୍ସା ଐକାନ୍ତିକ, ଯଦି ତାହା ନିଜର କାର୍ଯ୍ୟରେ ସଫଳତା ଏବଂ ସାର୍ଥକତା ଲାଭ ନିମିତ୍ତ ଏକ ପ୍ରଚ୍ଛନ୍ନ ସ୍ୱାର୍ଥପରତା ନୁହେଁ, ଯଦି ତାହା ବିଶୁଦ୍ଧ, ସ୍ୱତଃସ୍ଫୂର୍ତ୍ତ ଏବଂ ସର୍ବାଙ୍ଗୀଣ, ତେବେ ତୁମେ କଥା କହିବ ସହଜ ସରଳ ଭାବରେ, କହିବ ଠିକ୍ ପ୍ରୟୋଜନୀୟ କଥାଟି, ଗୋଟିଏ ବେଶୀ ବା ଗୋଟିଏ କମ୍ ନୁହେଁ, ସେତେବେଳେ ତୁମର ଭାଷାରେ ରହିବ ଗୋଟିଏ ସୃଜନଶକ୍ତି ।

(ବୁଲେଟିନ୍, ଏପ୍ରିଲ ୧୯୫୩)

(୩)

## ପ୍ରେମର ତପସ୍ୟା

ସକଳ ପ୍ରକାର ତପଶ୍ଚରଣ ମଧ୍ୟରେ ସବୁଠାରୁ ଦୁଃସାଧ୍ୟ ହେଲା ହୃଦୟାନୁଭବ ଓ ଭାବାବେଗର ସଂଯମ, ପ୍ରେମର ତପସ୍ୟା ।

ବସ୍ତୁତଃ ଅନ୍ୟ ସକଳ କ୍ଷେତ୍ର ଅପେକ୍ଷା ଭାବାବେଗର ରାଜ୍ୟରେ ମନୁଷ୍ୟ ଅନୁଭବ କରେ ଗୋଟାଏ ଅନିବାର୍ଯ୍ୟତା, ଗୋଟାଏ ଅଲଘଂନୀୟତା ଏବଂ ଗୋଟାଏ ବିଧାନ ଯାହା ତାହା ଉପରେ ପ୍ରଭୁତ୍ୱ କରେ ଏବଂ ଯାହାର ହସ୍ତରୁ ଖସିପଳାଇବାକୁ ତା'ର ଉପାୟ ନ ଥାଏ । ପ୍ରେମ (ଅନ୍ତତଃ, ମନୁଷ୍ୟ ଯାହାକୁ ଏହି ନାମରେ ଅଭିହିତ କରେ) କହିଲେ ମନେହୁଏ ଯେପରି ତାହା ଗୋଟାଏ ମହାପରାକ୍ରମଶାଳୀ ପ୍ରଭୁ, ତାହାର ଖିଆଲର ହାତରୁ କାହାରି ବି ନିସ୍ତାର ନାହିଁ; ସେ ଖୁସି ଅନୁସାରେ ଯେତେବେଳେ ସେତେବେଳେ ଯାହାକୁ ତାହାକୁ ବିଦ୍ଧ କରେ, ଇଚ୍ଛା କର ବା ନ କର ଅନୁଗତ ହେବାକୁ ବାଧ୍ୟ କରେ । ଏହି ପ୍ରେମ ନାମରେ ପୃଥିବୀପୃଷ୍ଠରେ ବହୁ ଘୃଣ୍ୟତମ ପାପ କର୍ମ, ଘୋର ନିର୍ବୁଦ୍ଧିତାର କାର୍ଯ୍ୟ ବି କରାହୋଇଛି ।

ତଥାପି ମନୁଷ୍ୟ ପ୍ରେମର ଏହି ଶକ୍ତିକୁ ଶାସନରେ ରଖିବାକୁ, ଶାନ୍ତ ଏବଂ ସଂଯତ କରିବାକୁ ସବୁପ୍ରକାର ନୈତିକ ଓ ସାମାଜିକ ନିୟମାଦି ତିଆରି କରିଛି । ତେବେ ଏହିସବୁ ନିୟମ କେବଳ ଭଙ୍ଗ କରିବାକୁ ତିଆରି ହୋଇଛି । ପ୍ରେମର ଅବାଧ କ୍ରିୟା ଉପରେ ଯଉଁସବୁ ବନ୍ଧନ ଲଦି ଦିଆ ହୁଏ, ତାହା ଫଳରେ ତାହାର ବିସ୍ଫୋରଣଶକ୍ତି ବୃଦ୍ଧି ପାଏ । ପ୍ରେମର ଗତିବୃତ୍ତିକୁ ନିୟମକାନୁନ ଦ୍ୱାରା ଶାସନ କରାଯାଇ ପାରିବ ନାହିଁ । କେବଳ ଗୋଟିଏ ବୃହତ୍ତର, ମହତ୍ତର ଏବଂ ସତ୍ୟତର ପ୍ରେମର ଶକ୍ତିହିଁ ଏହି ଅଦମ୍ୟ

ପ୍ରେମର ଆବେଗକୁ ସଂଯତ କରିପାରେ । ଉଚ୍ଚତର ପ୍ରେମହିଁ କେବଳ ପ୍ରେମକୁ ଉଦ୍‌ଭାସିତ, ରୂପାନ୍ତରିତ ଏବଂ ପ୍ରସାରିତ କରି ଶାସନ କରିପାରେ । କାରଣ ଅନ୍ୟସବୁ କ୍ଷେତ୍ର ଅପେକ୍ଷା ଏଠାରେ ବେଶୀ ସତ୍ୟ ଏହି ଯେ ସଂଯମର ଅର୍ଥ ଦମନ ବା ଧ୍ୱଂସ ନୁହେଁ, ବରଂ ଏକ ରୂପାନ୍ତର, ଏକ ପବିତ୍ର ରସାୟନ । କାରଣ ବିଶ୍ୱର ସକଳ ସକ୍ରିୟ ଶକ୍ତିର ମଧ୍ୟରେ ପ୍ରେମହିଁ ହେଲା ସବୁଠାରୁ ଦୁର୍ବାର ଓ ଦୁର୍ଦମନୀୟ । ପ୍ରେମ ବ୍ୟତୀତ ଏହି ପୃଥିବୀ ବିଶୃଙ୍ଖଳା ଓ ଅଚେତନା ମଧ୍ୟରେ ବୁଡିଯିବ ।

ବାସ୍ତବରେ ଚେତନାହିଁ ହେଲା ବିଶ୍ୱର ସ୍ରଷ୍ଟା, କିନ୍ତୁ ପ୍ରେମ ଏହାର ରକ୍ଷାକର୍ତ୍ତା । ଏକମାତ୍ର ସଚେତନ ଉପଲବ୍ଧିହିଁ ପ୍ରେମ କ'ଣ, ତାହା କେଉଁଠାରୁ ଆସେ ଏବଂ ତାହା କିପରି— ଏହାର ଇଙ୍ଗିତ ବା ସୂଚନା ଦେଇପାରେ । ଯାହା ବର୍ଣ୍ଣନାତୀତ ତାହାକୁ ବର୍ଣ୍ଣନା କରିବା କେବଳ ବାହ୍ୟ ଆଡ଼ମ୍ବର, ମନର ବିଳାସ ମାତ୍ର । ଦାର୍ଶନିକ ଅଧ୍ୟାତ୍ମ-ସାଧକ, ରହସ୍ୟବାଦୀ ସମସ୍ତେହିଁ ବୃଥା ଚେଷ୍ଟା କରିଛନ୍ତି । ସେମାନେ ଯେଉଁଠାରେ ବିଫଳ ହୋଇଛନ୍ତି ସେଠାରେ ମୁଁ ଯେ ସଫଳ ହେବି ଏପରି ଦାବି କରୁ ନାହିଁ । ତେବେ ମୋର ଉଦ୍ଦେଶ୍ୟ : ଯେଉଁ ବିଷୟଟି ସେମାନଙ୍କ କଲମରେ ଅତି ତାତ୍ତ୍ୱିକ ଓ ଜଟିଳ ହୋଇପଡ଼ିଛି ତାହାକୁ ଯେତେଦୂର ସମ୍ଭବ ଅତି ସରଳ ଭାଷାରେ କହିବି । ମୋ ବକ୍ତବ୍ୟର ଏକମାତ୍ର ଲକ୍ଷ୍ୟ ହେଲା ଶିକ୍ଷାର୍ଥୀକୁ ସେହି ଜୀବନ୍ତ ଉପଲବ୍ଧି ଆଡ଼କୁ ନେଇଯିବା ଏବଂ ଏପରିକି ଶିଶୁକୁ ବି ସେ ଦିଗରେ ପଥନିର୍ଦ୍ଦେଶ କରିବା ।

ସ୍ୱରୂପତଃ ପ୍ରେମହିଁ ହେଲା ଏକାତ୍ମ-ମିଳନର ଆନନ୍ଦ, ଏହାର ଚରମ ପ୍ରକାଶ ହୁଏ ମିଳନର ଆନନ୍ଦରସରେ । ଏହି ଦୁଇର ମଧ୍ୟରେ ତାହାର ସାର୍ବଭୌମ ଅଭିବ୍ୟକ୍ତିର ସକଳ ରୂପ ବିଦ୍ୟମାନ ।

ପ୍ରେମର ଅଭିବ୍ୟକ୍ତିର ପ୍ରାରମ୍ଭରେ, ତାହାର ବିଶୁଦ୍ଧ ମୂଳ ତତ୍ତ୍ୱରେ ଦୁଇଟି ଗତିଧାରା ଅଛି,— ପରିପୂର୍ଣ୍ଣ ଐକ୍ୟ ଆଡ଼କୁ ପରସ୍ପର ପରିପୂରକ

ଦୁଇଟି ବିଭିନ୍ନ ଗତିର ଧାରା । ଗୋଟିଏ ପାଖରେ ଆକର୍ଷଣର ଚରମ ଶକ୍ତି ଏବଂ ଅନ୍ୟ ପାଖରେ ପରମ ଆତ୍ମ-ନିବେଦନର ଅଦମ୍ୟ ପ୍ରୟୋଜନ । ବ୍ୟକ୍ତିର ଚେତନା ଯେତେବେଳେ ତହାର ମୂଳ ଉତ୍ସରୁ ବିଛିନ୍ନ ହୋଇ ଅଚେତନାରେ ପରିଣତ ହେଲା ସେତେବେଳେ ବିଚ୍ଛେଦର ଯେଉଁ ବିପୁଳ ଗହ୍ୱର ବ୍ୟକ୍ତି ମଧ୍ୟରେ ଦେଖାଦେଲା, ତାହା ଉପରେ ସଂଯୋଗର ସେତୁ ନିର୍ମାଣ କରିବାର ସାମର୍ଥ୍ୟ ଥିଲା କେବଳ ଏହି ପ୍ରେମର ।

ଯାହା ଦେଶକାଳ ମଧ୍ୟରେ ପ୍ରକ୍ଷିପ୍ତ କରା ହୋଇଥିଲା, ତାକୁ ପୁନଶ୍ଚ ନିଜ ଭିତରକୁ ଫେରାଇ ଆଣିବାକୁ ହେଲା, ଯାହା ଦ୍ୱାରା ବିଶ୍ୱର ବିଲୋପ ନ ଘଟେ । ସେଥି ପାଇଁ ପ୍ରେମହିଁ ଉତ୍ସାରିତ ହୋଇ ଉଠିଲା ମିଳନର ଅଦମ୍ୟ ଶକ୍ତିରୂପେ ।

ଏହି ପ୍ରେମ ଅନ୍ଧକାର ଏବଂ ଅଚେତନା ଉପରେ ଉଡ଼ି ବୁଲୁଛି ଏବଂ ନିଜକୁ ବିକୀର୍ଣ୍ଣ କରିଛି, ଚୂର୍ଣ୍ଣ ବିଚୂର୍ଣ୍ଣ କରିଛି ଅଗାଧ ରାତ୍ରିର ବକ୍ଷରେ । ସେତିକିବେଳୁ ଆରମ୍ଭ ହୋଇଛି ଗୋଟିଏ ଜାଗରଣ ଏବଂ ଆରୋହଣ, ଜଡ଼ ପଦାର୍ଥର ଧୀର ସଙ୍ଗଠନ ଏବଂ ତାହାର ଅସରନ୍ତି କ୍ରମୋନ୍ନତି । ବିକୃତ, ଭ୍ରାନ୍ତ ଓ ଅସ୍ପଷ୍ଟରୂପେ ପ୍ରେମ କ'ଣ ପ୍ରତ୍ୟେକ ଭୌତିକ ଓ ପ୍ରାଣିକ ପ୍ରକୃତିର ପ୍ରେରଣା, ଗତିବୃତ୍ତି ଏବଂ ସଂଘବଦ୍ଧତାର ପ୍ରବେଗ ସଙ୍ଗେ ଯୁକ୍ତ ନୁହେଁ ? ଏହା ସ୍ପଷ୍ଟଭାବେ ଉଦ୍ଭିଦ ଜଗତରେ ଦେଖାଯାଏ । ତରୁଲତା ମଧ୍ୟରେ ଅଧିକ ଆଲୋକ, ଅଧିକ ବାୟୁ ଏବଂ ଅଧିକ ସ୍ଥାନ ପାଇବାକୁ ଏହାହିଁ ହେଲା ଅଭିବୃଦ୍ଧିର ଆସ୍ପୃହା, ପୁଷ୍ପର ଆନନ୍ଦମୟ ପ୍ରସ୍ଫୁଟନରେ ଏହାର ଦାନ ହେଲା ସୌନ୍ଦର୍ଯ୍ୟ ଓ ସୁଗନ୍ଧ । ପଶୁର କ୍ଷୁଧା-ତୃଷାର ପଶ୍ଚାତରେହିଁ ଏହି ପ୍ରେମ ବିଦ୍ୟମାନ— ତାହାର ଆତ୍ମସାତ୍, ସଂପ୍ରସାରଣ, ଉତ୍ପାଦନର ପ୍ରୟୋଜନବୋଧର ପଶ୍ଚାତରେ, ସଂକ୍ଷେପରେ, ସକଳ ପ୍ରକାର କାମନାର ପଶ୍ଚାତରେ, ଜ୍ଞାତରେ ହେଉ ବା ଅଜ୍ଞାତରେ ହେଉ ଏହି ପ୍ରେମ ବିଦ୍ୟମାନ । ଉନ୍ନତ ପ୍ରାଣୀମାନଙ୍କ ମଧ୍ୟରେ ଶିଶୁ ପ୍ରତି ମା'ର ସ୍ୱାର୍ଥଶୂନ୍ୟ ସ୍ନେହମମତା

ମଧ୍ୟରେ ଏହାହିଁ ଦେଖାଦିଏ । ତା'ପରେ ସ୍ୱାଭାବିକରୂପେ ଉଠେ ମନୁଷ୍ୟର କଥା ଯେଉଁଠାରେ ଦିଗ୍‌ବିଜୟୀ ମନର କ୍ରିୟାକଳାପ ମଧ୍ୟରେ ଏହି ସମ୍ମିଶ୍ରଣ ତାହାର ଚରମ ସୀମାକୁ ଉଠିଛି, କାରଣ ଏହା ସେଠାରେ ହୋଇଛି ସଚେତନ ଓ ସ୍ୱେଚ୍ଛାବଶ । ବସ୍ତୁତଃ ପୃଥିବୀରେ ଯେତେବେଳେ ଅନୁକୂଳ ଅବସ୍ଥା ଦେଖାଦେଲା, ସେତେବେଳେ ପ୍ରକୃତି ପ୍ରେମର ଏହି ମହତୀଶକ୍ତିକୁ ତା'ର ଉତ୍ପାଦନ ବୃତ୍ତି ସଙ୍ଗେ ଯୁକ୍ତ ଏବଂ ମିଶ୍ରିତ କରି ସୃଜନ କାର୍ଯ୍ୟରେ ଲଗାଇବାକୁ ଚାହିଁଲା । ଏହି ଦୁଇଟିର ସମ୍ବନ୍ଧ ଏତେ ନିବିଡ଼ ଏବଂ ଗାଢ଼ ହୋଇଯାଇଛି ଯେ ଖୁବ୍ ଅଳ୍ପ ମନୁଷ୍ୟହିଁ,– ଯେଉଁମାନଙ୍କର ଚେତନା ଜ୍ୟୋତିର୍ମୟ ହୋଇଛି,– ଏହାକୁ ବିଚ୍ଛିନ୍ନ କରି ଦେଖି ପାରନ୍ତି ଏବଂ ପୃଥକ୍ କରି ଅନୁଭବ କରିପାରନ୍ତି । ଏହିପରି ପ୍ରେମର ହୋଇଛି ଅଧଃପତନ ଏବଂ ଏହା ପଶୁସ୍ତରକୁ ଖସି ଯାଇଛି ।

ପ୍ରକୃତିର କର୍ମଧାରା ଦେଖି ମନେ ହୁଏ ଯେ ଏହିଠାରୁ ପୁଣି ସେ ଚାହେଁ ବୃହତ୍‌ରୁ ବୃହତ୍ତର ଓ ଜଟିଳରୁ ଜଟିଳତର ଜନସମଷ୍ଟି ମଧ୍ୟଦେଇ କ୍ରମେ କ୍ରମେ ଏବଂ ସ୍ତରେ ସ୍ତରେ ସେହି ଆଦିମ ଐକ୍ୟକୁ ଗଢ଼ିତୋଳିବାକୁ । ସେ ପ୍ରେମର ସାହାଯ୍ୟରେ ଦୁଇଟି ବ୍ୟକ୍ତିଙ୍କୁ ଏକତ୍ର କରି ଦ୍ୱୈତ-ସମଷ୍ଟି କଲା,– ଏହି ହେଲା ପରିବାରର ଉତ୍ପତ୍ତି । ଥରେ ସେ ବ୍ୟକ୍ତିଗତ ସଂକୀର୍ଣ୍ଣ ଅହଂକାରର ସୀମାକୁ ଭାଙ୍ଗି ତାକୁ ସନ୍ତାନସନ୍ତତିଙ୍କର ଜନ୍ମରେ ଦ୍ୱୈତ ଅହଂକାରରେ ପରିବର୍ତ୍ତିତ କଲା ପରେ ସେ ଆଣିଲା ଆହୁରି ଜଟିଳତର ସମଷ୍ଟି, ପରିବାର । ତା'ପରେ ପରିବାର ପରିବାର ମଧ୍ୟରେ ନାନା ପ୍ରକାର ଯୋଗାଯୋଗ, ନାନା ବ୍ୟକ୍ତିଗତ ଆଦାନ-ପ୍ରଦାନ ଓ ରକ୍ତମିଶ୍ରଣକୁ ଆଶ୍ରୟ କରି ଦେଖାଗଲା ବୃହତ୍ତର ଜନସମଷ୍ଟି : ଜାତି, କୁଳ, ଶ୍ରେଣୀ, ଉପଜାତି, ପରିଶେଷରେ ସୃଷ୍ଟି ହେଲା ଦେଶ । ସମସାମୟିକ ଭାବରେ ବିଶ୍ୱର ବିଭିନ୍ନ ଭାଗରେ ଏହି ଜନସମଷ୍ଟି ଗଠନର ପ୍ରୟାସ ହେଲା; ଏହାହିଁ ବିଭିନ୍ନ ଜାତିରୂପେ ଗଢ଼ିଉଠିଛି, ପୁଣି ଧୀରେ ଧୀରେ ପ୍ରକୃତି ଏହି ସମସ୍ତ ଜାତିକୁ

ମିଳେଇ ଦେଇ ତାହାର ବିଶ୍ୱବ୍ୟାପୀ ମାନବ ଐକ୍ୟର ଯଥାର୍ଥ ଓ ସ୍ଥୂଳ ଭିତ୍ତି ପ୍ରସ୍ତୁତ କରିବ ।

ଅଧିକାଂଶ ଲୋକଙ୍କ ଚେତନାରେ ଏହିସବୁ ଜଣାପଡ଼େ ଗୋଟିଏ ଆକସ୍ମିକ ଘଟଣା ପରି । ସେମାନେ ଦେଖନ୍ତି ନାହିଁ ଏହାର ଅନ୍ତରାଳରେ ଗୋଟାଏ ବିଶ୍ୱବ୍ୟାପୀ ପରିକଳ୍ପନା; ସେମାନେ ଘଟଣାବଳିର ବାହ୍ୟରୂପକୁହିଁ ଦେଖନ୍ତି, ନିଜର ଅଭିରୁଚି ଅନୁସାରେ, ଭଲ ହେଉ ବା ମନ୍ଦ ହେଉ; ଏଥିରେ କେତେକେ ସନ୍ତୁଷ୍ଟ ହୁଅନ୍ତି, କେତେକେ ଅସନ୍ତୁଷ୍ଟ ହୁଅନ୍ତି ।

ସନ୍ତୁଷ୍ଟ ହେବା ଲୋକଙ୍କ ମଧ୍ୟରୁ ଗୋଟିଏ ଶ୍ରେଣୀର ଲୋକ ଅଛନ୍ତି, ଯେଉଁମାନେ ପ୍ରକୃତି ସଙ୍ଗେ ପୂର୍ଣ୍ଣରୂପେ ତାଳଦେଇ ଚାଲନ୍ତି; ଏହିମାନେ ହେଲେ ଆଶାବାଦୀ । ରାତି ଅଛି ବୋଲି ଏମାନଙ୍କ ପକ୍ଷରେ ଦିନ ହେଲା ଶୁଭ୍ରତର, ମଳିନତା ଅଛି ବୋଲି ରଙ୍ଗ ହେଲା ଉଜ୍ଜ୍ୱଳତର, ଦୁଃଖ ଅଛି ବୋଲି ଆନନ୍ଦ ହେଲା ତୀବ୍ରତର, ବେଦନା ଅଛି ବୋଲି ସୁଖ ପ୍ରତି ରହିଛି ଅଧିକ ଆକର୍ଷଣ, ଏବଂ ରୋଗ ଅଛି ବୋଲି ସ୍ୱାସ୍ଥ୍ୟର ମୂଲ୍ୟ ଅଛି । କେତେକ ଲୋକ ଏପରି କହିବାର ମୁଁ ଶୁଣିଛି ଯେ ସେମାନଙ୍କର ଶତ୍ରୁ ଥିବାରୁ ସେମାନେ ବନ୍ଧୁଙ୍କର ମୂଲ୍ୟ ବୁଝନ୍ତି । ଯାହାହେଉ, ଏମାନଙ୍କ ପାଖରେ ଯୌନକ୍ରିୟା ହେଲା ଗୋଟଏ ପରମ ପ୍ରିୟ ବସ୍ତୁ, ଭୋଜନ-ବିଳାସ ଜୀବନ-ଉପଭୋଗର ଗୋଟିଏ ଅପରିହାର୍ଯ୍ୟ ଅଙ୍ଗ; ଏବଂ ଏମାନଙ୍କ ପାଖରେ ଖୁବ୍ ସ୍ୱାଭାବିକ ଯେ ଜନ୍ମଗ୍ରହଣ କଲେ ମୃତ୍ୟୁକୁ ବରଣ କରିବାକୁହିଁ ହେବ, କାରଣ ଏହା ଦ୍ୱାରା ସେହି ଜୀବନ-ଯାତ୍ରାର ସମାପ୍ତି ଘଟେ ଯାହା ଦୀର୍ଘକାଳ ସ୍ଥାୟୀ ହୋଇଥିଲେ ବିରକ୍ତିକର ହୋଇଥାଆନ୍ତା ।

ସଂକ୍ଷେପରେ, ସେମାନଙ୍କର ବର୍ତ୍ତମାନ ଜୀବନ ଯେପରି ଅଛି ସେଥିରେହିଁ ସେମାନେ ସନ୍ତୁଷ୍ଟ, ଜୀବନର ଗୋଟାଏ ଲକ୍ଷ୍ୟ ବା ସାର୍ଥକତା ଥାଇପାରେ ଏହା ନେଇ ସେମାନେ ମୁଣ୍ଡ ଖେଳାନ୍ତି ନାହିଁ । ସେମାନେ ପରର ଦୁଃଖ ଦେଖି ବ୍ୟସ୍ତ ହୁଅନ୍ତି ନାହିଁ ଏବଂ ଅଗ୍ରଗତିର କୌଣସି ପ୍ରୟୋଜନ ବୋଧ କରନ୍ତି ନାହିଁ ।

ଏପରି ଲୋକଙ୍କୁ 'ରୂପାନ୍ତର' କରିବାକୁ କେବେ ବି ଚେଷ୍ଟା କରିବ ନାହିଁ; ଏହା ହେବ ଗୋଟାଏ ମସ୍ତବଡ଼ ଭୁଲ୍ । ଯଦି ଅସାବଧାନତାବଶତଃ ସେମାନେ ତୁମ କଥା ଶୁଣନ୍ତି ତାହାହେଲେ ସେମାନେ ସେମାନଙ୍କର ବର୍ତ୍ତମାନର ସ୍ଥିତି ହରାଇବେ ଏବଂ ତାହା ସ୍ଥାନରେ ଗୋଟାଏ ନୂତନ ସ୍ଥିତି ପାଇବେ ନାହିଁ । ସେମାନେ ଆନ୍ତର ଜୀବନ ସକାଶେ ପ୍ରସ୍ତୁତ ନୁହନ୍ତି । ସେମାନେ ହେଲେ ପ୍ରକୃତିର ପ୍ରିୟପାତ୍ର; ପ୍ରକୃତି ସଙ୍ଗେ ସେମାନଙ୍କର ଘନିଷ୍ଠ ସମ୍ପର୍କ ଅଛି ଏବଂ ଏହି ସମ୍ପର୍କକୁ ଅନର୍ଥକ ବିପର୍ଯ୍ୟସ୍ତ କରିବା ଉଚିତ ନୁହେଁ ।

ଏମାନଙ୍କ ଛଡ଼ା କମ୍ ସୁଖୀ ଏବଂ ଅଳ୍ପକ୍ଷଣସ୍ଥାୟୀ ସୁଖର ଅଧିକାରୀ ଆଉ ଏକ ପ୍ରକାରର ଲୋକ ଅଛନ୍ତି । ପ୍ରେମର କ୍ରିୟାରେ ଲାଗି ରହିଥିବା କୁହୁକ ହେଲା ସେମାନଙ୍କର ସନ୍ତୋଷର କାରଣ । ପ୍ରତ୍ୟେକ ଥର ବ୍ୟକ୍ତି ତାହାର ଅହଂକାରାବଦ୍ଧ ସଂକୀର୍ଣ୍ଣ ସୀମାକୁ ଯେତେବେଳେ ଭାଙ୍ଗିଦିଏ, ଯେବେ ଆତ୍ମୋତ୍ସର୍ଗ ଦ୍ୱାରା ମୁକ୍ତ ଆକାଶକୁ ଉଡ଼ିଯାଏ, ହୁଏତ ଏହା ବ୍ୟକ୍ତି ପାଇଁ ହେଉ ବା ଦେଶ ପାଇଁ ହେଉ ବା ତାହାର ଆଦର୍ଶ ପାଇଁ ହେଉ, ସେ ଏହି ଆତ୍ମତ୍ୟାଗରେ ପାଏ ଗୋଟାଏ ମହାନ୍ ଆସ୍ୱାଦ ଏବଂ ଏଥିରେ ମନେହୁଏ ଯେପରି ତାହାର ଭଗବାନଙ୍କ ସଙ୍ଗେ ସଂଯୋଗ ହୋଇଛି । କିନ୍ତୁ ସଚରାଚର ଏହା ଗୋଟିଏ କ୍ଷଣସ୍ଥାୟୀ ସଂଯୋଗ; କାରଣ ମନୁଷ୍ୟ ମଧ୍ୟରେ ପ୍ରେମ ଆସିବା ମାତ୍ରକେ ତାହାର ଅହଂଗତ ନିମ୍ନବୃତ୍ତି ସଙ୍ଗେ ମିଶିଯାଏ । ତାହାକୁ ଏମାନେ ମଳିନ କରନ୍ତି ଏବଂ ତାହାର ପବିତ୍ରତାକୁ ନଷ୍ଟ କରିଦିଅନ୍ତି । ତେବେ ଯଦି ଏହା ବିଶୁଦ୍ଧ ରହିଥାଆନ୍ତା, ତଥାପି ଭଗବତ୍ ସତ୍ତା ସଙ୍ଗେ ସଂଯୋଗ ଚିରସ୍ଥାୟୀ ହୋଇ ନ ଥାଆନ୍ତା । କାରଣ ପ୍ରେମ ହେଲା ଭଗବାନଙ୍କର କେବଳ ଗୋଟିଏ ବିଭାବ, ପୃଥିବୀ ଉପରେ ଭଗବାନଙ୍କ ଅନ୍ୟାନ୍ୟ ବିଭାବ ତୁଲ୍ୟ ଏହା ମଧ୍ୟ ବିକୃତ ହୋଇଛି ।

ତେବେ ସାଧାରଣ ମନୁଷ୍ୟ ନିମିତ୍ତ ଏହିସବୁ ଅନୁଭୂତି ଉପଯୋଗୀ

ଏବଂ ଉପକାରୀ, କାରଣ ସେମାନେ ପ୍ରକୃତିର ଚିରପରିଚିତ ପଥରେ ଚାଲି ଚାଲି ଭବିଷ୍ୟତର ଐକ୍ୟ ଆଡ଼କୁ ଚାଲୁଛନ୍ତି । କିନ୍ତୁ ସେମାନଙ୍କୁ ଏହା ତୃପ୍ତି ଦେଇପାରିବ ନାହିଁ ଯେଉଁମାନେ ଦ୍ରୁତଗତିରେ ଚାଲିବାକୁ ଚାହାନ୍ତି– ଅର୍ଥାତ୍ ଯେଉଁମାନେ ଅନ୍ୟ ଗୋଟିଏ ଅପେକ୍ଷାକୃତ ସରଳ ଏବଂ କ୍ଷିପ୍ର ଗତିଧାରାର ଅନୁସରଣ କରିବାକୁ ଅଭୀପ୍‌ସା କରନ୍ତି । ପୁଣି ଏହା ଏପରି ଏକ ବିଶିଷ୍ଟ ଗତିଧାରା ଯାହା ସେମାନଙ୍କୁ ସାଧାରଣ ମନୁଷ୍ୟ ପ୍ରକୃତି ଏବଂ ସେହି ପ୍ରକୃତିର ଅସରନ୍ତି ଜନ୍ମମରଣ-ଚକ୍ରରୁ ଉଦ୍ଧାର କରେ ଏବଂ ମାନବଜାତିର ଆଧ୍ୟାତ୍ମିକ ପ୍ରଗତିରେ ଭାଗ ନେବାକୁ ସକ୍ଷମ କରେ । ଏହା ଫଳରେ ସେମାନେ ନୂତନ ମାନବଜାତିର ସୃଷ୍ଟି ନିମିତ୍ତ ଶୀଘ୍ରତମ ମାର୍ଗ ଦିଗରେ ପରିଚାଳିତ ହୁଅନ୍ତି ଏବଂ ଏହି ନୂତନ ମାନବଜାତିହିଁ ପୃଥିବୀପୃଷ୍ଠରେ ଅତିମାନସ ଜାତିକୁ ଅଭିବ୍ୟକ୍ତ କରିବ । ଏହି ବିଶିଷ୍ଟ ବ୍ୟକ୍ତିଗଣଙ୍କୁ ମନୁଷ୍ୟ ମଧ୍ୟରେ ଥିବା ସକଳ ପ୍ରକାର ପ୍ରାଣଜ ପ୍ରେମକୁ ତ୍ୟାଗ କରିବାକୁ ହେବ, କାରଣ ଏହା ଯେତେ ସୁନ୍ଦର ଏବଂ ପବିତ୍ର ହେଉ ନା କାହିଁକି, ଗୋଟାଏ ପ୍ରକାର ଗତିବିଭ୍ରମ ଘଟାଏ, ଯାହା ଫଳରେ ଭଗବାନଙ୍କ ସଙ୍ଗେ ପ୍ରତ୍ୟକ୍ଷ ସଂଯୋଗ କଟିଯାଏ ।

ଯେ ଭଗବତ୍ ପ୍ରେମକୁ ଜାଣେ, ତା'ପାଖରେ ଅନ୍ୟ ସକଳ ପ୍ରକାର ପ୍ରେମ ମଳିନ, କ୍ଷୁଦ୍ର ଏବଂ ଅହଂମିଶ୍ରିତ ତଥା ଅନ୍ଧକାରମୟ । ମନେହୁଏ ଏହା ଯେପରି ଗୋଟାଏ କ୍ରୟବିକ୍ରୟ, ଗୋଟାଏ ଆଧିପତ୍ୟ ଓ ପ୍ରଭୁତ୍ୱ ପାଇଁ ଯୁଦ୍ଧ : ଏପରିକି ସବୁଠାରୁ ଭଲ ଲୋକଙ୍କ ମଧ୍ୟରେ ଏହା ଭ୍ରମ, ମନମୁଖିତା, ଦ୍ୱନ୍ଦ୍ୱ ଏବଂ ସନ୍ଦେହ ଦ୍ୱାରା ପରିପୂର୍ଣ୍ଣ ।

ପୁନଶ୍ଚ ଏହା ଜଣାଶୁଣା କଥା ଯେ ଯାହାକୁ ତୁମେ ଭଲପାଅ ତାଙ୍କରି ସଦୃଶ ହୋଇଉଠ । ଯଦି ତୁମେ ଭଗବାନଙ୍କ ପରି ହେବାକୁ ଚାହଁ, ତେବେ କେବଳହିଁ ଭଗବାନଙ୍କୁ ଭଲପାଇବ । ଭଗବାନଙ୍କ ସଙ୍ଗେ ପ୍ରେମର ମିଳନର ଆନନ୍ଦକୁ ଯିଏ ଉପଲବ୍ଧ କରିଛି ସେହିଁ କେବଳ ଜାଣେ, ତାହା

ତୁଳନାରେ ଅନ୍ୟାନ୍ୟ ପ୍ରେମ କେତେ କ୍ଷୀଣ, ନୀରସ ଏବଂ ସ୍ୱାଦହୀନ । ଏବଂ ଯଦି ଏହି ମିଳନରେ ପହଞ୍ଚିବାକୁ ସବୁଠାରୁ କଠୋର ଶୃଙ୍ଖଳାର ଆବଶ୍ୟକ ହୁଏ, ତେବେ ତାହା ଏପରିକିଛି କଠିନ, ଦୀର୍ଘ ବା କଠୋର ନୁହେଁ, ଯଦି ତାହା ଆମକୁ ପରିଶେଷରେ ସେଠାରେ ପହଞ୍ଚାଇ ଦିଏ । କାରଣ ଏହି ଅବସ୍ଥାହିଁ ବର୍ଣ୍ଣନାତୀତ ।

ଆମ୍ଭେମାନେ ପୃଥିବୀପୃଷ୍ଠରେ ଏହି ଅନୁପମ ଅବସ୍ଥା ପ୍ରକାଶ କରିବାକୁ ଚାହୁଁ । ଏହାହିଁ ପୃଥିବୀକୁ ରୂପାନ୍ତରିତ କରିବ ଏବଂ ଭଗବାନଙ୍କ ଯଥାଯୋଗ୍ୟ ବାସଭୂମିରୂପେ ଗଢ଼ିତୋଳିବ । ସେତେବେଳେ ଏହି ସତ୍ୟ ଓ ଶୁଦ୍ଧ ପ୍ରେମ ଶରୀରରେ ସ୍ଥାନ ପାଇବ, ଯାହା ଆଉ ସେହି ପ୍ରେମର ଗୋଟାଏ ଆବରଣ ବା ଛଦ୍ମବେଶ ହେବ ନାହିଁ । ଏହି ତପସ୍ୟା ଯେପରି ସହଜ ହୁଏ, ତା'ର ଅନ୍ତରଙ୍ଗତା ଯେପରି ସହଜଲଭ୍ୟ ଓ ସହଜବୋଧ ହୁଏ, ସେଥି ନିମିତ୍ତ ଭଗବାନ୍ ଊର୍ଦ୍ଧ୍ୱତନ ପ୍ରେମ ସହ ବାହ୍ୟତଃ ମନୁଷ୍ୟ ପରି ମାନୁଷୀ ତନୁ ଧାରଣ କରି ଆସନ୍ତି; କିନ୍ତୁ ପ୍ରତ୍ୟେକଥର ଏହି ଜଡ଼ର ସ୍ଥୂଳରୂପ ଧାରଣକରି ଆସନ୍ତି; ଆଉ ପ୍ରତ୍ୟେକ ଥର ଏହି ଜଡ଼ର ସ୍ଥୂଳ ରୂପ ଧାରଣ କରି ସେ କେବଳ ନିଜକୁ ବିକୃତ ଭାବରେ ପ୍ରକାଶ କରନ୍ତି । ତାଙ୍କରି ପୂର୍ଣ୍ଣ ଐଶ୍ୱର୍ଯ୍ୟ ସହ ସେ କେବଳ ସେତିକିବେଳେ ନିଜକୁ ସଂପୂର୍ଣ୍ଣରୂପେ ପ୍ରକାଶ କରିପାରିବେ, ଯେତେବେଳେ ମନୁଷ୍ୟ ତା' ନିଜ ଚେତନା ଓ ଶରୀରରେ କିଛି ଅପରିହାର୍ଯ୍ୟ ଉନ୍ନତି କରିସାରିଥିବ । କାରଣ ସେହି ମହିମମୟ ଭାଗବତ ପ୍ରେମ ମନୁଷ୍ୟ ଶରୀରକୁ ଆଶ୍ରୟ କରି ଯେତେବେଳେ ପ୍ରକାଶିତ ହୁଏ, ସେତେବେଳେ ମନୁଷ୍ୟ ତାହାର କ୍ଷୁଦ୍ର ଅହମିକା ଏବଂ ମୂର୍ଖତାପୂର୍ଣ୍ଣ ଗର୍ବରେ ଏହାକୁ ଗୋଟାଏ ଦୁର୍ବଳତା, ପର-ନିର୍ଭରତା ଏବଂ ଅକ୍ଷମତାର ଚିହ୍ନ ବୋଲି ଭାବେ ।

ତଥାପି ପ୍ରଥମରେ ଅସ୍ପଷ୍ଟ ହେଲେ ସୁଦ୍ଧା ମନୁଷ୍ୟ ଯେତେ ଯେତେ ପରିପୂର୍ଣ୍ଣତା ଆଡ଼କୁ ଅଗ୍ରସର ହେବ, ସେତେହିଁ ସ୍ପଷ୍ଟଭାବେ ବୁଝିପାରିବ

ଯେ ଏକମାତ୍ର ପ୍ରେମହିଁ ପୃଥିବୀରେ ସକଳ ଦୁଃଖ ନିବାରଣ କରିବାକୁ ସମର୍ଥ; ବିଶୁଦ୍ଧ ପ୍ରେମର ଆନନ୍ଦହିଁ କେବଳ ବିଶ୍ୱ-ବିଚ୍ଛେଦର ଜ୍ୱଳନ୍ତ ବେଦନାକୁ ଉପଶମ କରିପାରିବ । କାରଣ, କେବଳ ସେହି ପରମ ମିଳନର ଆନନ୍ଦ ମଧ୍ୟରେ ସୃଷ୍ଟି ତାହାର ଯଥାର୍ଥ ମୂଲ୍ୟ ଓ ସାର୍ଥକତା ଲାଭକରେ ।

ସୁତରାଂ କୌଣସି ଉଦ୍ୟମ ଏପରି କଠିନ ନୁହେଁ, କୌଣସି ସାଧନା ଏପରି କଠୋର ନୁହେଁ, ଯଦି ତାହା ଏହି ଭୌତିକ ଶରୀରକୁ ଜ୍ୟୋତିର୍ମୟ, ବିଶୁଦ୍ଧ, ପରିପୂର୍ଣ୍ଣ ଏବଂ ରୂପାନ୍ତରିତ କରିପାରିବ; ତାହାହେଲେ ଭଗବାନ୍ ଯେତେବେଳେ ମନୁଷ୍ୟ ଶରୀରରେ ଅବତୀର୍ଣ୍ଣ ହେବେ ସେତେବେଳେ ଏହି ଭୌତିକ ଶରୀର ତାଙ୍କୁ ବାହ୍ୟତଃ ଆଉ ଆବୃତ କରି ରଖିପାରିବ ନାହିଁ । ଆଉ ସେତେବେଳେ ପୃଥିବୀରେ ସେହି ଅପରୂପ ଅନୁପମ ଦିବ୍ୟ ପ୍ରେମ ଅବାଧରେ ପ୍ରକାଶିତ ହୋଇପାରିବ ଏବଂ ଏହାହିଁ ବିଶ୍ୱକୁ ଆନନ୍ଦର ମଧୁମୟ ସ୍ୱର୍ଗରେ ପରିଣତ କରିବାକୁ ସମର୍ଥ ହେବ ।

ତୁମେ କହିପାର ଯେ ଏହାହିଁ ହେଲା ଚରମ ଲକ୍ଷ୍ୟ, ଚେଷ୍ଟାର ଶେଷ ପରିଣତି, ଅନ୍ତିମ ବିଜୟ, କିନ୍ତୁ ସେଠାରେ ପହଞ୍ଚିବାକୁ ହେଲେ କ'ଣ କରିବାକୁ ହେବ, କେଉଁ ପଥ ଅନୁସରଣ କରିବାକୁ ହେବ ଏବଂ ସେହି ପଥର ପ୍ରଥମ ପାବଚ୍ଛଗୁଡ଼ିକ କ'ଣ ?

ଯେହେତୁ ଆମ୍ଭେମାନେ ତା'ର ପୂର୍ଣ୍ଣ ଦୀପ୍ତିର ସହ ଏହି ସିଦ୍ଧାନ୍ତ ନେଇଛୁଯେ ପ୍ରେମକୁ କେବଳ ଭଗବାନଙ୍କ ସଙ୍ଗେ ବ୍ୟକ୍ତିଗତ ସମ୍ବନ୍ଧ ନିମିତ୍ତ ସଂରକ୍ଷିତ କରିବାକୁ, ସେଥିପାଇଁ ଅନ୍ୟ ସଙ୍ଗରେ ଆମର ସମ୍ବନ୍ଧ ସ୍ଥାପନ କରିବାରେ ଏହି ପ୍ରେମର ସ୍ଥାନରେ ଏକ ପୂର୍ଣ୍ଣ ହାର୍ଦ୍ଦିକ, ନିତ୍ୟ, ଅପରିବର୍ତ୍ତନୀୟ, ଅହଂଶୂନ୍ୟ କରୁଣା ଓ ସଦିଚ୍ଛା ଆଣିବାକୁ ହେବ । ଏହା ଅନ୍ୟଠାରୁ କୌଣସି ପ୍ରକାର ପୁରସ୍କାର, କିଂବା କୃତଜ୍ଞତା ବା ସ୍ୱୀକୃତି ଚାହିଁବ ନାହିଁ । ଅନ୍ୟମାନେ ତୁମ ପ୍ରତି ଯେପରି ବ୍ୟବହାର କରନ୍ତୁ ନା

କାହିଁକି, ତୁମେ କାହାରି ପ୍ରତି ବିରକ୍ତିରେ କେବେ ବି ଭାସିଯିବ ନାହିଁ ଏବଂ ତୁମେ ତୁମର ବିଶୁଦ୍ଧ, ଅବିମିଶ୍ର ଦିବ୍ୟପ୍ରେମରେ ଭଗବାନଙ୍କୁ ଏକମାତ୍ର ବିଚାରକ କରି ଛାଡ଼ିଦେବ; — କି ପ୍ରକାରରେ ସେ ତୁମକୁ ଅନ୍ୟର ଭୁଲ୍ ବୁଝାମଣା ଓ ଅସଦିଚ୍ଛାଠାରୁ ରକ୍ଷା କରିବେ, ତାହାର ବିଚାର ସେ କରିବେ ।

ତୁମେ ତୁମର ସକଳ ଆନନ୍ଦ ଓ ସକଳ ସୁଖ କେବଳ ଏକମାତ୍ର ଭଗବାନଙ୍କଠାରୁହିଁ ଆଶା କରିବ । ତାଙ୍କ ମଧ୍ୟରେ କେବଳହିଁ ଖୋଜିବ ଓ ପାଇବ ତୁମର ଏକମାତ୍ର ସହାୟକ ଓ ସମ୍ବଳ । ସେ ତୁମର ଦୁଃଖରେ ତୁମକୁ ସାନ୍ତ୍ୱନା ଦେବେ, ପଥରେ ହାତଧରି ଚଳାଇନେବେ, ଝୁଣ୍ଟି ପଡ଼ିଲେ ତୁମକୁ ଉଠାଇନେବେ ଏବଂ ଅବସନ୍ନ ଓ କ୍ଳାନ୍ତିର ମୁହୂର୍ତ୍ତରେ ସେ ତୁମକୁ ତାଙ୍କର ଦୃଢ଼ ପ୍ରେମମୟ ବାହୁରେ ଜାବୁଡ଼ି ଧରିବେ ଏବଂ ତାଙ୍କର ସୁକୋମଳ ମଧୁରତାରେ ଆଲିଙ୍ଗନ କରିବେ ।

ଏଠାରେ ଗୋଟାଏ ସନ୍ଦେହ ଦୂର କରିବା ପାଇଁ ମୁଁ କହି ରଖୁଛି ଯେ ଭାଷାର ଆବଶ୍ୟକତା ଅନୁସାରେ ମୁଁ ଭଗବାନଙ୍କୁ ପୁଂଲିଙ୍ଗ ବୋଲି ସମ୍ବୋଧନ କରିବାକୁ ବାଧ୍ୟ ହୋଇଛି; କିନ୍ତୁ ବସ୍ତୁତଃ ସେହି ପ୍ରେମର କଥା ମୁଁ କହୁଛି, ଯାହା ସ୍ତ୍ରୀଲିଙ୍ଗ ଓ ପୁଂଲିଙ୍ଗର ଊର୍ଦ୍ଧ୍ୱରେ ଏବଂ ତାହା ଯେତେବେଳେ ମନୁଷ୍ୟର ଶରୀରରେ ସ୍ଥାନ ପାଏ, କର୍ତ୍ତବ୍ୟର ପ୍ରୟୋଜନାନୁସାରେ ଅବାଧରେ ଏହା ସ୍ତ୍ରୀ କିଂବା ପୁରୁଷର ଶରୀରରେ ଆଶ୍ରୟ ଗ୍ରହଣ କରେ ।

ସଂକ୍ଷେପରେ ହୃଦୟାନୁଭବର ତପସ୍ୟା ହେଲା ଏକମାତ୍ର ଭଗବାନଙ୍କ ପ୍ରତି ଏକାଗ୍ର ଭାବରେ ଆସକ୍ତ ହେବା ଏବଂ ଆଉ ସମସ୍ତ ଭାବାବେଗର ଆବେଗ ଓ ଆସକ୍ତିକୁ ବର୍ଜନ କରିବା,— ଏହି ଆବେଗ ଯେଉଁ ପ୍ରକାରର ହେଉନା କାହିଁକି,— ଏହା ବ୍ୟକ୍ତି ପାଇଁ ହେଉ, ପରିବାର ପାଇଁ ହେଉ, ଦେଶ ପାଇଁ ହେଉ ବା ଅନ୍ୟ ଯେକୌଣସି ବସ୍ତୁ ପାଇଁ ହେଉ । ଶେଷରେ ଏହି ଏକାଗ୍ରତାହିଁ ପୂର୍ଣ୍ଣାଙ୍ଗ ଭଗବାନଙ୍କ ସଙ୍ଗେ ଏକତ୍ୱଲାଭରେ ପର୍ଯ୍ୟବସିତ ହେବ ଏବଂ ପୃଥିବୀପୃଷ୍ଠରେ ଅତିମାନସ ସିଦ୍ଧି ନିମିତ୍ତ ଗୋଟିଏ ଯନ୍ତ୍ରରେ ପରିଣତ ହେବ ।

ଏହାହିଁ ଆମମାନଙ୍କୁ ସ୍ୱାଭାବିକ ଭାବରେ ନେଇଯାଏ ଚତୁର୍ବିଧ ମୁକ୍ତିର ଆଡ଼କୁ ଯାହା ସିଦ୍ଧିର ବାସ୍ତବ ରୂପ ଧାରଣ କରିବ । ଆଉମଧ୍ୟ ଅତିମାନସ ଐକ୍ୟର ପରିପୂର୍ଣ୍ଣ ସିଦ୍ଧିରେ ଭାବାନୁବେଗର ମୁକ୍ତିହିଁ ହେବ ଦୁଃଖଯନ୍ତ୍ରଣାରୁ ମୁକ୍ତି ।

ମାନସିକ ମୁକ୍ତି ବା ଅଜ୍ଞାନରୁ ମୁକ୍ତି ପ୍ରତିଷ୍ଠା କରିବ ସତ୍ତାରେ ଜ୍ୟୋତିର୍ମୟ ମାନସର ଦିବ୍ୟଚେତନା; ଯାହା ଶବ୍ଦବ୍ରହ୍ମର ସୃଜନଶକ୍ତିରେ ପ୍ରକାଶିତ ହେବ ।

ପ୍ରାଣର ମୁକ୍ତି ଅର୍ଥାତ୍ ବାସନାକାମନାରୁ ମୁକ୍ତି ବ୍ୟକ୍ତିଗତ ସଙ୍କଳ୍ପକୁ ଭାଗବତ ସଂକଳ୍ପ ସଙ୍ଗେ ପରିପୂର୍ଣ୍ଣ ଓ ସଜ୍ଞାନ ମିଳନ ସକାଶେ ସାମର୍ଥ୍ୟ ପ୍ରଦାନ କରେ, ଯାହା ଫଳରେ ଶକ୍ତି, ନିରବଚ୍ଛିନ୍ନ ଶାନ୍ତି ଓ ସ୍ଥିରତା ଦେଖାଦିଏ ।

ପରିଶେଷରେ ଚରମ ପରିଣାମରୂପେ ଆସେ ଶାରୀରିକ ମୁକ୍ତି ଅର୍ଥାତ୍ ଜଡ଼ର କାର୍ଯ୍ୟକାରଣ ବିଧିରୁ ମୁକ୍ତି । କାରଣ, ସେତେବେଳେ ତୁମେ ପୂର୍ଣ୍ଣରୂପେ ତୁମର ପ୍ରଭୁ । ଆଉ ତୁମେ ପ୍ରକୃତିନିୟମର ଦାସ ନୁହଁ, ଯାହା ତୁମକୁ ଅର୍ଦ୍ଧଚେତନା ଓ ଅବଚେତନାର ପ୍ରେରଣା ଦ୍ୱାରା କାର୍ଯ୍ୟ କରାଏ ଏବଂ ସାଧାରଣ ଜୀବନର ଗତାନୁଗତିକ ପଥରେ ବାନ୍ଧିରଖେ । ଏହି ମୁକ୍ତି ଫଳରେ ତୁମେ ପୂର୍ଣ୍ଣଜ୍ଞାନ ସହ ନିର୍ଣ୍ଣୟ କରିପାରିବ, କେଉଁ ରାସ୍ତାରେ ତୁମକୁ ଯିବାକୁ ହେବ, କେଉଁ କାର୍ଯ୍ୟ ତୁମକୁ କରିବାକୁ ହେବ, ତୁମେ ନିଜକୁ ସମସ୍ତ ଅନ୍ଧନିୟତି ହାତରୁ ମୁକ୍ତକରିବ ଏବଂ ତୁମର ଜୀବନଧାରାରେ କେବଳ ଯେଉଁ ଏକମାତ୍ର ବସ୍ତୁ ପ୍ରଭାବ ବିସ୍ତାର କରିବ, ତାହା ହେଲା ଊର୍ଦ୍ଧ୍ୱତନ ସଂକଳ୍ପ, ସତ୍ୟତମ ଜ୍ଞାନ ଏବଂ ଅତିମାନସ ଚେତନା ।

(ବୁଲେଟିନ୍, ଅଗଷ୍ଟ ୧୯୫୩)

# ଏକ ଆନ୍ତର୍ରାଷ୍ଟ୍ରୀୟ ଶିକ୍ଷାକେନ୍ଦ୍ର

ପୃଥିବୀପୃଷ୍ଠରେ ମନୁଷ୍ୟ ଯେଉଁ ଅବସ୍ଥାରେ ବାସକରୁଛି ତାହାହିଁ ତାହାର ଅନ୍ତର୍ଚେତନାର ସ୍ଥିତିର ପରିଣାମ । ଚେତନାର ରୂପାନ୍ତର ନ କରି ପୃଥିବୀକୁ ପରିବର୍ତ୍ତନ କରିବାକୁ ଉଦ୍ୟମ କରିବା ଗୋଟାଏ ସ୍ୱପ୍ନବିଳାସ ମାତ୍ର । ଯେଉଁ ବ୍ୟକ୍ତିଗଣ ମାନବ-ଜୀବନରେ ବିଭିନ୍ନ କ୍ଷେତ୍ରରେ, ଅର୍ଥନୀତିକ, ରାଷ୍ଟ୍ରନୀତିକ, ସାମାଜିକ, ଆର୍ଥିକ, ଶିକ୍ଷାଗତ ବା ସ୍ୱାସ୍ଥ୍ୟମୂଳକ ଅବସ୍ଥାର ଉନ୍ନତି ନିମିତ୍ତ କ'ଣ କରାଯାଇପାରେ ଏବଂ କ'ଣ କରିବା ଉଚିତ ବୋଲି ଉପଲବ୍ଧି କରିଥିଲେ, ଠିକ୍ ସେହି ବ୍ୟକ୍ତିଗଣ ସ୍ୱୀୟ ଚେତନାକୁ ଅଳ୍ପବହୁତ ଗୋଟାଏ ଅସାଧାରଣ ଅବସ୍ଥାକୁ ଉନ୍ନୀତ କରିଥିଲେ ଏବଂ ଚେତନାର ଉଚ୍ଚତର ଭୂମି-ସକଳ ସହିତ ନିଜକୁ ସଂଯୁକ୍ତ କରିଥିଲେ । କିନ୍ତୁ ସେମାନଙ୍କର ଧାରଣାରାଜି ମୂଳତଃ ତତ୍ତ୍ୱରୂପେ ରହିଗଲା, ଅଥବା ସେହି ଧାରଣାଗୁଡ଼ିକ ଯେବେ ବି କାର୍ଯ୍ୟରେ ପରିଣତ କରିବାକୁ ଚେଷ୍ଟା କରାଯାଇଥିଲା, ତାହା ସର୍ବଦାହିଁ ଅତି ଦୟନୀୟ ଭାବେ, କରୁଣ ଭାବେ ଅଳ୍ପ ବା ବହୁତ କାଳ ପରେ ବିଫଳ ହୋଇଥିଲା । କାରଣ ମାନବ-ଚେତନା ସ୍ୱୟଂ ରୂପାନ୍ତରିତ ନ ହେଲେ କୌଣସି ମାନବିକ ସଂସ୍ଥା ସମଗ୍ରରୂପେ ପରିବର୍ତ୍ତିତ ହୋଇପାରିବ ନାହିଁ । ନୂତନ ସମାଜର ଦିଶାରୀଗଣ ଜଣକ ପରେ ଜଣେ ଆସିଛନ୍ତି, ଆଧ୍ୟାତ୍ମିକ ବା ସାମାଜିକ ବହୁ ବିଭିନ୍ନ ଧର୍ମ ସୃଷ୍ଟି କରାହୋଇଛି ଏବଂ ସେସବୁର ଅୟମାରମ୍ଭ ଖୁବ୍ ସମ୍ଭାବନାଯୁକ୍ତ ବୋଲି ମନେ ହେଉଥିଲା, ଏବଂ ଯେହେତୁ ମାନବଜାତି ନିଜ ଅନ୍ତରରେ ରୂପାନ୍ତରିତ ହୋଇ ନ ଥିଲା, କ୍ରମଶଃ ମାନବ-ପ୍ରକୃତିଜାତ ପୁରାତନ ଦୁର୍ଗୁଣରାଜି ଧୀରେ ଧୀରେ ପୁନର୍ବାର ପ୍ରକାଶିତ ହେଲା ଏବଂ କିଛି ସମୟ ପରେ ଦେଖାଗଲା ଯେ ମନୁଷ୍ୟ ଯେଉଁଠାରୁ ଯାତ୍ରାରମ୍ଭ କରିଥିଲା,

ଏତେ ଆଶା ଓ ଉତ୍ସାହ ପରେ ବି ଠିକ୍ ସେହି ସ୍ଥାନରେହିଁ ପଡ଼ିରହିଛି । ଏହି ପ୍ରକାର ଉଦ୍ୟମରେ, ସାଧାରଣତଃ ମନୁଷ୍ୟ ସମାଜର ଉନ୍ନତିକଳ୍ପେ ଦୁଇଟି ଗତିଧାରା ଦେଖାଦେଇଛି : ଯାହା ଆପାତତଃ ଦୁଇଟି ପରସ୍ପର ବିରୋଧୀ ଗତିଧାରା ବୋଲି ମନେହେଲେ ମଧ୍ୟ ଅଗ୍ରଗତି ନିମିତ୍ତ ପରସ୍ପର ପରିପୂରକ ଓ ସହାୟକ । ଗୋଟିଏ ଧାରା ଚାହେଁ ସମଷ୍ଟିଗତ ପୁନର୍ଗଠନ, ଯାହା ମାନବ-ସମାଜର ଐକ୍ୟ ଦିଗରେ ସଫଳତାର ସହ କାର୍ଯ୍ୟକାରୀ ହେବ, ଅନ୍ୟଟି ଘୋଷଣା କରେ ଯେ ସକଳ ଅଗ୍ରଗତି ସର୍ବପ୍ରଥମେ ବ୍ୟକ୍ତି ଦ୍ୱାରାହିଁ ସାଧିତ ହୁଏ, ଏବଂ ଜୋର୍ ଦେଇ କହେ ବ୍ୟକ୍ତିକୁ ଏପରି ପରିବେଶ ବା ଅବସ୍ଥା ମଧ୍ୟରେ ରଖିବାକୁ ହେବ ଯେଉଁଥିରେ ସେ ଅବାଧରେ ଅଗ୍ରଗତି କରିପାରେ । ଉଭୟ ଗତିଧାରା ସମାନଭାବେ ସତ୍ୟ ଏବଂ ସମାନଭାବେ ଆବଶ୍ୟକ, ଏବଂ ଆମ୍ଭମାନଙ୍କର ଉଦ୍ୟମ ଉଭୟ ଦିଗରେ ପରିଚାଳିତ ହେବା ବାଞ୍ଛନୀୟ । ସମଷ୍ଟିଗତ ଅଗ୍ରଗତି ଓ ବ୍ୟଷ୍ଟିଗତ ଉନ୍ନତି ଉଭୟ ପରସ୍ପର ନିର୍ଭରଶୀଳ । ବ୍ୟଷ୍ଟି ଗୋଟାଏ ଅଗ୍ରଗାମୀ ପଦକ୍ଷେପ ନେବା ପୂର୍ବରୁ ସମଷ୍ଟିଗତ ଜୀବନଧାରାରେ କିଛି ପରିମାଣରେ ଏକ ଆନୁଷଙ୍ଗିକ ଅଗ୍ରଗତି ହୋଇଥିବା ଆବଶ୍ୟକ । ତେଣୁ ଏପରି ଏକ ମାର୍ଗ ଆବିଷ୍କାର କରିବାକୁ ହେବ ଯଦ୍ୱାରା ଉଭୟ ଅଗ୍ରଗତି ଏକହିଁ ସଙ୍ଗେ ସାଧିତ ହୋଇପାରିବ ।

ଏହି ଆବଶ୍ୟକତାର ସମାଧାନ ନିମିତ୍ତ ଶ୍ରୀଅରବିନ୍ଦ ଏକ ଆନ୍ତର୍ରାଷ୍ଟ୍ରୀୟ ଶିକ୍ଷାକେନ୍ଦ୍ରର ପରିକଳ୍ପନା କରିଥିଲେ । ଏହା ଫଳରେ ମାନବ-ସମାଜର ଶ୍ରେଷ୍ଠ ବ୍ୟକ୍ତିମାନଙ୍କୁ ମାନବଜାତିର କ୍ରମ-ବର୍ଦ୍ଧମାନ କ୍ରମିକ ଐକ୍ୟ ନିମିତ୍ତ କାର୍ଯ୍ୟ କରିବା ସକାଶେ ପ୍ରସ୍ତୁତ ହେବାକୁ ହେବ ଏବଂ ପରିଶେଷରେ ମାନବଜାତି ପୃଥିବୀ ଉପରେ ଅବତରି ଆସୁଥିବା ନୂତନ ଶକ୍ତିକୁ ଗ୍ରହଣ କରି ନିଜକୁ ରୂପାନ୍ତର କରିବାକୁ ସକ୍ଷମ ହେବ । ଏହି ଶିକ୍ଷାକେନ୍ଦ୍ରର ସଙ୍ଗଠନ ନିମିତ୍ତ ଓ ବିବିଧ ପାଠ୍ୟକ୍ରମର ନିୟାମକରୂପେ

ଏହି କେତେକ ଉଦାର ଭାବରାଜି ବିଶେଷ ସହାୟକ ହେବ । ଏହିସବୁ ଉଦାର ଚିନ୍ତାରାଜି ଶ୍ରୀଅରବିନ୍ଦଙ୍କ ବିଭିନ୍ନ ରଚନାବଳିର ଏବଂ 'ଶାରୀରିକ ଶିକ୍ଷଣ ପତ୍ରିକା'ରେ ତାଙ୍କର କେତେକ ଧାରାବାହିକ ଲେଖାରେ ବିଶେଷଭାବେ ଆଲୋଚିତ ହୋଇଛି ।

ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ଏହି ଯେ ମାନବଜାତିର ଐକ୍ୟ କୌଣସି ବାହ୍ୟ ଏକରୂପତ୍ୱ (uniformity) କିଂବା ବଶ୍ୟତା ଦ୍ୱାରା କରାଯାଇ ପାରିବ ନାହିଁ । ଯେଉଁଥିରେ ପ୍ରତ୍ୟେକ ଜାତି ତାହାର ନିଜର ପ୍ରତିଭା ପ୍ରକାଶ କରିବାର ସୁଯୋଗ ପାଇବ ଏବଂ ନିଜର ଯଥାର୍ଥ ସ୍ଥାନ ଅଧିକାର କରିବ,— ଏପରି ଏକ ସମନ୍ୱୟମୂଳକ ବିଶ୍ୱ-ରାଷ୍ଟ୍ରସଂଘ ଗଠନ କରିବାକୁ ହେବ ଏବଂ ଏହା ଦ୍ୱାରାହିଁ ମାନବଜାତିର ଏକ ବ୍ୟାପକ ଏବଂ କ୍ରମବର୍ଦ୍ଧିଷ୍ଣୁ ଐକ୍ୟ ସ୍ଥାୟୀ ହେବାର କିଛି ଆଶା ରହିବ । ଯଦି ଏହି ସମନ୍ୱୟମୂଳକ ସଂଗଠନକୁ ଜୀବନ୍ତ କରିବାକୁ ହୁଏ, ତେବେ ଏହି ବର୍ଗୀକରଣ ଏକ କେନ୍ଦ୍ରୀୟ ଉଚ୍ଚ ବିଶାଳ ଆଦର୍ଶ ଅନୁଯାୟୀ ସମ୍ପାଦିତ ହେବ । ଏହି ଆଦର୍ଶ ମଧ୍ୟରେ ସକଳ ଗତିଧାରା, ଏପରିକି ସଂପୂର୍ଣ୍ଣ ପରସ୍ପର ବିରୋଧୀ ଭାବଧାରା ତାହାର ଯଥାଯଥ ସ୍ଥାନ ଅଧିକାର କରିବ । ଏହି ଆଦର୍ଶହିଁ ଏପରି ଏକ ନୂତନ ଆଦର୍ଶ ସୃଷ୍ଟି କରିବ ଯାହା ଆଗାମୀ ମନୁଷ୍ୟଜାତିର ସୃଷ୍ଟିକାରିଣୀ ଏକ ନୂତନ ଶକ୍ତିର ଅଭିବ୍ୟକ୍ତିର ପଥ ସୁଗମ କରିବ ।

ସକଳ ପ୍ରକାର ପ୍ରତିଦ୍ୱନ୍ଦ୍ୱିତାର ପ୍ରେରଣା, ଅଧିକାରବୋଧ ଏବଂ ନିଜେ ସର୍ବପ୍ରଥମ ହେବା ପାଇଁ ଯେଉଁ ସଂଘର୍ଷ, ତାହା ଏକେବାରେ ଅନ୍ତର୍ହିତ ହେବ ଏବଂ ତାହା ସ୍ଥାନରେ ଦେଖାଦେବ ଏକ ସମନ୍ୱୟମୂଳକ ସଂସ୍ଥା ନିମିତ୍ତ ସଂକଳ୍ପ ଏବଂ ସୁସ୍ପଷ୍ଟ ଓ ଫଳପ୍ରଦ ସହଯୋଗ ନିମିତ୍ତ ଆଗ୍ରହ ।

ଏହାକୁ ସମ୍ଭବପର କରିବାକୁ, ଶିଶୁମାନେ ଖୁବ୍ ଅଳ୍ପ ବୟସରୁ କେବଳ ଏହି ଧାରଣା ପ୍ରତି ନୁହେଁ, କିନ୍ତୁ ଏହାକୁ କାର୍ଯ୍ୟକାରୀ କରିବା

ସର୍ବାଶେ ଅଭ୍ୟସ୍ତ ହେବା ଉଚିତ । ତେଣୁ ଏହି ଆନ୍ତର୍ଜାତିକ ଶିକ୍ଷାକେନ୍ଦ୍ରଟି କେବଳ ସକଳ ଦେଶରୁ ଛାତ୍ରମାନଙ୍କୁ ଗ୍ରହଣ କରିବା ଦୃଷ୍ଟିରୁ କିଂବା ସେମାନଙ୍କର ନିଜ ମାତୃଭାଷାରେ ଶିକ୍ଷା ଦିଆଯିବା ଦୃଷ୍ଟିରୁ ଆନ୍ତର୍ଜାତିକ ନୁହେଁ, କିନ୍ତୁ ନିର୍ଦ୍ଦିଷ୍ଟ ଭାବରେ ଯେହେତୁ ପୃଥିବୀର ବିଭିନ୍ନ ପ୍ରାନ୍ତର ସଂସ୍କୃତିକୁ ସକଳଙ୍କ ନିମିତ୍ତ ଗ୍ରହଣୋପଯୋଗୀ ପନ୍ଥାରେ ଉପସ୍ଥାପିତ କରାଯିବ, ଆଉ ତାହା କେବଳ ବୁଦ୍ଧିଗତ, ଧାରଣାଗତ, କଳ୍ପନାଗତ, ସିଦ୍ଧାନ୍ତଗତ, ତତ୍ତ୍ୱଗତ ଏବଂ ଭାଷାଗତ ନୁହେଁ, କିନ୍ତୁ ଜୀବନ୍ତଭାବେ ଅଭ୍ୟାସ, ପ୍ରଥା ଓ କଳାର ସକଳ ରୂପରେ– ଚିତ୍ରବିଦ୍ୟା, ଭାସ୍କର୍ଯ୍ୟ, ସଂଗୀତ, ସ୍ଥାପତ୍ୟ, ସାଜସଜ୍ଜା– ଏବଂ ସ୍ଥୂଳ ଭାବରେ ପ୍ରାକୃତିକ ଦୃଶ୍ୟ, ପୋଷାକ ପରିଚ୍ଛଦ, ଖେଳକସରତ୍, ଶିଳ୍ପ ଓ ଖାଦ୍ୟ ପ୍ରଭୃତିରେ ମଧ୍ୟ । ଏକ ପ୍ରକାର ବିଶ୍ୱ-ପ୍ରଦର୍ଶନୀ (World Exhibition)ର ବ୍ୟବସ୍ଥା କରିବାକୁ ହେବ ଯହିଁରେ ସବୁ ଦେଶ ବାସ୍ତବରେ ଯଥାର୍ଥ ଓ ଜୀବନ୍ତ ଭାବରେ ପ୍ରତିନିଧିତ୍ୱ କରିପାରିବେ । ଆଉ ଆଦର୍ଶଟି ହେଲା ଏହି ଯେ ପ୍ରତ୍ୟେକ ଦେଶ ନିମିତ୍ତ ତାହାର ନିର୍ଦ୍ଦିଷ୍ଟ ସଂସ୍କୃତିକୁ ପ୍ରତିନିଧିତ୍ୱ କରିବା ପାଇଁ କ୍ଷେତ୍ର ରହିବ ଏବଂ ତାହା ଏପରି ଛାଞ୍ଚରେ ଗଢ଼ାଯିବ ଯାହା ସେହି ଦେଶର ପ୍ରକୃତି ବା ସ୍ୱଭାବକୁ ପରିବେଷଣ କରିପାରିବ : ଏହା ସେହି ଦେଶର ବିଶେଷ ପ୍ରତିନିଧିମୂଳକ ଉତ୍ପାଦନକୁ ପ୍ରଦର୍ଶନ କରିବ ଯାହା ପ୍ରାକୃତିକ ତଥା ମାନବନିର୍ମିତ, ଆଉ ମଧ୍ୟ ଯାହା ବୌଦ୍ଧିକ ପ୍ରତିଭା, ଶିଳ୍ପପ୍ରତିଭା ତଥା ଆଧ୍ୟାତ୍ମିକ ପ୍ରବୃତ୍ତିର ପ୍ରକାଶକ ହୋଇଉଠିବ । ଏହିପରି ଭାବରେ ପ୍ରତ୍ୟେକ ଦେଶର ଏହି ସାଂସ୍କୃତିକ ସମନ୍ୱୟରେ ଏକ କାର୍ଯ୍ୟକାରୀ ଏବଂ ବାସ୍ତବ ଆଗ୍ରହ ଜନ୍ମିବ ଏବଂ ସେ ତା' ନିଜ ଦେଶର ପ୍ରତିନିଧିତ୍ୱ କରୁଥିବା ପ୍ରଦର୍ଶନୀ-ମଣ୍ଡପର ଦାୟିତ୍ୱ ଗ୍ରହଣ କରି ଅନ୍ୟମାନଙ୍କ ସହ ସହଯୋଗ କରିବ । ଆଉ ମଧ୍ୟ ଆବଶ୍ୟକତା ଅନୁଯାୟୀ ଛୋଟ ବା ବଡ଼ ଗୋଟିଏ ଛାତ୍ରାବାସ ତାହା ସଙ୍ଗରେ ରଖାଯିବ ଯେଉଁଠାରେ ଗୋଟିଏ ଦେଶ ବା ଜାତିର ଛାତ୍ରମାନଙ୍କର ଏକତ୍ର ରହିବାର

ବ୍ୟବସ୍ଥା କରାଯିବ । ଏହା ଦ୍ୱାରା ସେମାନେ ନିଜ ମାତୃଭୂମିର ନିଜସ୍ୱ ସଂସ୍କୃତିକୁ ଉପଭୋଗ କରିପାରିବା ସଙ୍ଗେ ସଙ୍ଗେ ଶିକ୍ଷାକେନ୍ଦ୍ରରେ ଏପରି ଶିକ୍ଷା ପାଇବେ ଯାହା ପୃଥିବୀରେ ପ୍ରତିଷ୍ଠିତ ଅନ୍ୟାନ୍ୟ ସଂସ୍କୃତି ସହିତ ସେମାନଙ୍କୁ ପରିଚିତ କରାଇବ । ଏହି ଭାବରେ ଆନ୍ତର୍ଜାତିକ ଶିକ୍ଷା କେବଳ ସ୍କୁଲ୍ ବେଞ୍ଚ୍ ଉପରେ ଗୋଟିଏ ତାତ୍ତ୍ୱିକ ବ୍ୟାଖ୍ୟା ହେବ ନାହିଁ, ବରଂ ତାହାର ପ୍ରତ୍ୟେକ ଦିଗରେ ଟିକିନିଖି ଭାବରେ କାର୍ଯ୍ୟକାରୀ ହେବ ।

ସଙ୍ଗଠନର ଗୋଟାଏ ସ୍ଥୂଳ ଧାରଣା ଏଠାରେ ଦିଆଯାଇଛି । ଏହାକୁ କିପରି ପ୍ରୟୋଗ କରିବାକୁ ହେବ, କାର୍ଯ୍ୟରେ ପରିଣତ କରିବାକୁ ହେବ, ତାହା ପରେ 'ବୁଲେଟିନ୍'ରେ ଆଲୋଚନା କରାଯିବ ।

ତତ୍ପରେ ପ୍ରଥମ ଲକ୍ଷ୍ୟ ହେବ ବ୍ୟକ୍ତିଗତ ଭାବେ ପ୍ରତ୍ୟେକଙ୍କୁ ସାହାଯ୍ୟ କରିବା ଯଦ୍ୱାରା ସେମାନେ ସ୍ୱଦେଶର ମୌଳିକ ପ୍ରତିଭା ସମ୍ବନ୍ଧରେ ସଚେତ ହେବେ ଏବଂ ତତ୍‌ସଙ୍ଗେ ଅନ୍ୟ ଦେଶର ଜୀବନଯାପନ ପ୍ରଣାଳୀର ସଂସ୍ପର୍ଶରେ ଆସିବା ଦ୍ୱାରା ପୃଥିବୀପୃଷ୍ଠର ସକଳ ଦେଶର ବାସ୍ତବ ତାତ୍ପର୍ଯ୍ୟ (Spirit)କୁ ଜାଣିପାରିବେ ଏବଂ ସମ୍ମାନ କରିବାକୁ ଶିଖିବେ । କାରଣ ସମସ୍ତ ବିଶ୍ୱସଂଘ ଯଥାର୍ଥଭାବେ ଗଠିତ ହେବାର ଏବଂ ବଞ୍ଚି ରହିବାର ସାମର୍ଥ୍ୟ ଲାଭ କରିବାର ମୂଳଭିତ୍ତି ନିର୍ଭର କରେ ଦେଶ ଦେଶ ମଧ୍ୟରେ ପରସ୍ପର ବୁଝାମଣା ଓ ସମ୍ମାନର ଆଦାନପ୍ରଦାନ ଉପରେ, ଠିକ୍ ଯେପରି ବ୍ୟକ୍ତି ବ୍ୟକ୍ତି ମଧ୍ୟରେ । ବର୍ତ୍ତମାନ ମନବ ଯେଉଁ ଦୁଃଖଯାତନାପୂର୍ଣ୍ଣ ଅଜ୍ଞାନ ଅନ୍ଧକାର ମଧ୍ୟରେ ରହିଛି, ତହିଁରୁ ଉଚ୍ଚ ସ୍ତରକୁ ଉଠିବାର ସମ୍ଭାବନା କେବଳ ପରସ୍ପର ସଦ୍ଭାବ ସୂତ୍ରରେ ସାମୂହିକ ଶୃଙ୍ଖଳା, ସଂଗଠନ ଓ ସହଯୋଗ ମଧ୍ୟରେ ନିହିତ । ଏଠାରେ ଏହି ଶିକ୍ଷାକେନ୍ଦ୍ରରେ କେବଳ ଏହି ଲକ୍ଷ୍ୟ ଓ ପ୍ରେରଣାକୁ ନେଇ ସମସ୍ତ ମାନବ-ସମସ୍ୟାର ବିଚାର କରାଯିବ ଏବଂ ସେସବୁର ସମାଧାନ କରାଯିବ ଶ୍ରୀଅରବିନ୍ଦଙ୍କ ଲେଖାରେ ପ୍ରକାଶିତ ଅତିମାନସ ଜ୍ଞାନର ଆଲୋକରେ ।

(ବୁଲେଟିନ, ଏପ୍ରିଲ ୧୯୫୨)

## ଆଶ୍ରମର ଛାତ୍ରଛାତ୍ରୀମାନଙ୍କ ପ୍ରତି

ପ୍ରକୃତିର ଗୋଟିଏ ଉର୍ଦ୍ଧ୍ୱମୁଖୀ କ୍ରମଗତି ଅଛି; ତାହା ପ୍ରସ୍ତରରୁ ଉଦ୍ଭିଦ, ଉଦ୍ଭିଦରୁ ପଶୁ ଓ ପଶୁରୁ ମନୁଷ୍ୟ ଆଡ଼କୁ ଚାଲୁଛି । ଆପାତତଃ ଏହି ସୋପାନର ଶେଷ ପାହାଚରେ ମନୁଷ୍ୟ ରହିଛି ବୋଲି ନିଜକୁ ସେ ଏହି ଉନ୍ନତିର ଚରମ ପରିଣାମ ବୋଲି ମନେକରୁଛି; ଏବଂ ମନେକରୁଛି ପୃଥିବୀରେ ତା'ଠାରୁ ଶ୍ରେଷ୍ଠ ଆଉ କିଛି ନାହିଁ । ଏହା ତା'ର ଭ୍ରମ । ବାହ୍ୟ ପ୍ରକୃତିରେ ବର୍ତ୍ତମାନ ସେ ପ୍ରାୟ ସମ୍ପୂର୍ଣ୍ଣ ପଶୁ, ଚିନ୍ତା କରୁଥିବା, କଥା କହୁଥିବା ଗୋଟିଏ ପଶୁ; କିନ୍ତୁ ତଥାପି ସେ ପଶୁ– ଶାରୀରିକ ଅଭ୍ୟାସରେ ଏବଂ ପ୍ରବୃତ୍ତିରେ । ନିଃସନ୍ଦେହରେ, ପ୍ରକୃତି ଏହି ଅପୂର୍ଣ୍ଣ ପରିଣାମରେ କୌଣସିମତେ ସନ୍ତୁଷ୍ଟ ରହିପାରିବ ନାହିଁ । ତାହାର ପ୍ରୟାସ ଏପରି ଏକ ସତ୍ତା ଗଢ଼ିବା ପାଇଁ, ଯାହା ସହିତ ମନୁଷ୍ୟର ପାର୍ଥକ୍ୟ ହେବ ମନୁଷ୍ୟ ଓ ପଶୁ ମଧ୍ୟରେ ଥିବା ପାର୍ଥକ୍ୟ ପରି; ସେହି ସତ୍ତା କେବଳ ଆକାରରେ ରହିବ ମନୁଷ୍ୟ ପରି, କିନ୍ତୁ ତାହାର ଚେତନା ମନକୁ ଅତିକ୍ରମ କରି, ଅଜ୍ଞାନର ଦାସତ୍ୱରୁ ମୁକ୍ତ ହୋଇ, ବହୁ ଉର୍ଦ୍ଧ୍ୱକୁ ଉଠିଯିବ ।

ମନୁଷ୍ୟ ନିକଟରେ ଏହି ସତ୍ୟ ଉଦ୍‌ଘାଟନ କରିବା ସକାଶେହିଁ ଶ୍ରୀଅରବିନ୍ଦ ପୃଥିବୀରେ ଅବତୀର୍ଣ୍ଣ ହୋଇଥିଲେ । ସେ କହୁଛନ୍ତି ଯେ ମନୁଷ୍ୟ ଏକ ମଧ୍ୟବର୍ତ୍ତିକାଳୀନ ଜୀବ– ବର୍ତ୍ତମାନ ସେ ମାନସ-ଚେତନାରେ ରହିଛି; ତେବେ ସେ ଲାଭ କରିପାରେ ଏକ ନୂତନ ଚେତନା, ସତ୍ୟ-ଚେତନା ଏବଂ ସେ ଗୋଟିଏ ସମ୍ପୂର୍ଣ୍ଣ ସୁସମଞ୍ଜସ, ମଙ୍ଗଳମୟ, ସୁନ୍ଦର, ଆନନ୍ଦମୟ ଏବଂ ପୂର୍ଣ୍ଣ ଜ୍ଞାନୋଦ୍‌ଭାସିତ ଜୀବନ ଯାପନ କରିବାକୁ ସକ୍ଷମ ହୋଇପାରେ । ପୃଥିବୀରେ ତାଙ୍କର ସମଗ୍ର ଜୀବନକାଳ ମଧ୍ୟରେ ଏହି ଚେତନାକୁ,– ଯାହାର ନାମ ସେ ଦେଇଛନ୍ତି ଅତିମାନସ– ନିଜ ମଧ୍ୟରେ ପ୍ରତିଷ୍ଠିତ କରିବାରେ

ଏବଂ ତାଙ୍କର ଅନୁଗତମାନଙ୍କୁ ଏହାର ଉପଲବ୍‌ଧି ନିମିତ୍ତ ସାହାଯ୍ୟ କରିବାରେ ସେ ସର୍ବଦା ବ୍ୟାପୃତ ଥିଲେ ।

ତୁମ୍ଭେମାନେ ଅଳ୍ପ ବୟସରେ ଆଶ୍ରମକୁ ଆସି ଗୋଟିଏ ମସ୍ତବଡ଼ ସୁଯୋଗ ପାଇଛ; ଅର୍ଥାତ୍ ତୁମେମାନେ ବର୍ତ୍ତମାନ, ଏହି ନୂତନ ଆଦର୍ଶ ଅନୁଯାୟୀ ଗଢ଼ିହେବା ସକାଶେ ଏବଂ ଏହିପରି ଗୋଟିଏ ନୂତନ ମାନବ-ଜାତିର ପ୍ରତିନିଧି ହେବା ସକାଶେ ଏକ ପରିବର୍ତ୍ତନକ୍ଷମ ଏବଂ ନମନୀୟ ଅବସ୍ଥାରେ ରହିଛ । ପାରିପାର୍ଶ୍ୱିକ ଅବସ୍ଥା ଏବଂ ପ୍ରଭାବ, ଆଦର୍ଶ, ଶିକ୍ଷା ଓ ଦୃଷ୍ଟାନ୍ତ ଦିଗରୁ ତୁମ୍ଭେମାନେ ଏହି ଆଶ୍ରମରେ ସବୁଠୁ ଅନୁକୂଳ ଏକ ବାତାବରଣ ମଧ୍ୟରେ ରହିଛ, ଯାହାଦ୍ୱାରା ତୁମ୍ଭମାନଙ୍କ ଭିତରେ ଏହି ଅତିମାନସ ଚେତନା ଜାଗ୍ରତ ହୋଇପାରେ ଏବଂ ତୁମ୍ଭେମାନେ ଏହାର ବିଧାନାନୁସାରେ ଗଢ଼ି ହୋଇପାର ।

ବର୍ତ୍ତମାନ ସବୁକିଛି ନିର୍ଭର କରୁଛି ତୁମ୍ଭମାନଙ୍କ ସଂକଳ୍ପ ଏବଂ ତୁମ୍ଭମାନଙ୍କ ନିଷ୍ଠା ଉପରେ । ଆଉ ଯଦି ସାଧାରଣ ମନୁଷ୍ୟ, ଅର୍ଥାତ୍ କେବଳ ଉନ୍ନତ ପଶୁ ହୋଇ ନ ରହିବାକୁ ତୁମ୍ଭମାନଙ୍କର ସଂକଳ୍ପ ଥାଏ; ତୁମ୍ଭମାନଙ୍କର ସଂକଳ୍ପ ଯଦି ହୁଏ ଶ୍ରୀଅରବିନ୍ଦଙ୍କର ଅତିମାନସ ଆଦର୍ଶସିଦ୍ଧ ସେହି ନୂତନ ଜାତିର ନୂତନ ମନୁଷ୍ୟ ହେବାକୁ, ନୂତନ ପୃଥିବୀରେ ଏକ ନୂତନ ଏବଂ ଉନ୍ନତତର ଜୀବନ ପ୍ରାପ୍ତ ହେବାକୁ, ତାହାହେଲେ ତୁମ୍ଭମାନଙ୍କ ଉଦ୍ଦେଶ୍ୟ-ସାଧନର ସକଳ ପ୍ରୟୋଜନୀୟ ସାହାଯ୍ୟ ତୁମ୍ଭେମାନେ ଏଠାରେ ପାଇବ; ଆଶ୍ରମରେ ରହିବାର ପୂର୍ଣ୍ଣ ସାର୍ଥକତା ବି ଲାଭ କରିବ ଏବଂ ସେତେବେଳେ ପୃଥିବୀରେ ତୁମ୍ଭେମାନେହିଁ ହେବ ଗୋଟିଏ ଗୋଟିଏ ଜୀବନ୍ତ ଦୃଷ୍ଟାନ୍ତ ।

(୨୪ ଜୁଲାଇ, ୧୯୫୧)

## ଆଶ୍ରମ ଶିକ୍ଷାକେନ୍ଦ୍ରର ଶିକ୍ଷାର୍ଥୀମାନଙ୍କୁ ଡିପ୍ଲୋମା ଓ ସାର୍ଟିଫିକେଟ୍ ଦିଆଯାଏ ନାହିଁ କାହିଁକି ?

ପ୍ରାୟ ଗୋଟିଏ ଶତାବ୍ଦୀ ଧରି ମଣିଷସମାଜକୁ ଏକ ବ୍ୟାଧି ଗ୍ରାସ କରିଛି ଯାହାକି ଅଧିକରୁ ଅଧିକ ପ୍ରସାରିତ ହେବାକୁ ଲାଗିଛି; ଏବଂ ଆମ୍ଭମାନଙ୍କ ଯୁଗରେ ଏହା ସବୁଠୁ ଅଧିକ ତୀବ୍ର ଆକାର ଧାରଣ କରିଛି, ଏହାକୁ ଆମେ ବ୍ୟବହାରୋପଯୋଗିତାର (utilitarianism) ମନୋଭାବ ବୋଲି କହିପାରୁ । ଅନ୍ୟ କୌଣସିକିଛିକୁ ବିଚାରକୁ ନ ନିଆଯାଇ ବସ୍ତୁସବୁକୁ ଓ ବ୍ୟକ୍ତିମାନଙ୍କୁ, ପରିସ୍ଥିତି ଓ କ୍ରିୟାକଳାପସବୁକୁ କେବଳ ଏହି ଦୃଷ୍ଟିକୋଣରୁ ଦେଖାଯାଉଛି ଓ ସେଗୁଡ଼ିକର ଭଲମନ୍ଦ ନିର୍ଣ୍ଣୟ କରାଯାଉଛି । ବ୍ୟବହାରୋପଯୋଗୀ ନ ହେଲେ କୌଣସି ଜିନିଷର ଅଦୌ କିଛି ମୂଲ୍ୟ ନାହିଁ । ଅବଶ୍ୟ ଏଥିରେ କୌଣସି ସନ୍ଦେହ ନାହିଁ ଯେ, ଯାହା ବ୍ୟାବହାରୋପଯୋଗୀ ତାହା ବ୍ୟାବହାରିକ ମୂଲ୍ୟ ନ ଥିବା ଜିନିଷଠାରୁ ଅଧିକ ଉତ୍ତମ । କିନ୍ତୁ ସର୍ବପ୍ରଥମେ ଆମକୁ ଜାଣିବାକୁ ହେବ ଆମେ କାହାକୁ ବ୍ୟବହାରୋପଯୋଗୀ ବୋଲି କହୁ,– କାହା ପାଇଁ, କେଉଁଥିପାଇଁ, ଓ କାହିଁକି ତାହା ବ୍ୟବହାରୋ-ପଯୋଗୀ ?

ଅବଶ୍ୟ ଯେଉଁ ଜାତିଗୁଡ଼ିକ ନିଜକୁ ସଭ୍ୟ ବୋଲି ମନେକରନ୍ତି ସେମାନେ ଅଧିକରୁ ଅଧିକ ତାହାକୁହିଁ ବ୍ୟବହାରୋପଯୋଗୀ ବୋଲି କହି-ଆସୁଛନ୍ତି ଯାହା ଅଧିକ ଅର୍ଥ ଆଣି ଦେବାରେ, ଉପାର୍ଜନ କରିବାରେ ବା ଉତ୍ପାଦନ କରିବାରେ ସାହାଯ୍ୟ କରେ । ସବୁକିଛିକୁହିଁ ଏହି ଆର୍ଥିକ ଦୃଷ୍ଟିକୋଣରୁ ବିଚାର କରାଯାଇଥାଏ । ତାହାକୁହିଁ ମୁଁ କୁହେ ବ୍ୟବହାରୋପଯୋଗିତାର ମନୋଭାବ । ଏବଂ ଏହି ରୋଗ ଅତ୍ୟନ୍ତ ସଂକ୍ରାମକ, କାରଣ ପିଲାମାନେ ମଧ୍ୟ ଏଥିରୁ ନିସ୍ତାର ପାଆନ୍ତି ନାହିଁ ।

ଯେଉଁ ବୟସରେ ଜଣେ ସୌନ୍ଦର୍ଯ୍ୟ, ମହାନତା ଏବଂ ପୂର୍ଣ୍ଣତାର ସ୍ୱପ୍ନ ଦେଖିବା ଉଚିତ – ବୋଧହୁଏ ଇତର ସାଧାରଣ ବୁଦ୍ଧି ପାଇଁ ଏହା ଟିକେ ଅତ୍ୟଧିକ ସୂକ୍ଷ୍ମ ଓ ମହତ୍ତର, କିନ୍ତୁ ନିଶ୍ଚିତ ଭାବରେ ଏହା ମାନ୍ଦା ମାମୁଲି ବିଚାର-ବୁଦ୍ଧିଠାରୁ ଅଧିକ ଉନ୍ନତ – ସେତେବେଳେ ସେମାନେ ଅର୍ଥର ସ୍ୱପ୍ନ ଦେଖନ୍ତି ଏବଂ ଚିନ୍ତିତ ହୁଅନ୍ତି କିପରି ତାହା ଉପାର୍ଜନ କରିବାକୁ ହେବ ।

ତେଣୁ ସେମାନେ ଯେତେବେଳେ ନିଜର ଅଧ୍ୟୟନ କଥା ଭାବନ୍ତି, ସର୍ବୋପରି ସେମାନେ ଭାବନ୍ତି କ'ଣ ସେମାନଙ୍କର ବ୍ୟବହାରୋପଯୋଗୀ ହୋଇପାରେ, ଯାହାଫଳରେ ପରବର୍ତ୍ତୀ ସମୟରେ ସେମାନେ ଯେତେବେଳେ ବୟୋପ୍ରାପ୍ତ ହେବେ ସେତେବେଳେ ସେମାନେ ପ୍ରଚୁର ଅର୍ଥ ଉପାର୍ଜନ କରିପାରିବେ ।

ତେଣୁ ସେମାନଙ୍କ ପାଇଁ ଯାହା ସବୁଠୁ ଗୁରୁତ୍ୱପୂର୍ଣ୍ଣ ହୋଇଉଠେ, ତାହା ହେଉଛି ପରୀକ୍ଷାରେ ସାଫଲ୍ୟ ସହିତ ଉତ୍ତୀର୍ଣ୍ଣ ହେବା ପାଇଁ ପ୍ରସ୍ତୁତି – କାରଣ ଡିପ୍ଲୋମା, ସାର୍ଟିଫିକେଟ୍ ଓ ଉପାଧିଗୁଡ଼ିକ ସହ ସେମାନେ ଉତ୍ତମ ଆସନ ଓ ପଦପଦବୀ ପାଇପାରିବେ ଏବଂ ଅନେକ ଅର୍ଥ ଉପାର୍ଜନ କରିପାରିବେ ।

ସେମାନଙ୍କ ପାଇଁ ପାଠପଢ଼ାର ଅନ୍ୟ କୌଣସି ଉଦ୍ଦେଶ୍ୟ ନାହିଁ, ଅନ୍ୟ କୌଣସି ସ୍ୱାର୍ଥ ନାହିଁ ।

ଜ୍ଞାନ ପାଇଁ ଶିକ୍ଷା କରିବା, ବିଶ୍ୱ ପ୍ରକୃତି ଓ ଜୀବନର ଗୋପନ ରହସ୍ୟ ସଂପର୍କରେ ଜ୍ଞାନଲାଭ ପାଇଁ ଅଧ୍ୟୟନ କରିବା, ନିଜ ଚେତନାର ଅଭିବୃଦ୍ଧି ପାଇଁ ନିଜକୁ ଶିକ୍ଷିତ କରାଇବା, ନିଜ ଉପରେ ପୂର୍ଣ୍ଣ କର୍ତ୍ତୃତ୍ୱ ହାସଲ ପାଇଁ ଏକ ସଂଯମ ଓ ଶୃଙ୍ଖଳାର ଜୀବନଯାପନ କରିବା, ନିଜର ସମସ୍ତ ଦୁର୍ବଳତା, ଅସାମର୍ଥ୍ୟ ଓ ଅଜ୍ଞାନତା ଉପରେ ବିଜୟ ହାସଲ କରିବା, ଏକ ମହତ୍ତର ଓ ବ୍ୟାପକତର, ଅଧିକ ଉଦାର ଓ ଅଧିକ ସତ୍ୟ ଏକ ଲକ୍ଷ୍ୟକୁ

ଆଖି ଆଗରେ ରଖି ସେହି ଦିଗରେ ଜୀବନର ଅଗ୍ରଗତି ପାଇଁ ନିଜକୁ ପ୍ରସ୍ତୁତ କରିବା – ସେମାନେ କ୍ୱଚିତ୍ ସେ ବିଷୟ ଭାବନ୍ତି ଏବଂ ସେଗୁଡ଼ିକୁ କେବଳ ଏକ ଅଳୀକ କଳ୍ପନା ବୋଲି ବିଚାର କରନ୍ତି । ସେମାନଙ୍କ ପାଇଁ ଏକମାତ୍ର ଗୁରୁତ୍ୱପୂର୍ଣ୍ଣ ଜିନିଷ ହେଲା ବ୍ୟବହାରୋପଯୋଗିତା, କିପରି ଅଧିକ ଅର୍ଥ ଉପାର୍ଜନ କରିହେବ ତାହା ଶିଖିବା ଏବଂ ସେଥିପାଇଁ ନିଜକୁ ପ୍ରସ୍ତୁତ କରିବା ।

ଯେଉଁ ପିଲାମାନେ ଏ ରୋଗରେ ଆକ୍ରାନ୍ତ ହୋଇଛନ୍ତି ଆଶ୍ରମର ଶିକ୍ଷାକେନ୍ଦ୍ରରେ ସେମାନଙ୍କର ସ୍ଥାନ ନୁହେଁ । ଏବଂ ସେମାନଙ୍କୁ ଏହା ଦର୍ଶାଇ ଦେବା ପାଇଁ ଆମେ ସେମାନଙ୍କୁ କୌଣସି ଆନୁଷ୍ଠାନିକ ପରୀକ୍ଷା କିଂବା ପ୍ରତିଯୋଗିତା ପାଇଁ ପ୍ରସ୍ତୁତ କରୁନା । ଏବଂ କୌଣସି ଡିପ୍ଲୋମା, ଉପାଧି ଆଦି ଦେଉ ନାହୁଁ ଯାହାକି ବାହ୍ୟ ଜଗତରେ ସେମାନଙ୍କର କାମରେ ଲାଗିପାରନ୍ତା ।

ଆମେ ଏଠାରେ କେବଳ ସେଇମାନଙ୍କୁ ଗ୍ରହଣ କରୁ ଯେଉଁମାନେ ଏକ ଉଚ୍ଚତର ଓ ଉନ୍ନତତର ଜୀବନ ପାଇଁ ଅଭୀପ୍ସା କରନ୍ତି । ଜ୍ଞାନ ଓ ପୂର୍ଣ୍ଣତା ପାଇଁ ଯେଉଁମାନଙ୍କ ମଧ୍ୟରେ ବ୍ୟଗ୍ରତା ରହିଛି ଓ ଯେଉଁମାନେ ଏକ ପୂର୍ଣ୍ଣତର, ସମଗ୍ରତର ଓ ସତ୍ୟତର ଭବିଷ୍ୟତ୍ ପାଇଁ ନିବିଡ଼ ଆଗ୍ରହ ନେଇ ଚାହିଁ ରହିଛନ୍ତି ।

(ବୁଲେଟିନ୍, ଅଗଷ୍ଟ ୧୯୬୦)

